# କବି-ମନୀଷୀ ନୀଳକଣ୍ଠ



ଶ୍ରୀ ପଠାଣି ପଟ୍ଟନାୟକ

# କବି-ମନୀଷୀ ନୀଳକଣ୍ଠ

ଶ୍ରୀ ପଠାଣି ପଟ୍ଟନାୟକ




ଓଡ଼ିଶା ସାହିତ୍ୟ ଏକାଡେମୀ

# କବି-ମନୀଷୀ ନୀଳକଣ୍ଠ

ଲେଖକ : ଶ୍ରୀ ପଠାଣି ପଟ୍ଟନାୟକ

ପ୍ରକାଶକ ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର-୧୪

ମୁଦ୍ରଣ : ଶ୍ରୀ ସତ୍ୟନାରାୟଣ ପ୍ରେସ୍
ଡଗରପଡ଼ା, କଟକ-୭୫୩୦୦୨

ପ୍ରଥମ ପ୍ରକାଶ : ୧୯୮୪—୧୦୦୦

ମୂଲ୍ୟ : ପନ୍ଦର ଟଙ୍କା

# KAVIMANISHI NILAKANTHA

*Written By*
**Shri Pathani Pattnaik**

*Published by*
**Orissa Sahitya Akademi**
Bhubaneswar-14

*Printed at*
**Shree Satyanarayan Press**
Dagarapara, Cuttack-753002

*First Edition* :
*1984—1000 copies*

*Price* : **Fifteen Rupees**

# ଭୂମିକା

ଊନବିଂଶ ଶତାବ୍ଦୀର ଶେଷପାଦ ଓ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ମଧ୍ୟରେ ଯେଉଁ କେତେକ ମୁଷ୍ଟିମେୟ ମନୀଷୀଙ୍କର ମନୀଷାର ଦୀପ୍ତିରେ ଓଡ଼ିଶାର ବୌଦ୍ଧିକ ଜୀବନ ଦୀପ୍ତିମନ୍ତ ହୋଇଛି, କାବ୍ୟର ସୁଷମାରେ ଓଡ଼ିଆ ସାହିତ୍ୟ-କାନନ ସୁରଭିତ ହୋଇଛି, ନିରଳସ ଦେଶସେବା ଓ ନିର୍ଭୀକ ନେତୃତ୍ୱରେ ଓଡ଼ିଶାର ରାଜନୈତିକ ଜୀବନ ବିକଶିତ ହୋଇଛି, ସେମାନଙ୍କ ମଧ୍ୟରେ ପଣ୍ଡିତ ନୀଳକଣ୍ଠ ଏକ ବିଶିଷ୍ଟ ସ୍ଥାନ ଅଧିକାର କରନ୍ତି—ଏହା ସର୍ବଥା ସ୍ୱୀକାର୍ଯ୍ୟ । ଓଡ଼ିଶା ରାଜନୀତିରେ ପଣ୍ଡିତ ନୀଳକଣ୍ଠ ଏକ ବିରଳ ବ୍ୟକ୍ତିତ୍ୱ, ଯାହାଙ୍କପରେ ରାଜନୀତିର କୌଶଳ, କାବ୍ୟର କୋମଳତା ଓ ପାଣ୍ଡିତ୍ୟର ପ୍ରଖରତା ଏକତ୍ର ସମନ୍ୱିତ ହୋଇପାରିଥିଲା । ଆଜି ରାଜନୈତିକ-ଜୀବନ କ୍ରମେ ବୌଦ୍ଧିକତା ଓ ମାନସିକ ସୌକୁମାର୍ଯ୍ୟଠାରୁ ଦୂରେଇ ଯାଉଥିବାବେଳେ ଏପ୍ରକାର ବ୍ୟକ୍ତିତ୍ୱର ଆଉ ହୁଏତ ଉତ୍ତରଣ ହେବନାହିଁ ।

ପଣ୍ଡିତ ନୀଳକଣ୍ଠଙ୍କର ଜନ୍ମ ଶତବାର୍ଷିକୀ ଅବକାଶରେ ତାଙ୍କୁ ଯଥାର୍ଥରେ ମନୀଷୀ ରୂପେ ଅଭିହିତ କରାଯାଇଛି । ପ୍ରକୃତରେ ତାଙ୍କୁ ମନୀଷୀ ନୀଳକଣ୍ଠ ରୂପେ ଅଭିହିତ କରିବା ହିଁ ସମୀଚୀନ ଓ ଯୁକ୍ତିଯୁକ୍ତ । ସ୍ୱାଧୀନତା ଆନ୍ଦୋଳନ କାଳରେ ବିଶିଷ୍ଟ ଜନନେତାମାନଙ୍କୁ ଉତ୍ତର ଭାରତର ପ୍ରଚଳିତ ରୀତିରେ ପଣ୍ଡିତ ରୂପେ ଆଖ୍ୟାତ କରାଯାଉଥିଲା । ବିଦ୍ୟାରେ ମଧ୍ୟ ସେମାନେ ଥିଲେ ଧୁରୀଣ ଓ ପଣ୍ଡିତ ପଦବାଚ୍ୟ । ସେଇ ସୂତ୍ରରେ ହୁଏତ ନୀଳକଣ୍ଠ, ପଣ୍ଡିତ ନୀଳକଣ୍ଠ ରୂପେ ଲୋକ-ମୁଖରେ ପରିଚିତ ଥିଲେ । କିନ୍ତୁ ପଣ୍ଡିତ କହିଲେ ସଂସ୍କୃତରେ ବିଦ୍ୱତ୍ତାର ସୀମାବଦ୍ଧତା ମଧ୍ୟରେ ବୌଦ୍ଧିକତାର ବ୍ୟାପ୍ତି ସୀମିତ ରହିଯାଏ । ମାତ୍ର ପଣ୍ଡିତ ନୀଳକଣ୍ଠଙ୍କର ବୌଦ୍ଧିକତାରେ ଥିଲା ବିଶ୍ୱକୋଷିକ ବ୍ୟାପ୍ତି । ବସ୍ତୁତଃ, ମୋ ପରି ଯେଉଁମାନେ ପଣ୍ଡିତ ନୀଳକଣ୍ଠଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସିବାର ସୌଭାଗ୍ୟ ପାଇଛନ୍ତି, ସେମାନେ ଲକ୍ଷ୍ୟ କରିଥିବେ, ପଣ୍ଡିତଜୀଙ୍କର ଆଗ୍ରହ କେଉଁ ଅବଲୁପ୍ତ ଯୁଗର ମିଶର, ସୁମେର, ମହେଞ୍ଜୋଦାରୋ ସଭ୍ୟତାଠାରୁ ଆରମ୍ଭ କରି ସାମ୍ପ୍ରତିକ କାଳର ରାଜନୀତି ପର୍ଯ୍ୟନ୍ତ, ଭାଷାତତ୍ତ୍ୱଠାରୁ ଆରମ୍ଭକରି ସଂସ୍କୃତିର ସୂକ୍ଷ୍ମ ବିଶ୍ଳେଷଣ ପର୍ଯ୍ୟନ୍ତ, କାବ୍ୟଠାରୁ ଆରମ୍ଭ କରି ଦୈନିକ ଓ ମାସିକ ସମ୍ବାଦ ପତ୍ରର ସମ୍ପାଦନା ପର୍ଯ୍ୟନ୍ତ, ବହୁକ୍ଷେତ୍ରରେ ଯେମିତି ପ୍ରକାଶ ପାଇଥିଲା ତାହା ବାସ୍ତବିକ ବିସ୍ମୟୋଦ୍ଦୀପକ । ସେ ପୁଣି ତାଙ୍କ କାଳରେ ଥିଲେ ଜଣେ ପ୍ରସିଦ୍ଧ ବାଗ୍ମୀ ବା ଅରେଟର୍ । ଜଣେ ବ୍ୟକ୍ତିଠାରେ ଏତେ ସିଦ୍ଧି ଓ ସଫଳତାର ଏପରି ପୁନରାବୃତ୍ତି ଆଉ ବୋଧହୁଏ ହେବ ନାହିଁ ।

ପଣ୍ଡିତ ନୀଳକଣ୍ଠଙ୍କ ଜନ୍ମ-ଶତବାର୍ଷିକୀ ଉପଲକ୍ଷରେ ଯେତେ ସବୁ ଅନୁଷ୍ଠାନ, ଯେତେ ସବୁ ସ୍ମୃତିସଭା ଓ ସମାବେଶ ହୋଇଗଲା ସେଥିରେ ପଣ୍ଡିତ ନୀଳକଣ୍ଠଙ୍କର ଜୀବନର ରାଜନୈତିକ ଦିଗଟିର ଆଲୋଚନା ଯେତେ ଗୁରୁତ୍ୱ ଲାଭ କରିଛି, ତାଙ୍କର ବୌଦ୍ଧିକ ଦିଗର ଆଲୋଚନା ସେତେ ଗୁରୁତ୍ୱ ଲାଭ କରିପାରି ନାହିଁ । ସାମ୍ପ୍ରତିକ କାଳରେ ରାଜନୀତି ଏକମାତ୍ର ନିୟାମକ ହୋଇ ପଡ଼ିଥିବା ବେଳେ ଏ ପ୍ରକାର ସାମଞ୍ଜସ୍ୟହୀନ ମୂଲ୍ୟାଙ୍କନ ସ୍ୱାଭାବିକ । ପୁଣି ଓଡ଼ିଶାରେ କେବଳ କଂଗ୍ରେସ ରାଜନୀତି ନୁହେଁ, ସ୍ୱାଧୀନତା ପରବର୍ତ୍ତୀ କାଳରେ କେତେକ ଘଟଣାର ପ୍ରଭାବ ଓ ପ୍ରତିକ୍ରିୟାରେ ବିରୋଧୀପକ୍ଷର ଭୂମିକାରେ ପଣ୍ଡିତ ନୀଳକଣ୍ଠଙ୍କର ଅବଦାନ ସାମାନ୍ୟ ନୁହେଁ । ୧୯୩୬ ସାଲରେ ଓଡ଼ିଶା ପ୍ରଦେଶ ଗଠନ ପର୍ଯ୍ୟନ୍ତ ଓଡ଼ିଶାରେ କଂଗ୍ରେସର ଯେ ଯେ ଅବିସମ୍ବାଦିତ ନେତା ଥିଲେ, ତାଙ୍କ ବଳିଷ୍ଠ ନେତୃତ୍ୱରେ ୧୯୩୭ ମସିହାରେ ଓଡ଼ିଶା ପ୍ରଦେଶର ସର୍ବପ୍ରଥମ ସାଧାରଣ ନିର୍ବାଚନରେ କଂଗ୍ରେସ ଏକ ସମ୍ପୂର୍ଣ୍ଣ ନିରୁତ୍ସାହଜନକ ପରିସ୍ଥିତି ମଧ୍ୟରେ ଓଡ଼ିଶାରେ କଂଗ୍ରେସ ବିପୁଳ ସଂଖ୍ୟାଗରିଷ୍ଠତା ଲାଭ କରିଥିଲା, ତାହା ଅସ୍ୱୀକାର କରିବାର ଉପାୟ ନାହିଁ । ଏହାର ପରବର୍ତ୍ତୀକାଳରେ କଂଗ୍ରେସରେ ଗୋଷ୍ଠୀ-ବିବାଦର ଶିକାର ହୋଇ ତାଙ୍କୁ କଂଗ୍ରେସ ଛାଡ଼ିବାକୁ ପଡିଥିଲେ ହେଁ ତାଙ୍କ ଜୀବନର ଶେଷ ପର୍ଯ୍ୟାୟରେ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଆମନ୍ତ୍ରଣ କ୍ରମେ ସେ ପୁଣି କଂଗ୍ରେସରେ ଏକ ସମ୍ମାନିତ ଆସନ ଲାଭ କରିଥିଲେ । ତାଙ୍କର ସୁବିସ୍ତୀର୍ଣ୍ଣ ରାଜନୈତିକ ପୃଷ୍ଠଭୂମି ଦୃଷ୍ଟିରୁ ପଣ୍ଡିତ ନୀଳକଣ୍ଠଙ୍କୁ ଜଣେ ବିଶିଷ୍ଟ ରାଜନୈତିକ ନେତା ରୂପେ ଚିହ୍ନିବା ଓ ଚିହ୍ନେଇବା ଅଯୌକ୍ତିକ ହେବନାହିଁ । ପଣ୍ଡିତ ନୀଳକଣ୍ଠଙ୍କ କାଳରେ ରାଜନୀତି ଦାଣ୍ଡିଲୋକଙ୍କ କୁକ୍ଷିଗତ ହୋଇ ନ ଥିଲା । ଯେଉଁମାନେ ରାଜନୀତିରେ ଯୋଗଦେଇ ଦାଣ୍ଡରେ ଓହ୍ଲାଇଥିଲେ, ସେମାନେ ପ୍ରତ୍ୟେକ ଥିଲେ ଜଣେ ଜଣେ ବିଶିଷ୍ଟ ବିଦ୍ୱାନ — ସେ ପଣ୍ଡିତ ମଦନମୋହନ ମାଲବ୍ୟ ହୁଅନ୍ତୁ, ପଣ୍ଡିତ ଜବାହରଲାଲ ନେହେରୁ ହୁଅନ୍ତୁ, ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ହୁଅନ୍ତୁ ବା ପଣ୍ଡିତ ଗୋପବନ୍ଧୁ ଓ ପଣ୍ଡିତ ନୀଳକଣ୍ଠ ହୁଅନ୍ତୁ । କିନ୍ତୁ ପଣ୍ଡିତ ନୀଳକଣ୍ଠଙ୍କର ମୂଲ୍ୟାଙ୍କନ କଲାବେଳେ ରାଜନୀତି ଅପେକ୍ଷା ପାଣ୍ଡିତ୍ୟ ଓ ସାହିତ୍ୟ କ୍ଷେତ୍ରରେ ତାଙ୍କ ଅପୂରଣୀୟ ସ୍ଥାନ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । ରାଜନୀତିର କ୍ଷଣିକ ଉତ୍ତେଜନା ଓ ଉଚ୍ଛ୍ୱାସ ଲିଭିଯିବା ପରେ ଯାହା ଭାସ୍ୱର ହୋଇ ରହିଛି ଓ ରହିବ ତା’ ହେଲା ପଣ୍ଡିତ ନୀଳକଣ୍ଠଙ୍କର ପାଣ୍ଡିତ୍ୟର ପ୍ରଖରତା ଓ ସାହିତ୍ୟର ସୌକୁମାର୍ଯ୍ୟ ।

ପଣ୍ଡିତ ନୀଳକଣ୍ଠ ଓଡ଼ିଶା ସାହିତ୍ୟ ଅକାଦମୀର ପ୍ରଥମ ସଭାପତି ଥିଲେ । ଏହାର ଅନ୍ୟଥା ହୋଇଥିଲେ ଓଡ଼ିଶା ସାହିତ୍ୟ ଅକାଦମୀର ମର୍ଯ୍ୟାଦା କ୍ଷୁଣ୍ଣ ହୁଅନ୍ତା

ଲଘୁ ହୋଇ ପଡ଼ିଥାନ୍ତା । ତେଣୁ ତାଙ୍କର ଶତବାର୍ଷିକୀ ଅବସରରେ ଓଡ଼ିଶା ସାହିତ୍ୟ ଅକାଦମୀ ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ବିନମ୍ର ଶ୍ରଦ୍ଧାଞ୍ଜଳି ସ୍ୱରୂପ ଏହି ପୁସ୍ତକଟି ପ୍ରକାଶ କରୁଅଛି । ସୁସାହିତ୍ୟିକ ଓ ସମାଲୋଚକ ଶ୍ରୀ ପଠାଣି ପଟ୍ଟନାୟକ ଏହି ପୁସ୍ତକଟିକୁ ଲେଖି ଆମ୍ଭମାନଙ୍କର ଶ୍ରଦ୍ଧାଭାଜନ ହୋଇଛନ୍ତି । ଏକ ବିସ୍ତୃତ ପୃଷ୍ଠଭୂମିରେ ସେ ପଣ୍ଡିତ ନୀଳକଣ୍ଠଙ୍କର ବହୁବ୍ୟାପ୍ତ ବର୍ଣ୍ଣାଢ଼୍ୟ ବ୍ୟକ୍ତିତ୍ୱର ଯଥାର୍ଥ ବାଣୀଚିତ୍ର ଏହି ପୁସ୍ତକରେ ଅଙ୍କନ କରି ପାରିଛନ୍ତି । ଆଜିର ଯୁବସମାଜ ଯେଉଁମାନେ ସେମାନଙ୍କର ପୂର୍ବସୂରୀମାନଙ୍କର ଯୁଗ, ସାଧନା ଓ ସଂଗ୍ରାମ ସହିତ ପରିଚିତ ହୋଇ ପାରିନାହାନ୍ତି, ଏହି ପୁସ୍ତକଟି ସେମାନଙ୍କ ପାଇଁ ଅତ୍ୟନ୍ତ ସହାୟକ ହେବ, ଏଥିରେ ସନ୍ଦେହ ନାହିଁ । ମୁଁ ଏହାର ବହୁଳ ପ୍ରସାର ଆଶା କରେ ।

**ସୁରେନ୍ଦ୍ର ମହାନ୍ତି**
ସଭାପତି
ଓଡ଼ିଶା ସାହିତ୍ୟ ଅକାଦମୀ

# ପଦେ ଅଧେ

ଓଡ଼ିଶା ସାହିତ୍ୟ ଏକାଡେମୀର ପ୍ରଥମ ସଭାପତି କବିମନୀଷୀ ନୀଳକଣ୍ଠଙ୍କ ଜନ୍ମ-ଶତବାର୍ଷିକୀ ଉପଲକ୍ଷେ ଏକାଡେମୀ କର୍ତ୍ତୃପକ୍ଷଙ୍କ ନିଷ୍ପତ୍ତି କ୍ରମେ ତାଙ୍କ ଜୀବନୀ, ବ୍ୟକ୍ତିତ୍ୱ ଓ ପ୍ରତିଭାକୁ ଆଧାର କରି ଏହି ମନୋଗ୍ରାଫ୍‌ଟି ଆତ୍ମପ୍ରକାଶ କରୁଛି ଏବଂ ତାଙ୍କ ବରଣୀୟ ଓ ସ୍ମରଣୀୟ ସାଧନା ପ୍ରତି ଏକାଡେମୀର ଏହା ଏକ ବିନମ୍ର ଶ୍ରଦ୍ଧାଞ୍ଜଳି । ଏହି 'ମନୋଗ୍ରାଫ'ଟିକୁ ପ୍ରସ୍ତୁତ କରିଛନ୍ତି ଓଡ଼ିଶାର ଅନ୍ୟତମ ସ୍ୱନାମଧନ୍ୟ ସମାଲୋଚକ ଅଧ୍ୟାପକ ଶ୍ରୀ ପଠାଣି ପଟ୍ଟନାୟକ । ସେଥିପାଇଁ ଏକାଡେମୀ ପକ୍ଷରୁ ଅନ୍ତରର ସାଧୁବାଦ ମୁଁ ତାଙ୍କୁ ଅର୍ପଣ କରୁଛି ।

ମନୀଷୀ ନୀଳକଣ୍ଠଙ୍କ ସାଧନାଦୀପ୍ତ ଜୀବନର ବିଶିଷ୍ଟ ଘଟଣାବଳୀ ଏବଂ ବିଭିନ୍ନ ସମୟରେ ଲିଖିତ ତାଙ୍କ ସାରସ୍ୱତ ସମ୍ଭାର ଉପରେ ଏହା ଏକ ସାମଗ୍ରିକ ଦୃଷ୍ଟିପାତ ଏବଂ ମୋର ବିଶ୍ୱାସ, ଆୟତନରେ ଏହାର କଳେବର କ୍ଷୁଦ୍ର ହେଲେହେଁ ପ୍ରଜ୍ଞାଚକ୍ଷୁ ନୀଳକଣ୍ଠଙ୍କ ଜୀବନୀ ଓ ପ୍ରତିଭା ଉପରେ ଉଜ୍ଜ୍ୱଳ ଓ ବର୍ଣ୍ଣାଢ୍ୟ ଆଲୋକପାତ କରିବାକୁ ଏହା ଶକ୍ତିଶାଳୀ ଓ ସମର୍ଥ । ଓଡ଼ିଶାର ସାରସ୍ୱତ ମହଲରେ ଏବଂ ସାହିତ୍ୟପ୍ରେମୀ ବିଦଗ୍ଧ ପାଠକ-ପାଠିକାଙ୍କ ନିକଟରେ ଏହା ସମୁଚିତ ସ୍ନେହାଦର ଲଭ କରିବ ବୋଲି ମୋର ଦୃଢ଼ ବିଶ୍ୱାସ ।

**ଚନ୍ଦ୍ରମଣି ବେହେରା**
ସଂପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ

# ସୂଚୀପତ୍ର



ଆବିର୍ଭାବ—ତା ୫ । ୮ । ୧୮୮୪   ତିରୋଭାବ—ତା ୬ । ୧୧ । ୧୯୬୭

# ବନବିଦ୍ୟାଳୟର କୁଳପତି

"ସେ ଦିନ ସତ୍ୟବାଦୀ ସ୍କୁଲରେ ମୋର ଯୋଗଦେବା ଉତ୍ସବ ପାଳନ କରାଗଲା । ମୁଁ ପରେ ବୁଝିଲି ଯେ ଅନ୍ୟମାନଙ୍କପାଇଁ ସେପରି ଉତ୍ସବ ହୋଇ ନଥିଲା । ନୀଳକଣ୍ଠବାବୁ ଦୁଇବର୍ଷ ପୂର୍ବରୁ ଯୋଗ ଦେଇଥିଲେ । ଆମ୍ଭମାନଙ୍କ କଳ୍ପନା ଜଳ୍ପନାରେ ସେ ହେଲେ ପ୍ରଥମ ପ୍ରସୂତ । ଆଉ କେହି କେହି ପରେ ତ୍ୟାଗ କଲେ । **କିନ୍ତୁ ପ୍ରଥମ ତ୍ୟାଗ ପଣ୍ଡିତ ନୀଳକଣ୍ଠଙ୍କର** । ସେ ସ୍କୁଲରେ ପଢ଼ିଲାବେଳୁ ଜଣାଯାଇଥିଲା ଯେ ସେ ଜଣେ ବଡ଼ ଲୋକ ହେବେ । ଓକିଲାତି କରିଥିଲେ ହୁଏତ ସେ ହଜାର ହଜାର ଟଙ୍କା ଉପାର୍ଜନ କରିଥାନ୍ତେ । ଜୀବନରେ ସବୁପ୍ରକାର ସୁଖ ସୌଭାଗ୍ୟକୁ ଜଳାଞ୍ଜଳି ଦେଇ ମାସିକ ତିରିଶ ଟଙ୍କା ଭିତ୍ତିରେ ଆସି କାର୍ଯ୍ୟ କରିବାକୁ ପ୍ରସ୍ତୁତ ହେବା ନିଆଁକୁ ଡେଇଁ ପଡ଼ିବା ସଙ୍ଗେ ସମାନ । **ନୀଳକଣ୍ଠ ବାବୁ ପ୍ରଥମେ ସେହି ନିଆଁକୁ ଡେଇଁଥିଲେ** । ଆମେ ଅନ୍ୟମାନେ ପରେ ଗଡ଼ୁଲିକା ପ୍ରବାହରେ ଗତି କଲୁ ମାତ୍ର ।"

(ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ—ଗୋଦାବରୀଶ ମିଶ୍ର
ପ୍ରଥମ ସଂସ୍କରଣ—୧୯୫୮, ପୃ—୬୧୪ )

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଏ ଦେଶରେ ଜାତୀୟଜୀବନର ଯେଉଁ ପ୍ରାଣ-ପ୍ରତିଷ୍ଠା ହୋଇଥିଲା । ତାହାର ଅନ୍ୟତମ କେନ୍ଦ୍ରସ୍ଥଳ ଥିଲା ସତ୍ୟବାଦୀ ବନବିଦ୍ୟାଳୟ । ଉତ୍କଳରେ ଜାତୀୟ ଭାବଧାରାର ପ୍ରବର୍ତ୍ତକ ମଧୁସୂଦନ ଦାସ ଉତ୍କଳ ସମ୍ମିଳନୀ ନେତୃତ୍ୱରେ ଯେଉଁ ବୈପ୍ଳବିକ ଆନ୍ଦୋଳନ ଆରମ୍ଭ କରିଥିଲେ ସେଥିରେ ଗୋପବନ୍ଧୁ ଦାସଙ୍କ ନେତୃତ୍ୱରେ ପଣ୍ଡିତ ନୀଳକଣ୍ଠଙ୍କ ସମେତ ତାଙ୍କର ସୁଯୋଗ୍ୟ ସହକର୍ମୀଗଣ ଏବଂ ସତ୍ୟବାଦୀ ବନବିଦ୍ୟାଳୟର ଅଗ୍ରଗାମୀ ଛାତ୍ରମାନେ ଅକୁଣ୍ଠଚିତ୍ତରେ ଅଂଶ ଗ୍ରହଣ କରିଥିଲେ । ଦେଶପ୍ରାଣ ମଧୁସୂଦନ ଆଶା କରିଥିଲେ ଯେ ତାଙ୍କପରେ ଉତ୍କଳ-ସେବାର ସମସ୍ତ ଦାୟିତ୍ୱ ଗୋପବନ୍ଧୁ ଗ୍ରହଣ କରିବେ । ମାତ୍ର ବିଧିର ବିଧାନ ବଡ଼ ବିଚିତ୍ର । ଅକାଳରେ ଗୋପବନ୍ଧୁ ଏହି ଧରାଧାମ ତ୍ୟାଗ କରି ଚାଲିଗଲେ । ମଧୁସୂଦନ ଦାସ ସେ ଦିନ ତାଙ୍କର ମରଣ ଶେଯରେ ପଣ୍ଡିତ

ନୀଳକଣ୍ଠଙ୍କୁ ହିଁ ନିଜର ଯୋଗ୍ୟ ଉତ୍ତରାଧିକାରୀ ଭାବରେ ଗ୍ରହଣ କରିଥିଲେ ବୋଲି ମଧୁସୂଦନ ଦାସଙ୍କ ଜୀବନୀ ଲେଖକ ସୁସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ସୂଚନା ପ୍ରଦାନ କରିଅଛନ୍ତି ।

ସେ ହେଉଛି ୧୯୩୪ ମସିହା ଫେବୃୟାରୀ ୩ିଶ ତାରିଖ । କାଳରାତ୍ରି ପାଖେଇ ଆସୁଥାଏ ଜାତୀୟ ଜୀବନରେ ଘନ ଅନ୍ଧକାରର ସଙ୍କେତ ପ୍ରଦାନ କରି । ଚତୁର୍ଦ୍ଦିଗରେ କପରି ଏକ ହା ହୁତାଶ ଓ ହତାଶାର ମ୍ଳାନ ରାଜପଣ କରୁଥାଏ । ଆଉ ଅଳ୍ପ କାଳ ପରେ ପୁରୁଷ ସିଂହ ମଧୁସୂଦନ ଜୀବନଲୀଳା ସମ୍ବରଣ କରିବେ । ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ— "ଓଡ଼ିଶା ବିଷୟ ବୁଝିବାକୁ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଦାୟିତ୍ୱ ବହନ କରିବାକୁ ସେ କାହା ଉପରେ ଦାୟିତ୍ୱ ଦେଇଯିବେ, ସେଇ କଥା ସେ ବର୍ତ୍ତମାନ ଭାବୁଥାଆନ୍ତି । ପୂର୍ବରୁ ଓଡ଼ିଶାର କଂଗ୍ରେସନେତା ଗୋପବନ୍ଧୁଙ୍କୁ ତାଙ୍କର ଉତ୍ତରାଧିକାରୀ ରୂପେ ସେ ସ୍ଥିର କରିଥିଲେ × × × × କିନ୍ତୁ ଓଡ଼ିଶାର ଦୁର୍ଭାଗ୍ୟକୁ ମଧୁସୂଦନଙ୍କ ମୃତ୍ୟୁର କିଛି ବର୍ଷ ପୂର୍ବରୁ ଗୋପବନ୍ଧୁଙ୍କର ମୃତ୍ୟୁ ଘଟି ସାରିଥିଲା । ତାହାପରେ ଓଡ଼ିଶାର ପ୍ରସିଦ୍ଧ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଉପରେ ଏହି ଦାୟିତ୍ୱ ସମର୍ପଣ କରିବାକୁ ମଧୁସୂଦନ ଏହା ମଧ୍ୟରେ ସ୍ଥିର କରି ସାରିଥିଲେ । × × × ଜୀବନଦୀପ ନିର୍ବାପିତ ହୋଇଯିବା ଆସନ୍ନ ଜାଣି ମଧୁସୂଦନ ସେହି ନୀଳକଣ୍ଠଙ୍କୁ ବର୍ତ୍ତମାନ ସତୃଷ୍ଣ ନୟନରେ ଚାହିଁ ରହିଥିଲେ । × × × ×

ପ୍ରଥମ ସାକ୍ଷାତରେ ନୀଳକଣ୍ଠ ମଧୁସୂଦନଙ୍କୁ ପଚାରିଲେ, "ଜୟପୁର ଇଷ୍ଟେଟ ଓ ଗଞ୍ଜାମ ଏଜେନ୍‌ସି ଏରିଆ ଆଦି ଅଞ୍ଚଳକୁ 'ଓଡ଼ିଶା କମିଟୀ' ଓଡ଼ିଶା ପ୍ରଦେଶରୁ ବାଦ ଦେବା ଲାଗି ସୁପାରିଶ କରିଛି । ସେ ବିଷୟରେ କଣ କରାଯିବ ? ସେ ସବୁ ଅଞ୍ଚଳ କଣ ଓଡ଼ିଶା ସହିତ ମିଶିବ ? କ୍ଷୀଣ କଣ୍ଠରେ ମଧୁସୂଦନ ଜବାବ ଦେଲେ 'ନିଶ୍ଚୟ ମିଶିବ' । ସେଥିରେ ଅନ୍ୟଥା ବିଚାରର ପ୍ରଶ୍ନ ନାହିଁ, କିନ୍ତୁ ନୀଳକଣ୍ଠ, ମୁଁ ଜାଣିବାକୁ ଚାହୁଁଛି ଦେଶ ଓ ଦଶର ମୁଖ ଉଜ୍ଜ୍ୱଳ କରିବାପାଇଁ ଦେଶପ୍ରାଣ ଓଡ଼ିଆ ଲୋକମାନଙ୍କର ଅଭାବ ଓଡ଼ିଶାରେ ଦେଖାଦେବ ନାହିଁ ତ ? × × ×

ଓଡ଼ିଶାବାସୀଙ୍କ ପ୍ରତି ତାଙ୍କର କିଛି ବାର୍ତ୍ତା ଅଛି କି ନାହିଁ ବୋଲି ନୀଳକଣ୍ଠ ଏତିକିବେଳେ ପଚାରିଦେବାରୁ ପୁଣି ଟିକିଏ ଆଖି ଖୋଲି ମଧୁସୂଦନ ଉତ୍ତର ଦେଲେ, ଓଡ଼ିଶାର ନିର୍ମଳ ଲୋକମାନଙ୍କୁ କହିବ ଯେ ସେମାନେ ସବୁବେଳେ ସେମାନଙ୍କ ଅନ୍ତରକୁ ନିର୍ମଳ ରଖିବେ । ତାହାହେଲେ ସେମାନଙ୍କର ଅନ୍ତରାତ୍ମା ପବିତ୍ର ରହିବ ।"

---

(ମଧୁସୂଦନ ଦାସ— ସୁରେନ୍ଦ୍ର ମହାନ୍ତି ୧୯୭୯—୩ୟ ସଂସ୍କରଣ, ନ୍ୟାସନାଲ ବୁକ୍‌ଟ୍ରଷ୍ଟ ଇଣ୍ଡିଆ ପୃ—୧୭୧-୧୭୩)

ସେ ଦିନ ତରୁଣ ଗୋଦାବରୀଶ ଶିକ୍ଷକ ଭାବରେ ସତ୍ୟବାଦୀ ଅନୁଷ୍ଠାନରେ (ନୀଳକଣ୍ଠ ୧୯୧୧ ସାଲରେ ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ଯୋଗଦାନ କରିଥିଲେ ।) ଯୋଗ ଦେଇ ନୀଳକଣ୍ଠଙ୍କ ମହାନ୍ ତ୍ୟାଗ, କର୍ମନିଷ୍ଠା ଏବଂ ଦେଶ ସେବାର ନେତୃତ୍ୱ ସମ୍ପର୍କରେ ଯାହା ଅନୁଭବ କରିଥିଲେ ତାହା ତାଙ୍କର ଜୀବନ-ଚରିତରେ ଲିପିବଦ୍ଧ କରିଯାଇଅଛନ୍ତି । ମି: ଦାସଙ୍କ ଜୀବନ ଚରିତ ଲେଖକ ସୁସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ମଧ୍ୟ ଉତ୍କଳ ପ୍ରଦେଶର ସର୍ବମାନ୍ୟ ନେତା ଶ୍ରୀମଧୁସୂଦନଙ୍କର ନୀଳକଣ୍ଠଙ୍କ ପ୍ରତି ସେହି ବିଶ୍ୱାସ ଥିଲା ବୋଲି ଉଲ୍ଲେଖ କରିଅଛନ୍ତି ।

ନିଜେ ପଣ୍ଡିତ ନୀଳକଣ୍ଠ ତାଙ୍କ ଆତ୍ମଚରିତରେ ଲେଖିଅଛନ୍ତି ଯେ ଜୀବନର ଶେଷ ଅବସ୍ଥାରେ ମଧୁସୂଦନ 'ନୀଳକଣ୍ଠ କାହିଁ ?' ବୋଲି ଖୋଜିବାରେ ଲାଗିଲେ । ତେଣୁ ବ୍ରଜସୁନ୍ଦର ଦାସ ଘୋଡ଼ାଗାଡ଼ିରେ ସହରଗ୍ରାମ ଖୋଜି ଖୋଜି ତାଙ୍କୁ ଧରି ନେଇଥିଲେ । ସେଇଠି ସେ ଉପସ୍ଥିତ ମାନ୍ୟଗଣ ଲୋକମାନଙ୍କୁ ଶୁଣାଇ କରି କହିଥିଲେ—ମୁଁ ମଲାପରେ ନୀଳକଣ୍ଠ ରହିବ । ସେ ଓଡ଼ିଶାର ସବୁ କାର୍ଯ୍ୟ କରିବ । (୧) ମି: ଦାସ ସତ୍ୟବାଦୀ ବନବିଦ୍ୟାଳୟର କାର୍ଯ୍ୟକଲାପ ଅତ୍ୟନ୍ତ ଆନ୍ତରିକତାର ସହିତ ଲକ୍ଷ୍ୟ କରୁଥିଲେ । ନୀଳକଣ୍ଠଙ୍କ ନେତୃତ୍ୱରେ ଉତ୍କଳ ସମ୍ମିଳନ ଅଧିବେଶନରେ ସତ୍ୟବାଦୀ ବନବିଦ୍ୟାଳୟ ପିଲାମାନଙ୍କର ଶୃଙ୍ଖଳାଜ୍ଞାନ ଏବଂ ଦୃଢ଼ ଚରିତ୍ରବଳ ଲକ୍ଷ୍ୟ କରି ମି: ଦାସ କହିଥିଲେ—"Gopabandhu, Nilakantha, your boys are fires." (୨) ଗୋପବନ୍ଧୁ, ନୀଳକଣ୍ଠ, ତୁମ ଜାତୀୟ ବିଦ୍ୟାଳୟର ଛାତ୍ରମାନେ ବାସ୍ତବିକ ନିଆଁ ପିଣ୍ଡୁଳା । ମି: ଦାଶ ଗୋପବନ୍ଧୁ ଓ ନୀଳକଣ୍ଠଙ୍କୁ ଡକାଇ ଆନନ୍ଦରେ କୁଣ୍ଢାଇ ପକାଇଥିଲେ । କହିଲେ- 'ଗୋପବନ୍ଧୁ, ନାଲନ୍ଦାଟାଏ ତ ଗଢ଼ିଦେଲୁ! "ଗୋପବନ୍ଧୁ କହିଲେ—ମୁଁ ନୁହେଁ ନୀଳକଣ୍ଠ" (୩)

ନୀଳକଣ୍ଠ ଥିଲେ ପ୍ରକୃତରେ ଗୋପବନ୍ଧୁଙ୍କର ଉପଯୁକ୍ତ ସହକର୍ମୀ । ଗୋପବନ୍ଧୁ ଯେଉଁ ସ୍ୱପ୍ନ ଦେଖୁଥିଲେ, କର୍ମଯୋଗୀ ନୀଳକଣ୍ଠ ତାକୁ ବିଶ୍ୱସ୍ତ ଭାବରେ

---

(୧) ଆତ୍ମଜୀବନୀ—ନୀଳକଣ୍ଠ ଗ୍ରନ୍ଥାବଳୀ—୧୯୬୩-ପୃ ୧୦୭

(୨) ସତ୍ୟବାଦୀରେ ସାତବର୍ଷ—ଚନ୍ଦ୍ରଶେଖର ମିଶ୍ର—୧୯୬୨, ଦ୍ୱିତୀୟ ମୁଦ୍ରଣ ପୃ-୧୮୭-୮୮

(୩) ଏଜନ—ପୃ-୧୭୯

କାର୍ଯ୍ୟରେ ପରିଣତ କରି ଦେଉଥିଲେ । ଗୋପବନ୍ଧୁ ଥିଲେ ଚରିତ୍ରର ଗ୍ରାହକ । ସେ ଯୋଗ୍ୟ ସହକର୍ମୀମାନଙ୍କୁ ନିର୍ବାଚନ କରିଥିଲେ ଏବଂ ସେମାନଙ୍କୁ ନେତୃତ୍ୱ ପ୍ରଦାନ କରି ପରିଚାଳିତ କରିବାର ଭାର ଦେଇଥିଲେ ନୀଳକଣ୍ଠଙ୍କ ଉପରେ ।

## ସତ୍ୟବାଦୀ ସ୍କୁଲ—ଜାତୀୟ ଆଶା ଆକାଂକ୍ଷାର ଏକ ଧୂମକେତୁ

ସେ ହେଉଛି ୧୯୦୩-୪ ସାଲର କିଞ୍ଚିତ ପରବର୍ତ୍ତୀ କାଳର କଥା । ଊନବିଂଶ ଶତାବ୍ଦୀର ଉତ୍କଳସଭା ଜାତୀୟତାର ମନ୍ତ୍ର ପ୍ରଚାର କରି ବିଲୟ ଭଜୁଥାଏ । ରାଧାନାଥ, ମଧୁସୂଦନ, ଫକୀରମୋହନ, ରାମଶଙ୍କର, ଗୌରୀଶଙ୍କର ବିଚ୍ଛନ୍ଦଚରଣ, ବିଚିତ୍ରାନନ୍ଦ ପ୍ରଭୃତିଙ୍କ ନେତୃତ୍ୱରେ ଓଡ଼ିଆ ଭାଷା ଏକ ମହା-ସଙ୍କଟରୁ ମୁକ୍ତିଲାଭ କରିଥାଏ । "ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ" ବୋଲି ଆଉ କାହାରି କହିବାର ସାହସ ନଥାଏ । ଏ ଯୁଗର ତ୍ରୟୀ ରାଧାନାଥ, ଫକୀରମୋହନ ଓ ମଧୁସୂଦନଙ୍କ ପ୍ରଚଣ୍ଡ ବ୍ୟକ୍ତିତ୍ୱ ଏବଂ ନିରବଚ୍ଛିନ୍ନ ସାଧନା ବଳରେ ଓଡ଼ିଆ ସାହିତ୍ୟରେ ନବଯୁଗର ଅଭ୍ୟୁଦୟ ହେଉଥାଏ । ସେମାନଙ୍କ ସହିତ ଯୋଗଦାନ କରିଥାନ୍ତି ଓଡ଼ିଶାର ବିଭିନ୍ନ ପ୍ରାନ୍ତର ବହୁ ତରୁଣ ଚିନ୍ତାନାୟକ ଏବଂ ସାହିତ୍ୟସେବୀ ।

ସେତେବେଳେ ଯୁବକ ଗୋପବନ୍ଧୁ ଓକିଲାତି କରୁଥାନ୍ତି । କଟକରେ ଥାଏ ଏକମାତ୍ର ରେଭେନ୍‌ସା କଲେଜ । ଏହି କଲେଜ ହଷ୍ଟେଲରେ ସେତେବେଳେ ଅନ୍ତେବାସୀ ଥାଆନ୍ତି ହରିହର ଦାସ ଯେ କି ପରେ ଆଚାର୍ଯ୍ୟ ହରିହର ଭାବରେ ସ୍ୱନାମଧନ୍ୟ । ଆଉ ଥାଆନ୍ତି ନୀଳକଣ୍ଠ ଦାସ ଯାହାଙ୍କୁ ପଣ୍ଡିତ ନୀଳକଣ୍ଠ ଦାସ ବୋଲି ଜାତି ଆଦରରେ ସ୍ମରଣ କରି ରଖିଛି । ଅନେକ ସମୟରେ ପଣ୍ଡିତ ଗୋପବନ୍ଧୁ ନିଜ ଅଞ୍ଚଳର ଏହି ତରୁଣ ଛାତ୍ରମାନଙ୍କ ସହିତ ହଷ୍ଟେଲରେ ବସି ନାନା ଆଲୋଚନାରେ ମଗ୍ନ ରହୁଥିଲେ । ବିଭିନ୍ନ ଦେଶରେ କିପରି ସ୍ୱାଧୀନତା ଆନ୍ଦୋଳନ ସଫଳ ହୋଇଥିଲା ଏବଂ ତାର କର୍ଣ୍ଣଧାରମାନେ କିପରି ଏହି ଆନ୍ଦୋଳନରେ ପ୍ରଚୁର ତ୍ୟାଗ କରି ଅମରତ୍ୱ ଲାଭ କରିଥିଲେ । ପ୍ରସଙ୍ଗକ୍ରମେ ଏ ସବୁ ଆଲୋଚିତ ହେଉଥିଲା । ସେତେବେଳେ ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟବାଦ ସୁଦୃଢ଼ ଆସନ ଗ୍ରହଣକରି ସାରିଥାଏ । କଂଗ୍ରେସ ନେତୃତ୍ୱରେ ଭାରତର ଜାତୀୟତାବାଦୀ ନେତାଗଣ ଜାତୀୟତା ମନ୍ତ୍ର ପ୍ରଚାର କରିବାକୁ ଲାଗିଲେ । ୧୯୦୫ ମସିହାରେ ବିଶାଳ ରୁଷଦେଶ ବିରୁଦ୍ଧରେ ଜାପାନର ଜୟଲାଭ ପରାଧୀନ ଭାରତୀୟମାନଙ୍କ ପ୍ରାଣରେ ନୂତନ ଆଶା ଉଦ୍ଦୀପନା ଖେଳାଇଦେଲା । ଇଉରୋପର ଗୋରାଲୋକମାନେ ଯେ ପ୍ରାଚ୍ୟଲୋକଙ୍କ ଦ୍ୱାରା ପରାସ୍ତ ହୋଇପାରିବେ ନାହିଁ, ଏ ଧାରଣା ଅଚିରେ ଦୂର ହୋଇଗଲା । ସେତେବେଳେ ସନ୍ନ୍ୟାସୀ ସ୍ୱାମୀ ବିବେକାନନ୍ଦଙ୍କର ବାଣୀ ଦେଶର ଯୁବସମାଜ ମନରେ ନୂତନ ମନ୍ତ୍ର ସଞ୍ଚାରିତ କରୁଥିଲା । ସେ ଚାହିଁଥିଲେ ଭାରତୀୟ

ଜାତିର ଏକ ସୁଦୃଢ଼ ଓ ବିକାଶଶୀଳ ଭୂମିକା । (୪) ଗୋପବନ୍ଧୁ ନିଜର ଯୁବକ ବନ୍ଧୁମାନଙ୍କ ଆଗରେ ଏହି ଆଦର୍ଶର କଥା ବାରମ୍ବାର ଆଲୋଚନା କରୁଥିଲେ । ସେ ତ କହିବା କଥାକୁ କବିତାରେ ଲେଖି ଯାଇଅଛନ୍ତି । ବିଶ୍ୱପ୍ରୀତି ଓ ସ୍ୱଦେଶ ମୁକ୍ତିର ଚିନ୍ତା ସେ ବାରମ୍ବାର ଉତ୍ଥାପନ କରୁଥିଲେ । (୫) ଦେଶପ୍ରାଣ ଗୋପବନ୍ଧୁ

---

(୪) ବିବେକାନନ୍ଦ କହିଥିଲେ—"I consider that the great national sin is the neglect of the masses, and that is one of the causes of our downfall. No amount of politics would be of any avail, until the masses in India are once more well educated, well-fed, and well-cared for. They pay for our education, they build our temples, but in return, they get kicks. They are practically our slaves. If we want to regenerate India, we must work for them." (Vivekananda--His call to The Nation—1970- P. 86)

"What we want are some young men who will renounce everything and sacrifice their lives for their country's sake. We should first form their lives and then some real work can be expected." (I. B. I. D-p. 91)

(୫) ଜାତୀୟ ମମତା ବିଶ୍ୱଜନ-ପ୍ରୀତି
ଉତ୍କଳବାସୀର ହେଉ ଏହା ନୀତି ।
× × × ×
ଦିଅ ସ୍ୱାର୍ଥବଳି ଦେଖାଅ ସେ ତ୍ୟାଗ
ଭାରତ ଜାତୀୟ ମହାଜାଗେ ଲାଗ ।
× × ×
ନିଜ ସୁଖ ଲାଗି ଜାତି ନୁହେଁ ହିନ୍ଦୁ
ବିଶ୍ୱ ହିତେ ହିନ୍ଦୁ ପ୍ରୀତି ରକ୍ତ ବିନ୍ଦୁ ।
ଦେଖାଅ ଏ ମନ୍ତ୍ର ଆପଣା ପରାଣେ
ଦିଅ ଏହି ମନ୍ତ୍ର ସର୍ବବର୍ଣ୍ଣ କାନେ ।
ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧ ବିଶ୍ୱହିତ ତେଜି ଅଭିମାନ "— (ଗୋପବନ୍ଧୁ)

ନୂତନ ସମାଜର ସ୍ୱପ୍ନ ଦେଖୁଥିଲେ । ତତ୍କାଳୀନ ପରାଧୀନ ଓ କଳଙ୍କିତ ଉତ୍କଳୀୟ ସମାଜରେ ହୀନମନ୍ୟତା ଚତୁର୍ଦ୍ଦିଗରେ ପ୍ରଭାବବିସ୍ତାର କରୁଥିଲା । ଓଡ଼ିଶାରେ ନା ଥିଲା ଶିକ୍ଷାପ୍ରସାର । ନା ଥିଲା ସାମାଜିକ ଜାଗରଣ କିମ୍ବା ଆତ୍ମବିଶ୍ୱାସ । ସର୍ବତ୍ର କିପରି ଏକ ଗୌଣ ମନୋବୃତ୍ତି ଜାତୀୟଜୀବନକୁ ଆଚ୍ଛନ୍ନ କରି ରଖିଥିଲା । ଇଂରେଜୀ ଶିକ୍ଷିତ କଲିକତା-ଆଗତ ବଙ୍ଗାଳୀ ରାଜକର୍ମଚାରୀମାନେ ଓଡ଼ିଶାର ଜାତୀୟଜୀବନକୁ ସମ୍ମାନ ଦେଉ ନଥିଲେ । କିପରି ଏକ ଅବହେଳିତ ଅନାସ୍ଥାଭାବ ସର୍ବତ୍ର ରାଜତ୍ୱ କରୁଥିଲା । ଏପରି ଅବସ୍ଥାରେ ଦେଶର ଉନ୍ନତି ହେବ କିପରି ? ଜାତୀୟ ଜୀବନର ଉନ୍ମେଷ ପାଇଁ କିଏ କର୍ଣ୍ଣଧାର ହେବେ ? ଏ ଦେଶର ଯୁବଶକ୍ତି ଜାଗ୍ରତ ନ ହେଲେ ଦେଶର ଭବିଷ୍ୟତ ଅନ୍ଧକାରମୟ । ଯେଉଁ କେତେଜଣ ଇଂରେଜୀ ଶିକ୍ଷାପ୍ରାପ୍ତ ଉତ୍କଳୀୟ ଯୁବକ ବାହାରୁଥିଲେ ସେମାନେ ଆପଣା ବିଷୟ-ସ୍ୱାର୍ଥରେ ମୁହ୍ୟମାନ ହୋଇ ଜାତୀୟ କର୍ତ୍ତବ୍ୟ ଭୁଲିଯାଉଥିଲେ । ସର୍ବତ୍ର ସାମ୍ରାଜ୍ୟବାଦୀ ବିଦେଶୀ ଶାସକମାନଙ୍କ ସମକ୍ଷରେ ଗୌଣ ମନୋବୃତ୍ତି ଏବଂ ତୋଷାମୋଦ ଭାବ ପ୍ରକାଶିତ ହେଉଥିଲା । ଏପରି ଭାବ ରାଜପଣ କରୁଥିଲା ଯାଏଁ ଜାତିର ଭବିଷ୍ୟତ ଅନ୍ଧକାରମୟ ସିନା !!

ଗୋପବନ୍ଧୁ ତାଙ୍କର ତରୁଣ ବନ୍ଧୁମାନଙ୍କ ମେଳରେ ବହୁବାର ଏହି ବିଷୟ ଆଲୋଚନା କରୁଥାଆନ୍ତି । ଦିନକର କଥା । ତାଙ୍କର ନିଜ ଗ୍ରାମ ନିକଟ ଭାର୍ଗବୀ ନଦୀର ବାଲୁଶଯ୍ୟା ଶ୍ମଶାନ ଉପରେ ଏକ ଜହ୍ନ ରାତିରେ ଏକାଠି ହୋଇଥିଲେ ପଣ୍ଡିତ ଗୋପବନ୍ଧୁ, ଅନନ୍ତ ମିଶ୍ର, ହରିହର ଏବଂ ନୀଳକଣ୍ଠ । ସେଇଠି ସେମାନେ ଶପଥ ନେଇଥିଲେ ଦାସ ଆପଣଙ୍କ ଆଗରେ—"ଏ ଜାତିର ସର୍ବାଙ୍ଗୀନ ଉନ୍ନତି ପାଇଁ ସେମାନେ ଜୀବନ ବ୍ୟାପୀ ସାଧନା କରିଯିବେ । ଯେ କୌଣସି ପ୍ରକାର ତ୍ୟାଗ ସ୍ୱୀକାର କରିବା ପାଇଁ ସେମାନେ ଆଦୌ କୁଣ୍ଠିତ ହେବେ ନାହିଁ ।" (୬)

---

(୬) "ଆମକୁ ଡରମାଡ଼ିବାର କଥା । କିନ୍ତୁ ଗୋପବନ୍ଧୁଙ୍କ ସଙ୍ଗେ ଯେଉଁଠାରେ ବସି ସେହି ଭୀମକାନ୍ତ ଦୃଶ୍ୟ ଭିତରେ ସେ ଦିନରାତି ପାହିଯାଇଥିଲା କି ଭାବାବେଶରେ—କହି ହେଉନାହିଁ । ସମସ୍ତେ ସଙ୍କଳ୍ପ କଲୁ, 'ସରକାରୀ ଚାକିରୀ କରିବାନାହିଁ, ନିଜର ଭରଣ ପୋଷଣ ବିଳାସରେ ମନ ଦେବାନାହିଁ । ଜନ୍ମ ହୋଇ ଦେଶକୁ ଯାହା ଦେଖିଥାଉଁ, ମଲାବେଳେ ତାଠାରୁ ଉନ୍ନତତର ଅବସ୍ଥାରେ ଛାଡ଼ିଯିବା ଓ ସେଥିପାଇଁ ବରାବର ପ୍ରଯତ୍ନରେ ରହିବା ।" ପୃ ୧୩

[ପ୍ରାରମ୍ଭ—ନୀଳକଣ୍ଠଦାସ—ସତ୍ୟବାଦୀରେ ସାତବର୍ଷ—ଚନ୍ଦ୍ରଶେଖର ମିଶ୍ର —ଦ୍ୱିତୀୟ ମୁଦ୍ରଣ—୧୯୬୬]

ଦାସ ଆପଣେ ପଣ୍ଡିତ ନୀଳକଣ୍ଠଙ୍କୁ ସବୁ କଥାରେ ଲୋଡ଼ୁଥିଲେ ଏବଂ ବିଶ୍ୱସୁଥିଲେ । ଯେ କୌଣସି ନୂଆ ଯୋଜନାଟିଏ କାର୍ଯ୍ୟକାରୀ କରିବାପୂର୍ବରୁ ସେ ନୀଳକଣ୍ଠଙ୍କ ସହିତ ଆଲୋଚନା ନ କରି ଅଗ୍ରସର ହେଉନଥିଲେ । ନିଜର ସ୍ମୃତିଚାରଣ କରି ପଣ୍ଡିତ ନୀଳକଣ୍ଠ ଲେଖିଛନ୍ତି ଯେ ଶିକ୍ଷାର ପ୍ରସାର ବିନା ଏ ଦେଶର ଦୁଃଖ ତୁଟିବ ନାହିଁ । କେହି ପ୍ରକୃତ ସମସ୍ୟାକୁ ହୃଦୟଙ୍ଗମ କରିବେ ନାହିଁ । କୁସଂସ୍କାର ଓ ସ୍ୱାର୍ଥପରତାର ଅନ୍ଧକାର ମଧ୍ୟରେ ସମସ୍ତେ ସନ୍ତୁଳ ହେଉଥିବେ । ମାତ୍ର ଏହି ଶିକ୍ଷା ପ୍ରସାର କିପରି ହେବ ? ପ୍ରକୃତ ଶିକ୍ଷାଦାନ ବ୍ୟବସ୍ଥା କିପରି କରାଯିବ ? ଇଂରେଜମାନେ ଯେଉଁ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିଥିଲେ ତାହାଥିଲା କିରାଣୀ ତିଆରି କାରଖାନା । ଏ କାରଖାନାରେ ଅନେକ କଳାସାହେବ ଉବୁରୁଥିଲେ । ଏମାନେ ଥିଲେ ଜାତୀୟ ସ୍ୱାଭିମାନ ଓ ଆଶା ଆକାଂକ୍ଷାର ପରିପନ୍ଥୀ । ଦେଶରେ ଏକ ମଣିଷ ତିଆରି କାରଖାନାର ଆବଶ୍ୟକତା ପଡ଼ୁଥିଲା । ସେତେବେଳେ ସେମାନଙ୍କ ଆଗରେ ଆଦର୍ଶ ହୋଇ ଠିଆ ହୋଇଥିଲା ପୁନାର ଫର୍ଗୁସନ କଲେଜ । ଶାସକ ଇଂରେଜ ଜାତିର ଦେଶ ଇଂଲଣ୍ଡରେ ମଧ୍ୟ ଇଟନ୍, ହାରୋ, ରୁଗ୍‌ବି ପରି ପବ୍ଲିକ ସ୍କୁଲମାନ ସେମାନଙ୍କ ମନକୁ ଆକର୍ଷଣ କରୁଥିଲା । ଏହି ପରିସ୍ଥିତିରେ ଜନ୍ମ ଗ୍ରହଣ କଲା ସତ୍ୟବାଦୀ ବନବିଦ୍ୟାଳୟ । (୭)

୧୯୦୯ ମସିହା କୁମାର ପୂର୍ଣ୍ଣିମାଦିନ ସତ୍ୟବାଦୀ ସ୍କୁଲ ଜନ୍ମ ଗ୍ରହଣ କଲା । ସ୍କୁଲ ତ ଆରମ୍ଭ ହୋଇଗଲା । ମାତ୍ର ଏଇ ମଣିଷ ତିଆରି କାରଖାନାର ସଞ୍ଚାଳକ ହେବ କିଏ ? ଗୋପବନ୍ଧୁଙ୍କର ଦୃଷ୍ଟି ରହିଲା ନୀଳକଣ୍ଠଙ୍କ ଉପରେ । ସେତେବେଳେ ପଣ୍ଡିତ ନୀଳକଣ୍ଠ କଲିକତାରେ ଏମ. ଏ. ପାଠ ପଢୁଥାନ୍ତି । ସେ କାଳର ଓଡ଼ିଆ ପିଲାଙ୍କ ମଧ୍ୟରେ କେତେଜଣ ଅବା ଏମ୍. ଏ. ପାଠ ପଢ଼ିପାରୁଥିଲେ ୧୯୧୧ ସାଲରେ ପଣ୍ଡିତ ନୀଳକଣ୍ଠ ଏମ୍. ଏ. ପାଶକରି ଗୋପବନ୍ଧୁଙ୍କ ଆହ୍ୱାନରେ ଅନୁପ୍ରାଣିତ ହୋଇ ସତ୍ୟବାଦୀ ମାଇନର ସ୍କୁଲର ଶିକ୍ଷକ ଭାବରେ ଯୋଗ ଦେଇଥିଲେ । ବେତନ ଧାର୍ଯ୍ୟ ହୋଇଥିଲା ମାତ୍ର ତିରିଶଟଙ୍କା । ପରେ ଏହା ଚାଳିଶଟଙ୍କାକୁ ବୃଦ୍ଧି ହୋଇଥିଲା । ସେ କାଳରେ ଏମ୍. ଏ. ଉପାଧିଧାରୀଙ୍କ ପାଇଁ ଇଂରେଜ ସରକାରଙ୍କ ଦପ୍ତରରେ ବହୁ ସମୃଦ୍ଧ—ସମ୍ଭାବନା ଭରପୂର ହୋଇ ରହିଥିଲା । କିନ୍ତୁ ନୀଳକଣ୍ଠ ଓ ତାଙ୍କର ସହକର୍ମୀମାନଙ୍କୁ ଏ ପ୍ରଲୋଭନ ବିଚଳିତ କରିପାରିଲା ନାହିଁ । ନୀଳକଣ୍ଠ କାର୍ଯ୍ୟଭାର ଗ୍ରହଣର ପରବର୍ତ୍ତୀକାଳରେ ୧୯୧୨ ସାଲରେ ଆଚାର୍ଯ୍ୟ ହରିହର ଏବଂ ୧୯୧୪ ସାଲରେ ଗୋଦାବରୀଶ ମିଶ୍ର ଶିକ୍ଷକ ଭାବରେ ସତ୍ୟବାଦୀ ବନବିଦ୍ୟାଳୟକୁ ଟାଣି ହୋଇ ଆସିଥିଲେ । ଏହି କର୍ମୀମାନଙ୍କ ସହିତ ଘନିଷ୍ଠ ଭାବରେ ସାଧନାରତ

---

(୭) ସତ୍ୟବାଦୀରେ ସାତବର୍ଷ—ଚନ୍ଦ୍ରଶେଖର ମିଶ୍ର—ଦ୍ୱିତୀୟ ମୁଦ୍ରଣ—୧୯୬୬—ପୃ ୧୩

ଥିଲେ ପ୍ରଚାରକ ଅନନ୍ତ ମିଶ୍ର ଏବଂ ରାମଚନ୍ଦ୍ର ରଥ । ଏମାନେ ସମସ୍ତେ ବିଦେଶୀ ପ୍ରଭାବ ବିରୁଦ୍ଧରେ ଯୁଦ୍ଧଂ ଦେହି ଡାକରା ଦେଇଥିଲେ । ଦେଶବାସୀଙ୍କର ଦୁର୍ବଳତା ଏବଂ ଅଧୋଗତି କିପରି ଦୂରହେବ ସେଥିପାଇଁ ସେମାନେ ଥିଲେ ସତତ ସଚେତନ । ଏହି କର୍ମୀମାନଙ୍କ ସମ୍ପର୍କରେ ସତ୍ୟବାଦୀ ସ୍କୁଲର ଜଣେ ଆଦର୍ଶ ଛାତ୍ର ଅଧ୍ୟାପକ ରତ୍ନାକର ପତି ଲେଖିଥିଲେ—

"ଏହି ବ୍ରତର ପାଳନ ନିମନ୍ତେ ତଦାନୀନ୍ତନ ସହଜଲଭ୍ୟ ଯାବତୀୟ ସ୍ୱାର୍ଥମୂଳକ ପ୍ରଲୋଭନ ବିସର୍ଜନ କରି ଏହି ବଳିଷ୍ଠ କର୍ମୀମାନେ ଦେଶାତ୍ମବୋଧରେ ଅନୁପ୍ରାଣିତ ହେବା ସଙ୍ଗେ ସଙ୍ଗେ ତ୍ୟାଗର ଭିତ୍ତିରେ ପୁଣ୍ୟଧାମ ବକୁଳ-ଜୁରିଅନା-ପରିମଣ୍ଡିତ ଓ କବି-ବନ୍ଦିତ ଗୁରୁଚରଣଚିହ୍ନ-ବିଧୌତ ପୁରାଣ ପ୍ରସିଦ୍ଧ ସାକ୍ଷୀଗୋପାଳ ମନ୍ଦିର ନିକଟରେ ଭାରତସଂଭୂତ ତଥା ପୃଥିବୀ ବିଖ୍ୟାତ ପ୍ରାଚୀନ ଗୁରୁକୁଳ ଆଶ୍ରମକଳ୍ପ 'ସତ୍ୟବାଦୀ ବିଦ୍ୟାଳୟ' ନାମକ ଏକ ଶିକ୍ଷାନୁଷ୍ଠାନ ଗଢ଼ି ବସିଥିଲେ ।" (୮) ଏହି ଅନୁଷ୍ଠାନର ପ୍ରାଣପିଣ୍ଡ ଥିଲେ ପଣ୍ଡିତ ଗୋପବନ୍ଧୁ । ଏହିଠାରେ ନୀଳକଣ୍ଠଙ୍କର ପାଣ୍ଡିତ୍ୟ ଓ କବିତ୍ୱ ଗୋଦାବରୀଶ ମିଶ୍ରଙ୍କର ପଲ୍ଲୀପ୍ରାଣତା ଓ ନିରଳସ କବିତ୍ୱ, ଅଧ୍ୟାପନାବୃତ୍ତି ଓ ଶିଷ୍ୟପ୍ରାଣତା, କୃପାସିନ୍ଧୁଙ୍କର ଐତିହାସିକ ଗବେଷଣା, ଆଚାର୍ଯ୍ୟ ହରିହରଙ୍କ ଛାତ୍ରବତ୍ସଳତା ଋଷିଜନସେବିତ ନିର୍ମଳ ଚରିତ୍ରନିଷ୍ଠା, ସେବାପରାୟଣତା ଏବଂ ରାମଚନ୍ଦ୍ରରଥ, ବାସୁଦେବ ମହାପାତ୍ର ପ୍ରଭୃତିଙ୍କର ନୀରବ କର୍ମନିଷ୍ଠା ପ୍ରଭୃତି ସଦ୍‌ଗୁଣଗୁଡ଼ିକ ଉଦ୍‌ଭାସିତ ହୋଇ ଉଠିଥିଲା । ସତ୍ୟବାଦୀ ବନବିଦ୍ୟାଳୟ କିପରି ତ୍ୟାଗପୂତ ବ୍ୟକ୍ତିତ୍ୱ ଗଢ଼ିବାରେ ସାହାଯ୍ୟ କରିଥିଲା ତାହା କେବଳ ପ୍ରଚାରକ ଅନନ୍ତମିଶ୍ର ଏବଂ ଶିକ୍ଷକ ରାମଚନ୍ଦ୍ର ରଥଙ୍କ ଜୀବନୀ ଆଲୋଚନା କଲେ ଜଣାଯାଇ-ପାରିବ । ପଣ୍ଡିତ ନୀଳକଣ୍ଠ ଅତ୍ୟନ୍ତ ଭାବାବେଗରେ ଏହି ସହକର୍ମୀମାନଙ୍କ ସମ୍ପର୍କରେ ଆଲୋକପାତ କରିଯାଇଅଛନ୍ତି । ତାଙ୍କରି ଭାଷାରେ ପ୍ରଚାରକ ଅନନ୍ତମିଶ୍ର ନିଃସଙ୍ଗ, ନିରଳସ, ପରପ୍ରାଣ ଓ କର୍ମସର୍ବସ୍ୱ ବ୍ୟକ୍ତି ଥିଲେ । ସେ ଯଥାର୍ଥରେ ମୁଠାଏ ଭାତ ନଖାଇ ମରିଛନ୍ତି । ମୃତ୍ୟୁଶଯ୍ୟାରେ ତାଙ୍କର ସଙ୍ଗୀସହଚର କେହି ନଥିଲେ । ମଲାବେଳେ ଦେଶର ଭବିଷ୍ୟତ ଛଡ଼ା ଓ ସଙ୍ଗୀମାନଙ୍କ କଲ୍ୟାଣ ଓ କ୍ରିୟା ଯୋଜନା ଛଡ଼ା ସେ ଆଉ କିଛି ଚିନ୍ତା କରୁନଥିଲେ । ପଣ୍ଡିତ ନୀଳକଣ୍ଠ ରାମଚନ୍ଦ୍ର ରଥଙ୍କ ସମ୍ପର୍କରେ କହିଛନ୍ତି ଯେ ସେ ଥିଲେ ଶ୍ରେଷ୍ଠ ସାମନ୍ତ ବ୍ରାହ୍ମଣ । ସେ ଥିଲେ ଅତ୍ୟନ୍ତ ଦରିଦ୍ର । ଗୋପବନ୍ଧୁଙ୍କର ସାହାଯ୍ୟ ଭିକ୍ଷା କରନ୍ତେ ଦାସେ ଆପଣେ କହିଲେ, "ମାଗନାହିଁ—ଅର୍ଜିକରି ପଢ଼ ।" ଗୋପବନ୍ଧୁଙ୍କୁ ରଥେ ପଚାରିଲେ—କ'ଣ କିପରି ଅର୍ଜିବି, ବାଟ ବତାଇ ଦିଅନ୍ତୁ । "ମନ ଥିଲେ ଷ୍ଟେସନରୁ ବୋଝ ବୋହି ଅର୍ଜି ପାରିବ ।"—ଦାସେ ଆପଣେ ଉତ୍ତର ଦେଇଥିଲେ । ସେଇ କାମ ସେ

(୮) ସତ୍ୟବାଦୀରେ ସାତବର୍ଷ—(ଗ୍ରନ୍ଥସୂଚନା—ରତ୍ନାକର ପତି—ପୃଃ୬)—୧୯୬୬

କଲେ, ନିଜେ ଚଲାଇଲେ ଏବଂ ପାଠ ପଢ଼ିଲେ । ଛଅ ପଇସା ମଜୁରି ପାଇବା ଲାଗି ସେ କାଳର ଏହି ସାମାନ୍ୟ ବ୍ରାହ୍ମଣ ଶୁଖିଆପଟ ମୁଣ୍ଡରେ ଷ୍ଟେସନରୁ ବୋହି ପୁରୀ ସହରକୁ ଆସିବାର ଦୃଶ୍ୟ ନୀଳକଣ୍ଠ ନିଜେ ଦେଖିଛନ୍ତି । ଏହି ରାମଚନ୍ଦ୍ର ରଥେ ଏଣ୍ଟ୍ରାନ୍ସ ପାସ୍‌କରି ପୁରୀ କଚେରୀରେ ଦଶଟଙ୍କାରେ ନିଯୁକ୍ତି ପାଇଥିଲେ । ପରବର୍ତ୍ତୀକାଳରେ ଖୋର୍ଦ୍ଧା କଚେରୀରେ ପଞ୍ଚାଶ ଟଙ୍କାରେ ତାଙ୍କୁ ପେସ୍କାର ନିଯୁକ୍ତି ମିଳିଲା । ଏହିଠାରେ କେହି ଲାଞ୍ଚ ଯାଚିବାରୁ ଚରିତ୍ର ଖରାପ ହେବା ଆଶଙ୍କାରେ ସେ ସତ୍ୟବାଦୀ ବନବିଦ୍ୟାଳୟରେ ଶିକ୍ଷକ ଭାବରେ ଆଶ୍ରୟ ଗ୍ରହଣ କଲେ ମାତ୍ର ଛଅଟଙ୍କା ବେତନରେ । କି ଯାଦୁକରୀ ସ୍ପର୍ଶ ଥିଲା ସତ୍ୟବାଦୀ ବନବିଦ୍ୟାଳୟର !! ଏହି ବିଦ୍ୟାଳୟର ବିଶ୍ୱକର୍ମା ଥିଲେ ପଣ୍ଡିତ ନୀଳକଣ୍ଠ । (୧)

ଉଚ୍ଚଶିକ୍ଷିତ ନୀଳକଣ୍ଠ ଇଚ୍ଛା କରିଥିଲେ ରେଭେନ୍‌ସା କଲେଜରେ ଅଧ୍ୟାପକ ହୋଇପାରିଥାନ୍ତେ । ସେକାଳରେ ଓଡ଼ିଶାର ଏକମାତ୍ର ରେଭେନ୍‌ସା କଲେଜରେ ଅଧ୍ୟାପକ ହେବା ଅତ୍ୟନ୍ତ ଗୌରବର କଥା ଥିଲା । ନୀଳକଣ୍ଠ ସରକାରୀ ଦପ୍ତରରେ ବଡ଼ ହାକିମ ହୋଇ କର୍ମ କରିବା କିଛି ଅସମ୍ଭବ ହୋଇନଥାନ୍ତା । ସେହି ସମୟରେ କେତେଜଣ ଅବା ଉଚ୍ଚଶିକ୍ଷିତ ଓଡ଼ିଆଯୁବକ ବାହାରିଥିଲେ ମାତ୍ର ପଣ୍ଡିତ ନୀଳକଣ୍ଠ ଆପେ ଆପେ ଏହି ତ୍ୟାଗପୂତ ଜୀବନ ବରଣ କରି ନେଇଥିଲେ । ଅବଶ୍ୟ ଦାସେ ଆପଣେଙ୍କ ପ୍ରେରଣା ଏଥିପାଇଁ ମୁଖ୍ୟତଃ ଦାୟୀ ବୋଲି ସ୍ୱୀକାର କରାଯାଇପାରେ । ଶିକ୍ଷକ ନୀଳକଣ୍ଠ କଳା ସାହେବୀପୋଷାକ ପିନ୍ଧି ଯେତେବେଳେ ଶିକ୍ଷାଦାନ କରୁଥିଲେ, ଛାତ୍ରମାନେ ଚମତ୍କୃତ ହୋଇ ଯାଉଥିଲେ । ବନବିଦ୍ୟାଳୟର ସେହି ଅକ୍ଷୟସ୍ମୃତି ପରିଣତ ଜୀବନରେ ମଧ୍ୟ ପ୍ରିୟ ଛାତ୍ରମାନେ ଭୁଲି ନଥିବା ଦେଖାଯାଏ । କୌଣସି ସାଂସ୍କୃତିକ ସମାରୋହରେ ସ୍ମୃତିଚାରଣ କରି ଏହି ସ୍ୱନାମଧନ୍ୟ ଛାତ୍ରମାନେ ନିଜନିଜକୁ ଗୌରବମଣ୍ଡିତ ମନେ କରିଥାଆନ୍ତି ।

## ସତ୍ୟବାଦୀ ବନବିଦ୍ୟାଳୟର ଆଦର୍ଶ

"ତତ୍କାଳୀନ ଶିକ୍ଷାପଦ୍ଧତି ଦେଶର ଆବଶ୍ୟକତାକୁ ଉପଯୁକ୍ତଭାବରେ ପୂରଣ କରିବା ସମ୍ଭବ ନଥିଲା" ତାହା ଥିଲା ଏକ ବିଦେଶୀ ଔପନିବେଶିକବାଦୀ ଶାସନକଳର ଶିକ୍ଷାବ୍ୟବସ୍ଥା । ଗୋପବନ୍ଧୁ, ନୀଳକଣ୍ଠଙ୍କ ପରି ମନୀଷୀଗଣ ଏହି ଅଭାବ ଉପଲବ୍‌ଧି କରି ଏକ ଆଦର୍ଶ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କଲେ । ପ୍ରାଚୀନ ଗୁରୁକୁଳ ଆଦର୍ଶରେ ଏହାର ପରିକଳ୍ପନା କରାଯାଇଥିଲା । କେବଳ ସରକାରୀ କଳପାଇଁ କିରାଣୀ ତିଆରି କରିବା ଏହି ଅନୁଷ୍ଠାନର ଉଦ୍ଦେଶ୍ୟ ନଥିଲା । ସ୍ୱଦେଶପ୍ରୀତିରେ ଅନୁପ୍ରାଣିତ ହୋଇ ଏଠାର ଛାତ୍ରମାନେ କିପରି ଦେଶ ଓ ସମାଜର ସେବାରେ

---

(୧) ଆତ୍ମଜୀବନୀ— ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମ ଖଣ୍ଡ—୧୯୬୩—ପୃ ୬୩—୬୪

ସାର୍ଥକ ଭାବରେ ଆତ୍ମନିୟୋଗ କରିପାରିବେ ସେହି ଲକ୍ଷ୍ୟରେ ଏଠାରେ ଶିକ୍ଷାଦାନ କରାଯାଉଥିଲା । ଶିକ୍ଷକମାନେ ଥିଲେ ଆଦର୍ଶପ୍ରାଣ ଏବଂ ନୈଷ୍ଠିକ ନୀତିମୟ ଜୀବନାଦର୍ଶ ଥିଲା ସେମାନଙ୍କର ପରମ ଆଭିମୁଖ୍ୟ । ସଂଯମ ଓ ତପସ୍ୟାକୁ ଆଖି ଆଗରେ ରଖି ଗୁରୁମାନେ ଛାତ୍ରମାନଙ୍କୁ ପ୍ରେରଣା ଯୋଗାଉଥିଲେ । ସତ୍ୟବାଦୀର ମୁକ୍ତାକାଶତଳେ ବକୁଳବଣରେ ଏହି ମହାନ ପରୀକ୍ଷା ସେ କାଳର ବହୁ ଶିକ୍ଷାବିତ୍, ଜନନାୟକ ଏବଂ ଯୋଗୀପୁରୁଷଙ୍କର ଦୃଷ୍ଟିଆକର୍ଷଣ କରିଥିଲା । ସ୍ୱାମୀ ନିଗମାନନ୍ଦଙ୍କ ପରି ଯୋଗୀପୁରୁଷ ସତ୍ୟବାଦୀ ବନବିଦ୍ୟାଳୟ ସଂପର୍କରେ ଅତ୍ୟନ୍ତ ମୁଗ୍ଧ ହୋଇ ୧୯୧୩ ମସିହାରେ ବଙ୍ଗଦେଶର "ନବଭାରତ" ପତ୍ରିକାରେ ଲେଖିଥିଲେ—

ଗୋପବନ୍ଧୁଙ୍କ ପ୍ରଚେଷ୍ଟାରେ ଏହି ସତ୍ୟବାଦୀ ସ୍କୁଲ ସଂସ୍ଥାପିତ ହୋଇଅଛି । **ଗୋପବନ୍ଧୁ, ନୀଳକଣ୍ଠ ଯେପରି ପୁନାର ଗୋଖଲେ, ପାରଂଜପେ ଏବଂ ବଙ୍ଗର ବିଦ୍ୟାସାଗର** । ଗୋପବନ୍ଧୁ ଉତ୍କଳ ନିମନ୍ତେ ରକ୍ତପାତ ନୁହେଁ, ତିଳତିଳ କରି ଜୀବନପାତ କରିଅଛନ୍ତି । ଗୋପବନ୍ଧୁ, ନୀଳକଣ୍ଠ ଓ ଅନ୍ୟାନ୍ୟ ଶିକ୍ଷକଗଣ ଯେପରି ଅଗ୍ନିର ସ୍ଫୁଲିଙ୍ଗ । ବ୍ରହ୍ମଚର୍ଯ୍ୟ ଶିକ୍ଷାଦେବା ସେମାନଙ୍କର ଜୀବନର ବ୍ରତ । ସେମାନଙ୍କ ସଂସ୍ପର୍ଶରେ ଆସିଲେ ନିର୍ଜୀବ ଦେହରେ ଅଗ୍ନି ପ୍ରଜ୍ୱଳିତ ହୋଇ ଉଠେ । ଦରିଦ୍ର ଗୋପବନ୍ଧୁଙ୍କ ଉପାର୍ଜନର ଅଧିକାଂଶ ଏହି ସ୍କୁଲକୁ ପରିଚାଳିତ କରୁଅଛି । **ଦରିଦ୍ର ଗୋପବନ୍ଧୁ ଏବଂ କଷ୍ଟସ୍ଥ ନୀଳକଣ୍ଠ ଯାହା କରୁଅଛନ୍ତି, ଆତ୍ମତ୍ୟାଗର ଯେଉଁ ଉଜ୍ଜ୍ୱଳ ଦୃଷ୍ଟାନ୍ତ ଦେଖାଉଅଛନ୍ତି, ଆମ୍ଭମାନଙ୍କ ବଙ୍ଗରେ ସେହି ଦୃଷ୍ଟାନ୍ତ କେଉଁଠାରେ ଦେଖାଯାଏ ନାହିଁ ।"**

କେବଳ ସେତିକି ନୁହେଁ, ୧୯୧୯ ମସିହାରେ ଠାକୁର ନିଗମାନନ୍ଦ ତାଙ୍କ ପ୍ରତିଷ୍ଠିତ "ଆର୍ଯ୍ୟଦର୍ପଣ" ପତ୍ରିକାରେ—"ସମସ୍ତେ ଶିକ୍ଷାକୁ ବୈଶ୍ୟବୃତ୍ତିର ସୋପାନରୂପେ ହିଁ ଦେଖିଛନ୍ତି, ବ୍ରାହ୍ମଣ୍ୟ ଭାବରେ ତାହାର ପ୍ରାଣପ୍ରତିଷ୍ଠା କରିନାହାନ୍ତି । ଆମର ସ୍କୁଲଗୁଡ଼ିକରେ ବୈଦେଶିକ ଭାବ ବହୁଳପରିମାଣରେ ବର୍ଜିତ ହୋଇଥିଲେ ସୁଦ୍ଧା ଆର୍ଯ୍ୟସଭ୍ୟତାର ମୂଳଭିତ୍ତି ସତ୍ତ୍ୱଶୁଦ୍ଧି ଓ ତାହାର ଦ୍ୱାର ସ୍ୱରୂପ ବ୍ରହ୍ମଚର୍ଯ୍ୟକୁ ସେମାନେ ମୁଖ୍ୟତଃ ଶିକ୍ଷାର ପ୍ରତିଷ୍ଠାକ୍ଷେତ୍ର ବୋଲି ଗ୍ରହଣ କରିନାହାନ୍ତି । ବର୍ତ୍ତମାନ ବଙ୍ଗଦେଶର ଗୌରବ ରବି ଶ୍ରୀଯୁକ୍ତ ରବୀନ୍ଦ୍ରନାଥ ଠାକୁର 'ଜାତୀୟଶିକ୍ଷା ପରିଷଦ' ପ୍ରତିଷ୍ଠାକାଳରେ 'ଶିକ୍ଷାସମସ୍ୟା' ଶୀର୍ଷକ ଗୋଟିଏ ବକ୍ତୃତାରେ ଶିକ୍ଷାର ଯେଉଁ ଆଦର୍ଶ ପ୍ରକଟିତ କରିଛନ୍ତି ତାହା ଭାରତର ଜାତୀୟଭାବ ଅନୁସାରୀ ସତ୍ୟ । କିନ୍ତୁ **ଏକମାତ୍ର ଓଡ଼ିଶାର ସତ୍ୟବାଦୀ ବିଦ୍ୟାଳୟ ବ୍ୟତୀତ ସେହି ଆଦର୍ଶରେ ସାରା ଭାରତରେ ଗୋଟିଏ ହେଲେ ବିଦ୍ୟାଳୟ ଦେଖିନାହିଁ ।"** (୧୦) ଏହିପରି ବନବିଦ୍ୟାଳୟ ଭାରତରେ ସର୍ବତ୍ର ହେବା ଉଚିତ ବୋଲି ଶ୍ରୀଶ୍ରୀଠାକୁର ମତ ପ୍ରକାଶ କରିଥିଲେ ।

(୧୦) "ସମାଜ"—ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା—୧୯୮୩ ପୃ ୬୯—୭୦

ସତ୍ୟବାଦୀ ବନବିଦ୍ୟାଳୟକୁ ମହାତ୍ମାଗାନ୍ଧୀ ଓଡ଼ିଶା ଭ୍ରମଣକାଳରେ ପରିଦର୍ଶନ କରିଥିଲେ । ମୁକ୍ତାକାଶତଳେ ଏପରି ଆଦର୍ଶବିଦ୍ୟାଳୟର ସୁପରିଚାଳନା ତାଙ୍କୁ ଅଭିଭୂତ କରିଦେଇଥିଲା । ସେ ଓଡ଼ିଶାରୁ ଫେରି ତାଙ୍କ ସମ୍ପାଦିତ 'young India' ପତ୍ରିକାରେ ଉଚ୍ଛ୍ୱସିତ ପ୍ରଶଂସା କରି ଲେଖିଥିଲେ ଏହିପରି—"No wonder if I believe that with such earnest men, Swaraj is possible to attainment within the year. Pandit Gopabandhu has an open-air school at Sakhigopal twelve miles of this side of Puri. It is worthy of a visit. I passed a most delightful day in the midst of the boys and their teachers. It is serious experiment in open-a r teaching. (୧୧)

ପଣ୍ଡିତ ନୀଳକଣ୍ଠଙ୍କ ପରି ନିଷ୍ଠାପର କର୍ମୀ ପ୍ରଧାନ ଶିକ୍ଷକଙ୍କ ନେତୃତ୍ୱରେ ସତ୍ୟବାଦୀ ବିଦ୍ୟାଳୟ ଯେଉଁ ପରୀକ୍ଷା କରି ଚାଲିଥିଲା, ତାହା ଦେଶର ସୁଧୀ ସମାଜର ଅବଲମ୍ବେ ଦୃଷ୍ଟି ଆକର୍ଷଣ କରି ପାରିଥିଲା । ଏପରି ନିଷ୍ଠାପର ଶିକ୍ଷକ ଓ ଛାତ୍ର ଲାଭ କଲେ ବର୍ଷକ ମଧ୍ୟରେ ସ୍ୱରାଜ ଲାଭ ହୋଇପାରିବ ବୋଲି ମହାତ୍ମାଗାନ୍ଧୀ ଆଶାୟୀ ହୋଇ ଉଠିଥିଲେ । ଗୋପବନ୍ଧୁ ଏବଂ ନୀଳକଣ୍ଠ ଏ ଦେଶରେ ଆର୍ଯ୍ୟଆଦର୍ଶ ପ୍ରତିଷ୍ଠାପାଇଁ ଉଦ୍ୟମ କରିବା ସ୍ୱାଭାବିକ । ମାତ୍ର ସେମାନେ ରକ୍ଷଣଶୀଳ ନଥିଲେ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଶିକ୍ଷାନୀତିର ଉନ୍ନତ ଭାବରାଜିର ସମନ୍ୱୟରେ ଏକ ଆଦର୍ଶ ଶିକ୍ଷା-ପଦ୍ଧତି ଏଠାରେ ପରୀକ୍ଷିତ ହେଉଥିଲା । ସେଥିପାଇଁ ସାର୍, କେ. ଜି. ଗୁପ୍ତ ଯଥାର୍ଥରେ ଲେଖିଥିଲେ—"The School is a happy combination of old and new methods, but its success is mainly due to the spirit of self-sacrifice which actuales, those who compose its staff." ମୋଟ ଉପରେ ଶିକ୍ଷକମାନଙ୍କର ଉଜ୍ଜ୍ୱଳ ଆତ୍ମତ୍ୟାଗହିଁ ଥିଲା ଏ ସବୁ ସଫଳତାର ମୂଳ କାରଣ । ଗୋପବନ୍ଧୁଙ୍କର ପ୍ରେରଣା ଏବଂ ନୀଳ-କଣ୍ଠଙ୍କର ପ୍ରଚଣ୍ଡ ନେତୃତ୍ୱ ସତ୍ୟବାଦୀ ବନବିଦ୍ୟାଳୟକୁ ଏକ ଆଦର୍ଶ ଅନୁଷ୍ଠାନରେ ପରିଣତ କରି ଦେଇଥିଲା ।

## ଉତ୍କଳ ସମ୍ମିଳନୀ ଓ ସତ୍ୟବାଦୀ ବନବିଦ୍ୟାଳୟ

କୁଳବୃଦ୍ଧ ମଧୁସୂଦନଙ୍କ ଭାଷାରେ ଉତ୍କଳ ସମ୍ମିଳନୀର ପ୍ରତିଷ୍ଠା ହୋଇଥିଲା ଉତ୍କଳରେ ଜାତୀୟ ଜୀବନର ପ୍ରତିଷ୍ଠା ପାଇଁ । —"ସମ୍ମିଳନୀ ଓ ଜାତିର ସମ୍ମିଳନ

(୧୧) ଉଦ୍ଧୃତାଂଶଟି ୯-୧୦-୧୯୭୪ ଦୈନିକ ସମାଜ ପୃ ୬ ଷ୍ଠାରୁ ଗ୍ରହଣ କରାଯାଇଛି ।

ନିମନ୍ତେ ସମସ୍ତ ଉତ୍କଳବାସୀଙ୍କ ହୃଦୟରେ ଜାତୀୟଜୀବନ ସଞ୍ଚାର କରିବା ନିମନ୍ତେ ସ୍ଥାପିତ ହୋଇଅଛି । ଏ ସମ୍ମିଳନୀ କୌଣସି ଏକ ସମ୍ପ୍ରଦାୟସ୍ଥ ବ୍ୟକ୍ତି-ମାନଙ୍କର ଉନ୍ନତି ସାଧନ ନିମନ୍ତେ ହୋଇନାହିଁ । ଯାହାଦ୍ୱାରା ସମସ୍ତ ଉତ୍କଳ-ବାସୀଙ୍କର ଉନ୍ନତି ହେବ ସେହିପ୍ରକାର ବିଷୟ ସବୁ ଆଲୋଚନା କରିବା ନିମନ୍ତେ ସମ୍ମିଳନୀର ସୃଷ୍ଟି । ଏ ରୂପ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ଜାତୀୟଜୀବନର ସଞ୍ଚାର ହୃଦୟରେ ଜାଗ୍ରତ ହେବା ଉଚିତ ।''

ଉତ୍କଳ ସମ୍ମିଳନୀର ନେତୃବୃନ୍ଦ ଅତ୍ୟନ୍ତ ଆଗ୍ରହର ସହିତ ସତ୍ୟବାଦୀ ବନବିଦ୍ୟାଳୟ କାର୍ଯ୍ୟାବଳୀ ଲକ୍ଷ୍ୟ କରୁଥିଲେ । ସେମାନଙ୍କର ହୃଦ୍‌ବୋଧ ହୋଇ-ଥିଲା ଯେ ବନବିଦ୍ୟାଳୟ ପରି ଅନୁଷ୍ଠାନ ଦେଶରେ ଜାତୀୟତା ମନ୍ତ୍ର ପ୍ରଚାର କରିବାରେ ଯଥେଷ୍ଟ ସାହାଯ୍ୟ କରିପାରିବେ । ୧୯୧୩ ଖ୍ରୀଷ୍ଟାବ୍ଦରେ ଦେଶପ୍ରାଣ ମଧୁସୂଦନଙ୍କ ସଭାପତିତ୍ୱରେ ପୁରୀଠାରେ ଉତ୍କଳ ସମ୍ମିଳନୀର ନବମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ ସତ୍ୟବାଦୀ ବନବିଦ୍ୟାଳୟ ବିଷୟରେ ସ୍ୱତନ୍ତ୍ର ପ୍ରସ୍ତାବ ଗ୍ରହଣ କରାଯାଇଥିଲା ଏବଂ ବରେଣ୍ୟ ନେତୃବୃନ୍ଦ ବନବିଦ୍ୟାଳୟ ସମ୍ପର୍କରେ ବହୁ ମୂଲ୍ୟବାନ ମନ୍ତବ୍ୟ ପ୍ରଦାନ କରିଥିଲେ । ନିଜେ ଉତ୍କଳମଣି ଗୋପବନ୍ଧୁ ସତ୍ୟବାଦୀ ବନବିଦ୍ୟାଳୟର ଆଭିମୁଖ୍ୟ ସମ୍ପର୍କରେ ଆଲୋକପାତ କରି କହିଥିଲେ—''ଆମ୍ଭେମାନେ ମନୁଷ୍ୟର ସେବା କରୁଅଛୁ । ମାତ୍ର ଏଥିରେ କି ଇଷ୍ଟ କି ଅନିଷ୍ଟ ଅଛି ସେଥିପ୍ରତି ଉଲେମାତ୍ର ଭ୍ରୂକ୍ଷେପ କରିନାହୁଁ । ଆମ୍ଭେମାନେ ବିଶ୍ୱାସ କରୁ ମାନବ ସେବାହିଁ ଭଗବାନଙ୍କ ସେବା ଏବଂ ଏହାହିଁ ପ୍ରତ୍ୟେକ ମାନବର କର୍ତ୍ତବ୍ୟ ।'' ଉତ୍କଳ ବ୍ୟାସକବି ଫକୀରମୋହନ ସେନାପତି ବନବିଦ୍ୟାଳୟ ପ୍ରସ୍ତାବ ବିଷୟରେ ଆଲୋଚନାରେ ଅଂଶ ଗ୍ରହଣକରି ଆଶା ପ୍ରକାଶ କରିଥିଲେ ଯେ ଏହା ଯଦି ପୁନାର ଫର୍ଗୁସନ କଲେଜ ପରି ହୁଏ, ତେବେ ଗୋଟିଏ ବିରାଟ ଜାତୀୟ ବସ୍ତୁ ଲାଭ ହୋଇପାରିବ । ତାଙ୍କ ମତରେ, ''ଓଡ଼ିଶାରେ ଅନେକ ସ୍କୁଲ ଅଛି । କିନ୍ତୁ ଏପରି ସ୍କୁଲ ଗୋଟିଏ ନାହିଁ । ଏଥିରେ ବିଦ୍ୟା ଓ ଚରିତ୍ର ଉଭୟର ଉନ୍ନତି ହୁଏ ।'' ବ୍ୟାସକବି ଫକୀରମୋହନ ପ୍ରସଙ୍ଗକ୍ରମେ ପଣ୍ଡିତ ନୀଳକଣ୍ଠ (ପ୍ରଧାନଶିକ୍ଷକ)ଙ୍କୁ ଏହି ସ୍କୁଲ ସମ୍ପର୍କରେ ପଚାରିବାରୁ ସେ କହିଥିଲେ—''ଆଧୁନିକ ଶିକ୍ଷା ଦ୍ୱାରା ଆମ୍ଭେମାନେ ଜାତୀୟତା ଓ ଗୁରୁଶିଷ୍ୟର ସମ୍ବନ୍ଧ ହରାଇଅଛେଁ, କିନ୍ତୁ ବର୍ତ୍ତମାନ ସତ୍ୟବାଦୀ ସ୍କୁଲ ଦେଖାଇଛି କି ପ୍ରକାର ଶିକ୍ଷା ବର୍ତ୍ତମାନ ଆମ୍ଭ-ମାନଙ୍କର ପ୍ରୟୋଜନ ।'' ପ୍ରସ୍ତାବ ସମ୍ପର୍କରେ ସଭାପତି ଆସନରୁ ମନ୍ତବ୍ୟ ପ୍ରକାଶ କରି କୁଳବୃଦ୍ଧ ମଧୁସୂଦନ ଏହି ଅନୁଷ୍ଠାନର କର୍ଣ୍ଣଧାର ପଣ୍ଡିତ ନୀଳକଣ୍ଠଙ୍କ ସମ୍ପର୍କରେ ଯାହା ଅଭିମତ ପ୍ରଦାନ କରିଥିଲେ ତାହା ଅତ୍ୟନ୍ତ ଉଲ୍ଲେଖ୍ୟ ଯୋଗ୍ୟ । ତାଙ୍କର ମତ ଥିଲା ଏହିପରି—''ବର୍ତ୍ତମାନ ଯେଉଁ ପ୍ରସ୍ତାବ ଉପସ୍ଥିତ ହୋଇଅଛି,'' ସେ

ସମ୍ବନ୍ଧରେ ମୁଁ କିଛି କହିବାକୁ ଇଚ୍ଛୁକ ଓ ଅନୁରୁଦ୍ଧ । ମୁଁ ନୀଳକଣ୍ଠଙ୍କୁ ଅନେକ ଦିନରୁ ଚିହ୍ନେ । ପୂର୍ବେ ମୋହର ତା ପ୍ରତି ଅନେକ ପ୍ରକାର ସନ୍ଦେହାତ୍ମକ ଧାରଣା ଥିଲା ଏବଂ ତା ବିଷୟରେ ମୋର ନାନାପ୍ରକାର ଆଶଙ୍କା ହୋଇଥିଲା । କିନ୍ତୁ ସୁଖର କଥା ସେ ସବୁ ବର୍ତ୍ତମାନ ସମ୍ପୂର୍ଣ୍ଣରୂପେ ମୋ ମନରୁ ଘୁଞ୍ଚିଅଛି । ଦୁଇରାତି ତାଙ୍କ ସହିତ ୭ଟାରୁ ୮ ପର୍ଯ୍ୟନ୍ତ କଥୋପକଥନ କରି ମୋର ଭ୍ରାନ୍ତି ଚାଲିଯାଇଅଛି । ତାଙ୍କ ସହିତ ମୋର ସେହି କଥୋପକଥନରୁ ମୁଁ ତାଙ୍କ ବିଷୟରେ ବହୁ ଉଚ୍ଚଭାବ ମନରେ ପୋଷିଅଛି । ଏମାନଙ୍କ ଦ୍ୱାରା ବାସ୍ତବିକ ଜାତୀୟ ଉନ୍ନତି ସାଧିତ ହେବ ଏଥିରେ ସନ୍ଦେହ ନାହିଁ ।"

ମଧୁବାବୁ ପୁନର୍ବାର କହିଥିଲେ-- "ମୁଁ ସେମାନଙ୍କର କାର୍ଯ୍ୟରେ ସାହାଯ୍ୟ କରିଥାଏଁ ଏବଂ ବରାବର କରିବି । ସେମାନେ ମନୁଷ୍ୟ ଗଢ଼ିବା ପାଇଁ କୃତ ସଂକଳ୍ପ । ଜଗନ୍ନାଥ ମୂର୍ତ୍ତି ସମସ୍ତେ ଗଢ଼ି ପାରିବେ ; କିନ୍ତୁ ତା ଭିତରେ ଯେଉଁ ବ୍ରହ୍ମ ଅଛି ତାହା କେହି ଗଢ଼ି ପାରନ୍ତି ନାହିଁ । × × ଗୋପବନ୍ଧୁ, ନୀଳକଣ୍ଠ ନିଜ ଗୋଡ଼ରେ ଠିଆ ହୋଇଅଛନ୍ତି । ସେମାନଙ୍କ କାର୍ଯ୍ୟ ଦେଖି ଦେଶବାସୀ ତଥା ଗଭର୍ଣ୍ମେଣ୍ଟ ଯଥା ସମୟରେ ସେମାନଙ୍କୁ ସାହାଯ୍ୟ କରିବାକୁ ଅଗ୍ରସର ହେବେ, ସନ୍ଦେହ ନାହିଁ । ସେମାନେ ଯେ ଭାବରେ କାର୍ଯ୍ୟ ଆରମ୍ଭ କରିଅଛନ୍ତି ଏବଂ ନାନାବିଧ ବିଘ୍ନ ସତ୍ତ୍ୱେ ଅବିଚଳିତ ଚିତ୍ତରେ ଉକ୍ତ କାର୍ଯ୍ୟରେ ଲାଗି ରହିଅଛନ୍ତି, ସେଥିରେ ସେମାନେ ଯେ ସମସ୍ତଙ୍କର ପ୍ରଶଂସା ଭାଜନ, ଏହା ବୋଲିବା ବାହୁଲ୍ୟ ।"

ଦେଶ ଓ ଜାତି ପକ୍ଷରେ ଏହା ଅତ୍ୟନ୍ତ ଦୁର୍ଭାଗ୍ୟର ବିଷୟ ଯେ ସତ୍ୟବାଦୀ ବନବିଦ୍ୟାଳୟ ଅଧିକ କାଳ ତାର ସ୍ଥିତି ରକ୍ଷା କରି ପାରିଲା ନାହିଁ । ୧୯୨୦ ସାଲରେ କଲିକତାଠାରେ ଭାରତୀୟ ଜାତୀୟକଂଗ୍ରେସର ଏକ ସ୍ୱତନ୍ତ୍ର ଅଧିବେଶନରେ ମହାତ୍ମାଗାନ୍ଧୀ ପ୍ରସ୍ତାବ କଲେ ଯେ ସ୍ୱରାଜ୍ୟ ଲାଭପାଇଁ ଇଂରେଜ ସରକାରଙ୍କ ସହ ଅସହଯୋଗ କରିବାକୁ ହେବ । ଗୋପବନ୍ଧୁ, ନୀଳକଣ୍ଠ ସତ୍ୟବାଦୀ ବନବିଦ୍ୟାଳୟକୁ ଜାତୀୟ ବିଦ୍ୟାଳୟରେ ପରିଣତ କରି ଏହାକୁ ସ୍ୱାଧୀନତା ଆନ୍ଦୋଳନର କେନ୍ଦ୍ର କରିବାକୁ ସ୍ଥିର କଲେ । ବନବିଦ୍ୟାଳୟ ଅସ୍ତମିତ ହୋଇଗଲା । ଅବଶ୍ୟ ଗୋପବନ୍ଧୁ ଲୋକସେବକ ମଣ୍ଡଳରେ ସଭ୍ୟଭାବରେ ଯୋଗଦେଲା ପରେ ଗୁଜରାଟ ବିଦ୍ୟାପୀଠ ଆଦର୍ଶରେ ସତ୍ୟବାଦୀ ବନବିଦ୍ୟାଳୟକୁ ପୁନର୍ଗଠନ କରିବାପାଇଁ କଳ୍ପନା କରିଥିଲେ । ମାତ୍ର ସ୍ୱରାଜ୍ୟ ଆନ୍ଦୋଳନର ମହା ସ୍ରୋତରେ ନିଷ୍ଠାପର କର୍ମୀମାନେ ବିଚ୍ଛିନ୍ନ ହୋଇଗଲେ । ୧୯୨୭ ମସିହା ଜାନୁୟାରୀ ୧୯ ତାରିଖ ଦିନ ଅମୃତଲାଲଭାଇ ଠକ୍କର ଗୋପବନ୍ଧୁଙ୍କୁ ଯେଉଁ

ପତ୍ର ଲେଖିଥିଲେ ସେଥିରେ ସତ୍ୟବାଦୀ ବନବିଦ୍ୟାଳୟ ବିଷୟରେ ଏହିପରି ପ୍ରତିକ୍ରିୟା ପ୍ରକାଶ ପାଇଥିଲା—"Ah, that once flourishing School, that nursery of public workers I will have now to shedtears at the sight of it."

ଗୋପବନ୍ଧୁ ଅକାଳରେ ମୃତ୍ୟୁବରଣ କଲେ । ପଣ୍ଡିତ ନୀଳକଣ୍ଠ ସ୍ୱରାଜ୍ୟ ଆନ୍ଦୋଳନ ଏବଂ ଦେଶସେବାରେ ମୁଖ୍ୟଭୂମିକା ଗ୍ରହଣ କରିବାପାଇଁ ଅଭିପ୍ରେତ ହେଲେ । ସ୍ୱର୍ଣ୍ଣାକ୍ଷର ଲିପିବଦ୍ଧ କରି ବନବିଦ୍ୟାଳୟ କାଳବକ୍ଷରେ ବିଲୀନ ହୋଇଗଲା ।



# ତୁଳସୀ ଦୁଇ ପତ୍ରରୁ ବାସେ

ସେଦିନ ଥିଲା ଗହ୍ମାପୂର୍ଣ୍ଣିମା । ଭାଦ୍ରବ ମାସର ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ତିଥିରେ ପୁରୀଜିଲ୍ଲା ସତ୍ୟବାଦୀ ନିକଟସ୍ଥ ଶ୍ରୀରାମଚନ୍ଦ୍ରପୁର ଶାସନରେ ଆନନ୍ଦଦାସଙ୍କ ଘରେ ଆନନ୍ଦ ଉଲ୍ଲାସର ସୀମା ନଥିଲା । ଆନନ୍ଦ ଦାସଙ୍କ ସ୍ତ୍ରୀ ହୀରାଦେବୀଙ୍କ ଅଷ୍ଟମ ଗର୍ଭରେ ପୁଅଟିଏ ଜନ୍ମ ହେଲା । ଏହି ପୁଅର ନାମକରଣ କରାଯାଇଥିଲା ନୀଳକଣ୍ଠ ।

ଥରକୁ ଥର ସାତଟି କନ୍ୟା ସନ୍ତାନ ଜନ୍ମ ହେବାରୁ ଆନନ୍ଦ ଦାସଙ୍କ ପରିବାରରେ ଆଦୌ ସୁଖ ନଥାଏ । ପୁରୀ ନିକଟବର୍ତ୍ତୀ ବାଲିଆଗ୍ରାମରେ ଆନନ୍ଦ ଦାସ ନୀଳକଣ୍ଠ ମହାଦେବଙ୍କର ଶରଣାପନ୍ନ ହେଲେ । ତାଙ୍କ ପାଖରେ ଅଧିଆ ପଡ଼ି ପୁତ୍ର ସନ୍ତାନଟିଏ କାମନା କଲେ । ଆଶୁତୋଷ ତାଙ୍କର ଦୁଃଖ ଶୁଣିଲେ । ତେଣୁ ଆନନ୍ଦ ଦାସେ ଅତ୍ୟନ୍ତ ସନ୍ତୋଷରେ ଆରାଧ୍ୟ ଠାକୁରଙ୍କ ନାମାନୁସାରେ ପୁତ୍ରର ନାମ ରଖିଲେ ନୀଳକଣ୍ଠ । ଏହି ପୁତ୍ର ହେଲେ ସ୍ୱନାମ ଧନ୍ୟ ନୀଳକଣ୍ଠ ଦାସ ।

ସେ କାଳର ଅନ୍ୟ ପିଲାମାନଙ୍କ ପରି ନୀଳକଣ୍ଠ ମଧ୍ୟ ଗ୍ରାମ ଚାଟଶାଳୀରେ ପ୍ରଥମେ ବିଦ୍ୟା ଅଧ୍ୟୟନ କରିଥିଲେ । ପରେ ପରେ ସେ ଅଧ୍ୟୟନ କଲେ ଗ୍ରାମର ମିଡ଼ିଲ ଭର୍ଣ୍ଣାକୁଲେର ସ୍କୁଲରେ । ସ୍କୁଲର ପାଠ ଶେଷ ହୋଇଥିଲେ ମଧ୍ୟ ବୃତ୍ତି ପାଇବା ପାଇଁ ଶିକ୍ଷକମାନେ ତାଙ୍କୁ ଅଧିକ କାଳ ଏଇଠି ଅଟକାଇ ରଖିଲେ । ସତକୁ ସତ ୧୮୯୯ ଖ୍ରୀଷ୍ଟାବ୍ଦରେ ବାଳକ ନୀଳକଣ୍ଠ ଛାତ୍ର ବୃତ୍ତି ପରୀକ୍ଷାରେ ସମଗ୍ର ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କଲେ । ବାଲ୍ୟ କାଳରୁ ନୀଳକଣ୍ଠଙ୍କର ପାଠ ପଢିବାର ଆଗ୍ରହ ଅତ୍ୟନ୍ତ ପ୍ରବଳ ଥିଲା । ସେ ପୁରୀ ଯାଇ ସେଠାରୁ ପିତାଙ୍କୁ ଚିଠି ଲେଖିଥିଲେ ପୁରୀରେ ରହି ସେ ପାଠ ପଢ଼ିବେ । ବୃତ୍ତି ମିଳୁ କି ନ ମିଳୁ । ସେଥିପାଇଁ ନିନା ଚାଉଳ ଟଙ୍କା ପଠାଇବା ଦରକାର । (୧)

ଏହି ପାଠପଢ଼ିବାର ସ୍ପୃହା ତାଙ୍କର ଆଜୀବନ ରହିଥିଲା । ଏହା ଏକପ୍ରକାର ନିଶାଦ୍ରବ୍ୟ ପରି ତାଙ୍କୁ ଘାରି କରି ରହିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଏ ସମ୍ପର୍କରେ ତାଙ୍କର ସୁଯୋଗ୍ୟ ପୁତ୍ର ଡାକ୍ତର ବିକ୍ରମ ଦାସ ନିଜର "ପିତୃସ୍ମୃତି"

---

(୧) ମନସ୍ୱୀ ନୀଳକଣ୍ଠ—ସତ୍ୟନାରାୟଣ ମହାପାତ୍ର-୧୯୭୯, ୭ ପୃଷ୍ଠା

ପ୍ରବନ୍ଧରେ କେତୋଟି ମଉଜିଆ କଥା କହିଅଛନ୍ତି । (୧୩) ପ୍ରକୃତ ପକ୍ଷେ ତାଙ୍କୁ ଯେ ନିକଟରୁ ଦେଖିଛି ସେ ଜାଣେ, ନୀଳକଣ୍ଠ କିପରି ପଢ଼ା ପାଗଳ ଥିଲେ । ଆଲୋଚନା

---

(୧୩) ସିନେମା ନାହିଁ, ଥିଏଟର ନାହିଁ; ଆଗେ ପାନ ଖାଉଥିଲେ, ତା ବି ଛାଡ଼ି ଦେଇଥିଲେ, କେବଳ ଶେଷ ପର୍ଯ୍ୟନ୍ତ ଜୀବନରେ ଏକମାତ୍ର ନିଶା ଥିଲା ପାଠ ପଢ଼ିବା । ସ୍ତୂପ ସ୍ତୂପ ବହି ଭିତରେ ଜୀବନର ଶେଷ କେତେ ବର୍ଷ ପର୍ଯ୍ୟନ୍ତ ରାତି ୩, ୪ଟା ପର୍ଯ୍ୟନ୍ତ ପଢ଼ିବା ଅଭ୍ୟାସ । କେବେ କେବେ ପଢ଼ୁ ପଢ଼ୁ କୁଆ ବୋବାଏ; ରାତିରେ କେତେଥର ଆମେ ଆଲୁଅ ଲିଭେଇ ଦେଉ । ସେ କହନ୍ତି, ପିଲେ ଆଲୁଅରେ ନିଦ ଲାଗୁ ନାହିଁକି ? ହଉ ଶୁଅ । "କିନ୍ତୁ ଆମେ ଶୋଇଗଲା ପରେ ପୁଣି ଆଲୁଅ ଜଳି ଉଠେ । ସେ ପଢ଼ୁଥାଆନ୍ତି । ଥରେ ଭୁବନେଶ୍ୱରରେ ସନ୍ଧ୍ୟାରୁ ଇଲେକ୍‌ଟ୍ରିକ ଗୋଳମାଳ ହୋଇ ଆଲୁଅ ଲିଭିଗଲା । ସେ ବ୍ୟସ୍ତ ହୋଇ **କହି** ପକାଇଲେ—ଆରେ ଏ କି ସରକାର ହୋଇଛି, ଇଏ ମତେ ମୂର୍ଖ କରିଦେବ । ସେଥିରେ ତାଙ୍କ ନାତି ନାତୁଣୀମାନେ ହସି ଉଠିଲେ । ଆସେମ୍ବ୍ଲି ମେମ୍ବର ଥିଲାବେଳେ ଥରେ ତାଙ୍କୁ କଲେରା ଭଳି ବାସିଲାରି ଡିସେଣ୍ଟ୍ରି ହେଲା । ଡାକ୍ତର ଆସି ପୂର୍ଣ୍ଣ ବିଶ୍ରାମ ନେବାକୁ କହିଗଲେ । ଗୋଦାବରୀଶ ବାବୁ ଓ ଡକ୍ଟର ପ୍ରାଣକୃଷ୍ଣ ପରିଜା ମଧ୍ୟ ସେ ନ ପଢ଼ି ଶୋଇ ପଡ଼ିବାକୁ ଅନୁରୋଧ କରିଗଲେ ; କିନ୍ତୁ ସେ କାହା କଥା ନଶୁଣି ଆଲୁଅ ଲଗାଇ ପଢ଼ିଲେ । କହିଲେ, "ଆରେ ମତେ ପରା ଜର । ଆସିଗଲା ; ମୋର ହଇଜା ଭଲ ହୋଇଗଲା । ପାଖରେ ପୀତବାସ ପଣ୍ଡା ଥିଲେ । ସେ ବହୁତ ବୁଝାଇ ଯେତେଥର ଆଲୁଅ ଲିଭାଇଲେ ପ୍ରତିଥର ପ୍ରାୟ ୨।୪ ମିନିଟ୍ ପରେ ସେ ପୁଣି ସୁଇଚ ଟିପି ଆଲୁଅ ଲଗାଇ ପଢ଼ିଲେ । ଶେଷରେ ପୀତବାସ ପଣ୍ଡା ଯାଇ ମେନ୍‌ସୁଇଚ ଲିଭାଇଦେଲେ । ନନା ତାଙ୍କୁ ଆଉ କିଛି ନକହି ସତରେ ଫୋନ ଉଠାଇଲା ପରି କାନରେ ହାତଦେଇ ପାଟି କଲେ—ପୁଲିସ, ପୁଲିସ, ବେଗ ଆସ, ମୋ ଘରେ ଡକାୟତ ପଶିଚି । ତା ନା ପୀତବାସ ପଣ୍ଡା । ଘର ଦାଣ୍ଡ ମୁକୁନ୍ଦପୁର, ଜିଲା ପୁରୀ, ସେ ମୋର ଯଥା ସର୍ବସ୍ୱ ନେଇଗଲା । ମୋତେ ଅନ୍ଧ କରିଦେଲା, ମତେ ଦୁନିଆ ଅନ୍ଧାର ଦିଶୁଛି । ତା ନାଁରେ ଇତଲା ଦିଅ ସେ ମୋ ଆଲୁଅ ନେଇ ଯାଇଚି । ତାପରେ ଘର ହସହେଲା । ବାଧ୍ୟ ହୋଇ ପଣ୍ଡାଏ ଆଲୁଅ ଫେରାଇ ଦେଲେ । ସେ ପୁଣି ରାତିଯାକ ପଢ଼ିଲେ । "(ନୀଳକଣ୍ଠଙ୍କ ସ୍ମରଣିକା—ପୂଜ୍ୟପୂଜା ସମ୍ପାଦ—୧୯୬୯—

ପୃ ୧୧୫—୧୧୬)

ପ୍ରସଙ୍ଗରେ ସେ ଅନେକ ଥର କହିବାର ଶୁଣାଯାଇଛି—ଏହି ଭୌତିକ ସଂସାରର ଅର୍ଜିତ ସମ୍ପଦସବୁ ଏଇଠି ରହିଯିବ । କିଛି ମନୁଷ୍ୟ ସାଙ୍ଗରେ ଆଣି ନଥିଲା । କିଛି ମଧ୍ୟ ସାଙ୍ଗରେ ନେଇଯିବ ନାହିଁ । ମାତ୍ର ସେ ଯାହା ଅଧ୍ୟୟନ କରୁଛି, ତାହା ସଂସ୍କାର ଓ ସ୍ମୃତିର ପ୍ରଲେପ ବହନକରି ପରଜୀବନକୁ ମଧ୍ୟ ଆଦରର ପାଥେୟ ହୋଇ ରହିବ ।

ବୃତ୍ତି ମିଳିଯିବାରୁ ନୀଳକଣ୍ଠ ଇଂରେଜୀ ଶିକ୍ଷା ଲାଭ କରିବାପାଇଁ ପୁରୀ ଜିଲ୍ଲାସ୍କୁଲରେ ଭର୍ତ୍ତି ହେଲେ । ସେ ଥିଲେ ଅତ୍ୟନ୍ତ ବିଚକ୍ଷଣ ଛାତ୍ର । ନିଷ୍ଠାର ସହିତ ନିଜର ଛାତ୍ରଜୀବନ ଅତିବାହିତ କରି ସେ ଶିକ୍ଷକସମାଜର ଅତ୍ୟନ୍ତ ଶ୍ରଦ୍ଧାଭାଜନ ହୋଇଥିଲେ । ପଛକୁ ଫେରିଚାହିଁବା ତାଙ୍କ ଜାତକରେ ନ ଥିଲା । ପରାଭବ ମନୋବୃତ୍ତିଠାରୁ ସେ ସବୁବେଳେ ଦୂରେଇ ରହୁଥିଲେ । ତେଣୁ ଛାତ୍ରଜୀବନରେ ସଫଳତା ତାଙ୍କ ପଛେପଛେ ଲାଗି ରହିଥିଲା । ନିଜର ଛାତ୍ରଜୀବନ ସମ୍ପର୍କରେ ଆତ୍ମଚରିତରେ କେତେକ ମଧୁମୟ ସ୍ମୃତିର ଉଲ୍ଲେଖ କରିଥିବା ଜଣାଯାଏ । ଛାତ୍ର-ଜୀବନରେ ତାଙ୍କର ହସ୍ତାକ୍ଷର ଭଲ ହେଉ ନଥିବାରୁ ସ୍ୱନାମଧନ୍ୟ ପ୍ରଧାନଶିକ୍ଷକ ଚନ୍ଦ୍ରମୋହନ ମହାରଣା ତାଙ୍କୁ କେତେକ ଉପଦେଶ ଦେଇଥିଲେ । ଆନ୍ତରିକ ଭାବରେ ସାଧନା କରି ସେ ଅଳ୍ପକାଳ ମଧ୍ୟରେ ନିଜର ହସ୍ତାକ୍ଷରର ରୂପ ବଦଳାଇ ଦେଇଥିଲେ । (୧୪) କେବଳ ସେତିକି ନୁହେଁ; ପୁରୀ ଜିଲ୍ଲା ସ୍କୁଲରେ ନୀଳକଣ୍ଠଙ୍କ ହାତରେ ଭଲ ତ୍ରୁଟି ହେଉନଥିଲା । ସେ ଇତିହାସର ସନ ତାରିଖ ମନେରଖି ପାରୁ ନଥିଲେ । ଇତିହାସଶିକ୍ଷକ "ତୋ ହାତେ ଇତିହାସ ହେବ ନାହିଁ" ବୋଲି କହିବାରୁ ତାଙ୍କ ମନକୁ କଥାଟି ଭାରି ଲାଗିଥିଲା । ପିଲାଦିନ ପଢ଼ାରେ ସେ ବଡ଼ ଜିଦ୍‌ଖୋର ଥିଲେ । ସେଇ ପିଲାଦିନୁ ତାଙ୍କର ଗୀତା ପଢ଼ିବା

(୧୪) "ତହିଁ ଆରଦିନ ମୁଁ ସଙ୍କଳ୍ପ କରି ହସ୍ତାକ୍ଷର ବଦଳାଇ ବସିଲି—ଚନ୍ଦ୍ରମୋହନ ବାବୁଙ୍କ ହସ୍ତାକ୍ଷରକୁ ଆଦର୍ଶ କରି । ସେ ମୋତେ ବୁଝାଇ ଥିଲେ, ବ୍ୟବହାରରେ ମିତବ୍ୟୟିତା—ଅକ୍ଷରରେ ମଧ୍ୟ ସେଇଆ । ଲାଞ୍ଜମୁଣ୍ଡ, ମୋଡ଼ାଗାରରସବୁ ଦରକାର ନାହିଁ । ଅକ୍ଷର ସ୍ପଷ୍ଟ କରିବାପାଇଁ ଗାରର ଯେତିକି ପ୍ରକାର ଓ ପରିମାଣ ଲୋଡ଼ା, ସେତିକି ହେଲେ ହେଲା । ଏହାହିଁ ଅକ୍ଷରଭଲ କରିବାର ସୂତ୍ର । ଏକ ସପ୍ତାହ ଭିତରେ ମୋର ଅକ୍ଷର ବଦଳିଗଲା । ପରେ ସତ୍ୟବାଦୀ ସ୍କୁଲରେ ପିଲାଙ୍କ ଅକ୍ଷରଲେଖା ଶିଖାଇଲାବେଳେ ଚନ୍ଦ୍ରମୋହନ ବାବୁଙ୍କ ତତ୍ତ୍ୱକଥା ଗୁଡ଼ିକ ମଧ୍ୟ ମୋର ବରାବର ମନେଥିଲା ।" (ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମଖଣ୍ଡ—ଆତ୍ମଜୀବନୀ—ପୃ ୧୭—୧୯୬୩)

ଅଭ୍ୟାସ ରହିଥିଲା । ସେଇଥିରୁ ସେ ନିଜର କର୍ତ୍ତବ୍ୟ କରିବାପାଇଁ ବଦ୍ଧପରିକର ହୋଇଥିଲେ ଏବଂ ସଫଳତା ଅର୍ଜନ କରିଥିଲେ । (୧୫)

ସ୍କୁଲ୍ ବୋର୍ଡ଼ିଂରେ ଥିଲାବେଳେ ସେ ନିଷ୍ଠାପର ଭାବରେ ଜୀବନ ଯାପନ କରୁଥିଲେ ।ତାଙ୍କର ଶୃଙ୍ଖଳାଜ୍ଞାନ ଅତ୍ୟନ୍ତ ଉଚ୍ଚକୋଟୀର ଥିଲା । ଏହି ପିଲା ବୟସରୁ ସେ ସଂସ୍କୃତ ବ୍ୟାକରଣ ଆୟତ୍ତ କରି ନିଜେ ନିଜେ ଗୀତା, ଉପନିଷଦ କାଳିଦାସଙ୍କ କାବ୍ୟ ପ୍ରଭୃତି ଅଧ୍ୟୟନ କରିଥିଲେ । ସେ ଥରେ ଯାହା ପାଠ କରୁଥିଲେ ତାହା ତାଙ୍କର ମନେ ରହିଯାଉଥିଲା'' ଏପରି ପ୍ରଖର ସ୍ମରଣଶକ୍ତି ଏବଂ ଶୃଙ୍ଖଳାଜ୍ଞାନ ପାଇଁ ସେ ଶିକ୍ଷକମାନଙ୍କର ଅତ୍ୟନ୍ତ ପ୍ରିୟଭାଜନ ହୋଇଥିଲେ । ବିଶେଷତଃ ସେକାଳର ସ୍ୱନାମଧନ୍ୟ ପ୍ରଧାନଶିକ୍ଷକ ଓ ଶିକ୍ଷାବିତ୍ ଚନ୍ଦ୍ରମୋହନ ମହାରଣାଙ୍କର ତାଙ୍କ ଉପରେ ଗଭୀର ଆସ୍ଥା ଥିଲା । ସେ ଏପରି କଠୋର ପ୍ରଶାସକ ଥିଲେ ଯେ ସରକାରୀ ଶିକ୍ଷକମାନେ ସୁଦ୍ଧା ଚନ୍ଦ୍ରମୋହନ ବାବୁଙ୍କୁ ଅତ୍ୟନ୍ତ ଭୟ କରୁଥିଲେ ଏବଂ କୌଣସି କଥା ଭରସି କରି କହିପାରୁ ନଥିଲେ । ମାତ୍ର ଛାତ୍ର ନୀଳକଣ୍ଠଙ୍କର ତାଙ୍କ ନିକଟରେ ଅବାଧ ପ୍ରବେଶ ଥିଲା । ସେ ନିଦରୁ ଉଠି ନୀଳକଣ୍ଠଙ୍କୁ କଠିନ ଅଙ୍କଗୁଡ଼ିକର ସୂତ୍ର ବତାଇ ଦେଉଥିଲେ । ଯେ କୌଣସି ସମୟରେ ନୀଳକଣ୍ଠଙ୍କୁ ପାଠ ବତାଇ ଦେବାରେ ପ୍ରଧାନଶିକ୍ଷକଙ୍କର ଆଦୌ କୁଣ୍ଠା ରହିନଥିଲା । ହଷ୍ଟେଲର ଶୃଙ୍ଖଳାରକ୍ଷା ବିଷୟରେ ପ୍ରଧାନଶିକ୍ଷକ ଚନ୍ଦ୍ରମୋହନ ଛାତ୍ର ନୀଳକଣ୍ଠଙ୍କ ସହିତ ଆଲୋଚନା କରିବାକୁ ପସନ୍ଦ କରୁଥିଲେ । (୧୬) ଏପରିକି ଥରେ ସ୍କୁଲର ପୁରସ୍କାର-ବିତରଣୋତ୍ସବ ଉପଲକ୍ଷେ ଶିକ୍ଷକମାନେ ଦୁଇଜଣ

---

(୧୫) ''ପଢ଼ାଭିତରେ ଇତିହାସ ଅଛି । ମୋ ହାତେ ହେବନାହିଁ କହିଲେ କ'ଣ ହେବ । ମୋତେ ପଢ଼ିବାକୁ ହେବ; ମନେ ରଖିବାକୁ ହେବ । ଏହା ମୋର କର୍ତ୍ତବ୍ୟ । ସେହିଦିନଠାରୁ ମନେ ଅଛି, ଆମର ପଢ଼ା ହେଉଥିବା ଅଧରଚନ୍ଦ୍ରମୁଖରଜୀଂଙ୍କ ଭାରତ ଇତିହାସ (History of India)ର ପ୍ରତ୍ୟେକ ଘଟଣା ସନ ତାରିଖ ସହିତ ମୁଁ ବାରଂବାର ପଢ଼ି ମନେ ରଖିଥିଲି । ତା' ମୋର ଏପରି ଅଭ୍ୟାସ ଅଛି ଯେ ଏବେ ମଧ୍ୟ ଇତିହାସର ଘଟଣା ଓ ସନତାରିଖ ମୋର ଖୁବ୍ ମନେ ରହେ । ଏବେ ହେଇ ନିଷ୍ଠାରେ ଡ୍ରଇଁରେ ଲାଗିଗଲି । ପ୍ରତି ଶନିବାର ଦେଢ଼ଟାରେ ସ୍କୁଲ୍ ଛୁଟି ହେଲାପରେ ମୁଁ ସନ୍ଧ୍ୟା ଛଅଟାଯାଏ ଡ୍ରଇଁ କରେ । ଶେଷରେ ପରୀକ୍ଷାରେ ଡ୍ରଇଁ ପାଇଁ ମୁଁ ତାରି ଚିହ୍ନ ପାଇଥିଲି ।''

(ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମ ଖଣ୍ଡ—୧୯୬୩—ଆତ୍ମଜୀବନୀ ପୃ-୨୧-୨୨)

(୧୬) ''ଯଥାର୍ଥରେ ତାଙ୍କ ପରି (ଚନ୍ଦ୍ରମୋହନ ମହାରଣା) ଉଦାରଚେତା ଶିଶୁପ୍ରାଣ ଶିକ୍ଷକ ମୁଁ ବଡ଼ କମ୍ ଦେଖିଛି । ମୋତେ ସେ ଅତ୍ୟନ୍ତ

ପିଲାଙ୍କୁ ସତ୍‌ସ୍ୱଭାବ ପାଇଁ ପୁରସ୍କାର ଦେବେ ବୋଲି ନିଷ୍ପତ୍ତି କରି ସାରିଥିଲେ । ମାତ୍ର ଛାତ୍ର ନୀଳକଣ୍ଠ କିଣିକୋଠରେ ପ୍ରଧାନଶିକ୍ଷକଙ୍କ ଆଗରେ ସେହି ନିଷ୍ପତ୍ତି ବିରୁଦ୍ଧରେ ମତପ୍ରକାଶ କରିବାରୁ ଚନ୍ଦ୍ରମୋହନବାବୁ ପୁରସ୍କାର ଦେବା ବନ୍ଦ କରିଦେଲେ । ନୈତିକ ନିଷ୍ଠା ପ୍ରତି ଅନୁରକ୍ତି ନୀଳକଣ୍ଠଙ୍କ ଜୀବନରେ ଏପରି ପ୍ରତିଫଳିତ ହୋଇଥିଲା ଯେ ସେ ନିଜେ ସତ୍ୟବାଦୀ ବନବିଦ୍ୟାଳୟର ପ୍ରଧାନଶିକ୍ଷକ ଦାୟିତ୍ୱ ଗ୍ରହଣ କରି ନିଜର ପ୍ରିୟଛାତ୍ରମାନଙ୍କୁ ସେହି ଆଦର୍ଶରେ ପରିଚାଳିତ ହେବାପାଇଁ ବାରମ୍ବାର ସ୍ମରଣ କରାଇ ଦେଉଥିଲେ । ଛାତ୍ରମାନଙ୍କର ଚରିତ୍ରଗଠନ ଦିଗରେ ଶିକ୍ଷକମାନେ ଅଧିକ ଧ୍ୟାନ ଦେଉଥିଲେ । ସେହି ସ୍କୁଲରେ ଶନିବାର ସନ୍ଧ୍ୟାରେ 'ବାଳ-ସମ୍ମିଳନ' ହୁଏ । ଏହି ସମ୍ମିଳନରେ ଶିକ୍ଷକଗଣ ନାନା ନୀତିଗର୍ଭିକ ବିଷୟ ଉପରେ ଆଲୋଚନା କରି ପିଲାମାନଙ୍କୁ ଉପଦେଶ ଦେବାର ଦେଖାଯାଇଥାଏ । ଏହି ବିଦ୍ୟାଳୟର ପୂର୍ବତନ ଛାତ୍ର ସୁଲେଖକ ଏବଂ ଶିକ୍ଷାବିତ୍ ସ୍ୱର୍ଗତ ଚିନ୍ତାମଣି ଦାସ "ସତ୍ୟବାଦୀ ବିଦ୍ୟାଳୟରେ ଚରିତ୍ରଚର୍ଚ୍ଚା" ପ୍ରବନ୍ଧରେ କେତେକ ସ୍ମୃତି-ଚାରଣ କରିଛନ୍ତି । ଏହି ବାଳ-ସମ୍ମେଳନରେ ଥରେ ପଣ୍ଡିତ ନୀଳକଣ୍ଠ 'ଚରିତ୍ରହିଁ ପରଂ ବଳଂ' ଶୀର୍ଷକ ବିଷୟବସ୍ତୁ ଉପରେ ଏକ ପାଣ୍ଡିତ୍ୟପୂର୍ଣ୍ଣ ପ୍ରାଞ୍ଜଳ ନୀତିଗର୍ଭିକ ବକ୍ତୃତା ପ୍ରଦାନ କରିଥିଲେ । ସେ ପ୍ରସଙ୍ଗକ୍ରମେ କହିଥିଲେ—

"ଏହି ଚରିତ୍ରହିଁ ମାନବର ମାନବତ୍ୱ ଓ ମହତ୍ତ୍ୱ, ନିଜର ନିଜତ୍ୱ ଓ ବ୍ୟକ୍ତିତ୍ୱ । ମାନବ ମଧ୍ୟରେ ଏହା ମହାଶକ୍ତି । ସେ ଚରିତ୍ର ମାନବର ନିଜସ୍ୱ । ସେଥିରେ ଅନ୍ୟର ଦାବୀ ବା ଅଧିକାର ନାହିଁ । ତୁମ୍ଭର ଆଚରଣ ଲୋକେ ସମାଲୋଚନା କରନ୍ତି, କିନ୍ତୁ ଚରିତ୍ର ତୁମ ଛଡ଼ା ଆଉ କେହି ଜାଣନ୍ତି ନାହିଁ । ଚରିତ୍ରର ଆଧାର ହେଲା ଇଚ୍ଛା । ତୁମ ଇଚ୍ଛା ତୁମ୍ଭର । ତାହା କେବଳ ତୁମ୍ଭେ ଜାଣ, ଆଉ ବିଧାତା ଜାଣନ୍ତି । ସେଥିପାଇଁ ତୁମ୍ଭେ କେବଳ ତୁମ୍ଭ ପାଖେ ଓ ଈଶ୍ୱରଙ୍କ ପାଖେ ଦାୟୀ । ସେ ଇଚ୍ଛାର ସଂଯମ ପାଇଁ ଭଗବାନ ତୁମ୍ଭଙ୍କୁ ବୁଦ୍ଧି ଓ ବଳ

---

ବିଶ୍ୱାସ କରୁଥିଲେ । ଆସିବାର କିଛିଦିନ ପରେ ମୋ ଉପରେ ବୋର୍ଡ଼ିଂର ସମସ୍ତ ଭାର ଛାଡ଼ିଦେଇ ଏକପ୍ରକାରେ ନିଶ୍ଚିନ୍ତ ହୋଇଥିଲେ । ପିଲାଙ୍କର ବ୍ରହ୍ମଚର୍ଯ୍ୟଗତ ଚରିତ୍ରପାଇଁ ତାଙ୍କର ବଡ଼ ତୀକ୍ଷ୍ଣ ଦୃଷ୍ଟି ଥିଲା । ସେଥିପାଇଁ ସର୍ବଦା ସେ ମୋ ସଙ୍ଗେ ବିଚାର ପରାମର୍ଶ କରି ଯାହା ଦରକାର ତା କରୁଥିଲେ । ମୁଁ ଶେଷରେ ଯେତେବେଳେ ବିଚାରବିଛ ପରୀକ୍ଷା ପରେ ପୁରୀଜିଲ୍ଲା ସ୍କୁଲ ଛାଡ଼ିଲି, ସେତେବେଳେ ସେ କହିଥିଲେ 'ନୀଳକଣ୍ଠ ଚାଲିଗଲେ ହଷ୍ଟେଲ କାହା ଜିମା ରହିବ ।"

(ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମଖଣ୍ଡ—୧୯୬୩, ଆତ୍ମଜୀବନୀ-ପୃ ୨୬)

ଦେଇଛନ୍ତି । ତୁମ୍ଭେ ଅତନ୍ଦ୍ରିତ ଆଗ୍ରହ ଓ ପରିଶ୍ରମରେ ସେ ଇଚ୍ଛା ସଂଯତ କରି ଶିଖିବ । ତୁମ୍ଭେ ଏହା କରିପାରିବ । ମାତ୍ର ନ କଲେ ଆଉ କେହି କରିଦେବେ ନାହିଁ ।"

ପ୍ରସଙ୍ଗକ୍ରମେ ସେହି ଆଲୋଚନାରେ ନୀଳକଣ୍ଠ କହିଥିଲେ—"ପ୍ରାଣ ଫେଡ଼ିଦେଇ ପାରିଲେ ସମସ୍ତେ ବୁଝିବେ ସତ୍ୟ କହିବା, ସତ୍‌କାର୍ଯ୍ୟ କରିବା, ପରପାଇଁ ପ୍ରାଣଦେବା, ଜୀବନକୁ ଉପଯୋଗୀ କରିବା ପ୍ରଭୃତି ସବୁଥିରେ ମାନବର ସେହି ଅନନ୍ତ ଶାଶ୍ୱତ ଶାନ୍ତି ଓ ଆନନ୍ଦ ଲାଭର ଉଦ୍ୟମ । ଆତ୍ମା ସର୍ବଦା ସେ ଶାନ୍ତିର ଆଗମ ଲୋଡ଼ୁଅଛି । ସେହି ଆନନ୍ଦ ପାଇବ ବୋଲି କର୍ମ କରୁଅଛି । ଅନନ୍ତ ବିଚିତ୍ର ବିଶ୍ୱରେ ବିଧାତାଙ୍କୁ ଦେଖି ବିଧାତାଙ୍କ ସଙ୍ଗେ ଏକ ହୋଇଯିବାକୁ ଯୋପରିକ ବିଗ୍ରହୁଛି । × × × ସେଥିପାଇଁ ମନୁଷ୍ୟ ଭଲ ମନୁଷ୍ୟ ହୁଏ । ଶେଷରେ ସେହି ଭଲ ମନୁଷ୍ୟତାହିଁ ଜୀବନର ଉଦ୍ଦେଶ୍ୟ । ତାହାର ନାମ ମୁକ୍ତି । ତାହାହିଁ ପ୍ରତ୍ୟେକ ମାନବର ଚରମ ଲକ୍ଷ୍ୟ ।"

ଏହି ଗ୍ରନ୍ଥ-ସମ୍ମେଳନରେ ଆଉଥରେ ପଣ୍ଡିତ ନୀଳକଣ୍ଠ "ଗୁରୁ-ଶିଷ୍ୟ" ଶୀର୍ଷକ ଏକ ଭାବଗର୍ଭକ ଭାଷଣ ପ୍ରଦାନ କରିଥିଲେ । ସେ କହିଥିଲେ—"ବାଳକର ନୈତିକ ଉନ୍ନତି ନିମନ୍ତେ ପିତାମାତା ତାହାକୁ ଗୁରୁଗୃହକୁ ପ୍ରେରଣ କରୁଥିଲେ । ସେମାନେ ବାରମ୍ବାର ଏହି କଥା ଗ୍ରନ୍ଥମାନଙ୍କୁ କହୁଥିଲେ । କିନ୍ତୁ ମନୁଷ୍ୟକୁ ମନୁଷ୍ୟ କରିବାକୁ ହେଲେ କେବଳ ଶରୀରକୁ ଗୁହିଁଲେ ଚଳିବ ନାହିଁ । ଅବଶ୍ୟ ଶରୀର ବଳିବର ଗ୍ରୁଡ଼ିଦେବାର ଜିନିଷ ନୁହେଁ । ମାତ୍ର ଶରୀର ସଙ୍ଗେ ସଙ୍ଗେ ମନର ବିକାଶ ବାଞ୍ଛନୀୟ । କାଳ, ଭବ ଓ ନୈତିକତା ବିନା ମନୁଷ୍ୟ ଶରୀରୀ ଜନ୍ତୁ ମାତ୍ର ।"

"ଏହି ସତ୍ ଚିଦାନନ୍ଦର ଅନନ୍ତ ବିକାଶରେ ଜଗତର ସ୍ଥିତି । ମାତ୍ର ମନେରଖ, ସେହି ବିଶ୍ୱନିୟମରେ ତୁମ୍ଭର ସ୍ୱତନ୍ତ୍ର ଇଚ୍ଛାର ବିକାଶ, ତୁମ ମନ ମଧ୍ୟରେ ଏହି ବିଶ୍ୱବୀଜ ନିହିତ ଅଛି । ଜନ୍ମବେଳୁ ଅନନ୍ତ ପ୍ରବୃତ୍ତିର ଉଦ୍ରେକରେ ତୁମ୍ଭେ ଜୀବନର କ୍ରିୟା ପରମ୍ପରା ଆରମ୍ଭ କର । କ୍ରମେ ଜ୍ଞାନର ବିକାଶ ହେଲା । ତୁମ୍ଭର ଇଚ୍ଛା ତଥା କ୍ରିୟା ଶୃଙ୍ଖଳାରେ ପଡ଼ିଲା । ବିବେଚନା ବଢ଼ିଲା । ତୁମ୍ଭ ଆଗରେ ଜୀବନର ଉଦ୍ଦେଶ୍ୟ ଉନ୍ମୁକ୍ତ ହେଲା । ପୂର୍ବେଦୃଷ୍ଟିରେ ପ୍ରାଣିତ ହୋଇ ତୁମ୍ଭେ ଇଚ୍ଛା ସଂଯତ କଲ । ଚରିତ୍ର ଗଠିତ ହେଲା । ଏହି ଚରିତ୍ର ତୁମ୍ଭର ସ୍ଥିର ହେଲେ ତୁମ୍ଭେ ଜୀବନରେ କର୍ତ୍ତବ୍ୟ ସମାଧାନ କରି ଅନନ୍ତ ଶାନ୍ତି ଓ ଆନନ୍ଦ ପାଇବ । ତୁମ୍ଭର ଇଚ୍ଛା, ଜ୍ଞାନ ଓ କର୍ମ ଏକ ହୋଇଯିବ । ତୁମ୍ଭେ ଜୀବନର ଆନନ୍ଦରେ ବିହ୍ୱଳ ହେବ । ଏକ କଥାରେ କହିଲେ ତୁମ୍ଭେ ସଚ୍ଚିଦାନନ୍ଦମୟ ହେବ ।

ତୁମ୍ଭେ ମନୁଷ୍ୟ, ଏ ଅଧିକାର ତୁମ୍ଭର ଅଛି । ଚରିତ୍ର ଗଠନରେ ହିଁ ଏ ଅଧିକାର ନିଜର କରିବ ।''

ନୀଳକଣ୍ଠ ଏହି ଛାତ୍ରାବସ୍ଥାରୁ ଅତ୍ୟନ୍ତ ଅନୁସନ୍ଧିତ୍ସୁ ଥିଲେ । ଜାଣିବାପାଇଁ ତାଙ୍କର ସ୍ପୃହା ଥିଲା ଅପରିସୀମ । ଏକାଦଶ ଶ୍ରେଣୀର ଛାତ୍ର ଥିଲବେଳେ 'village Blacksmith' ବୋଲି ଇଂରେଜୀ ପଦ୍ୟଟିଏ ପଢ଼ା ହେଉଥିଲା । ସେହି ପଦ୍ୟରେ ଥିଲା—'Here's the parson pray and preach.' ଏହି ଅଂଶକୁ ବୁଝିବା ପାଇଁ ସେ ଚର୍ଚ୍ଚକୁ ଯାଇଥିଲେ । ଏଥିରେ ସ୍କୁଲର ପଣ୍ଡିତ ମହାମହୋପାଧ୍ୟାୟ ସଦାଶିବ ମିଶ୍ର ବିଗିଡ଼ିଲେ, ନୀଳକଣ୍ଠ ଖ୍ରୀଷ୍ଟିଆନ ହୋଇଯିବେ । ସେ ପ୍ରଧାନ ଶିକ୍ଷକଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ପ୍ରଧାନଶିକ୍ଷକ ନୀଳକଣ୍ଠଙ୍କୁ ଚର୍ଚ୍ଚକୁ ଯିବାର କାରଣ ପଚାରି ଯେଉଁ ଉତ୍ତର ପାଇଥିଲେ ସେଥିରେ ତାଙ୍କର ମନ ଲୁଣ୍ଠେମୋହ ହୋଇଯାଇଥିଲା । ଏହି ବାଳକଟି ଭିତରେ ଯେ ଏକ ମହାନ ପ୍ରତିଭା ଲୁକ୍କାୟିତ ଅଛି, ସେଦିନ ପ୍ରଧାନଶିକ୍ଷକ ଆବିଷ୍କାର କରିପାରିଥିଲେ । (୧୭)

ସେ ୧୯୦୫ ମସିହାର କଥା । ନୀଳକଣ୍ଠ ମାଟ୍ରିକପରୀକ୍ଷାରେ ବୃତ୍ତିପାଇ ରେଭେନ୍‌ସା କଲେଜରେ ଅଧ୍ୟୟନ କଲେ । ଏହିଠାରେ ଅବସ୍ଥାନକାଳରେ ତାଙ୍କର ପଣ୍ଡିତ ଗୋପବନ୍ଧୁଙ୍କସହିତ ନିବିଡ଼ ସମ୍ପର୍କରେ ଆସିବାର ସୁଯୋଗ ଘଟିଥିଲା । ନିଜର ତରୁଣ ବନ୍ଧୁମାନଙ୍କସହିତ ସେ ଦେଶସେବା କରିବା ପାଇଁ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରେରଣାରେ ବ୍ରତ ଗ୍ରହଣ କରିଥିଲେ । ସବୁକ୍ଷେତ୍ରରେ ତାଙ୍କର ସ୍ୱାତନ୍ତ୍ର୍ୟ ବାରି ହୋଇ ପଡ଼ୁଥିଲା । ସେତେବେଳେ ନୀଳକଣ୍ଠଙ୍କ ନେତୃତ୍ୱରେ "ୟଙ୍ଗ ଉତ୍କଳ ଆସୋସିଏସନ" ନାମରେ ଏକ ଅନୁଷ୍ଠାନ ଗଠିତ ହୋଇଥିଲା । ଏହି ଅନୁଷ୍ଠାନ ଜରିଆରେ ସେ ତରୁଣ ଛାତ୍ରସମ୍ପ୍ରଦାୟ ସହିତ ସମ୍ପର୍କ ସ୍ଥାପନ କରି ନାନା ଗଠନମୂଳକ କାର୍ଯ୍ୟ କରିବାପାଇଁ ସ୍ୱପ୍ନ ଦେଖୁଥିଲେ । ସେତେବେଳେ କଲିକତାର କେତେଜଣ ବିପ୍ଳବୀ କଟକରେ ଆତ୍ମଗୋପନ କରୁଥିଲେ । ନୀଳକଣ୍ଠ ଗୋପବନ୍ଧୁଙ୍କ ସହିତ ଏହି ବିପ୍ଳବୀମାନଙ୍କ ସମ୍ପର୍କରେ ବାରମ୍ବାର ଆସୁଥିଲେ । ତାଙ୍କ ମନରେ ବୈପ୍ଳବିକ ଭାବନା ସଞ୍ଚାରିତ ହେବା ସ୍ୱାଭାବିକ । ଏହି ୧୯୦୫ ସାଲଟି ଭାରତର ଇତିହାସରେ ଏବଂ ଓଡ଼ିଶା ପକ୍ଷରେ ଅତ୍ୟନ୍ତ ସ୍ମରଣୀୟ । କାରଣ ଏହି ବର୍ଷ ଇଂରେଜମାନେ ବିଶାଳ ବଙ୍ଗଦେଶକୁ ବିଭାଜନ କରିବା ଫଳରେ ଦେଶର ଚତୁର୍ଦ୍ଦିଗରେ ପ୍ରବଳ ପ୍ରତିବାଦ ଓ ଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା । ସେହି ବର୍ଷଟି ପୁଣି ଆମ ଓଡ଼ିଆଭାଷୀ ସମ୍ବଲପୁର ଅଞ୍ଚଳ ପକ୍ଷରେ ଥିଲା ଅତ୍ୟନ୍ତ ସୌଭାଗ୍ୟପରିପୂର୍ଣ୍ଣ । କାରଣ ଓଡ଼ିଶା ବୋଲି ପ୍ରଦେଶଟିଏ ସେତେବେଳେ ହୋଇ

(୧୭) ନୀଳକଣ୍ଠ ସ୍ମାରକୀ—୧୯୮୦-ପୃ୧-୨

ନଥିଲା । ଇଂରେଜ ଶାସକଗଣ ଭିନ୍ନ ଭିନ୍ନ ସମୟରେ ଓଡ଼ିଆଭାଷୀ ଅଞ୍ଚଳକୁ ଦଖଲ କରି ବିଭିନ୍ନ ପଡ଼ୋଶୀ ଭାଷାଭାଷୀ ପ୍ରଦେଶ ସହିତ ତାହାର ଭାଗ୍ୟଡୋରକୁ ବାନ୍ଧି ଦେଇଥିଲେ । ଏହି ସୂତ୍ରରେ ସମ୍ବଲପୁର ଅଞ୍ଚଳ ମଧ୍ୟପ୍ରଦେଶ ସହିତ ଶାସନ-ସୂତ୍ରରେ ବାନ୍ଧି ହୋଇ ରହିଥିଲା ଏବଂ ସେଠାରେ ଓଡ଼ିଆଭାଷୀ ଲୋକେ ବାଧ୍ୟହୋଇ ହିନ୍ଦୀଭାଷା କୋର୍ଟକଚେରୀରେ ବ୍ୟବହାର କରୁଥିଲେ ଏବଂ ହିନ୍ଦୀଭାଷାରେ ସ୍କୁଲଶିକ୍ଷା ଗ୍ରହଣ କରୁଥିଲେ । ମାତ୍ର ସୁଖର କଥା ଯେ ସମ୍ବଲପୁରବାସୀଙ୍କର ଆନ୍ଦୋଳନ ଫଳରେ ଇଂରେଜ ଶାସକବର୍ଗ ଏହି ୧୯୦୫ ସାଲରୁ ସେଠାରେ ପୁନର୍ବାର ଓଡ଼ିଆଭାଷାର ପ୍ରଚଳନ କରିଥିଲେ । ଏହି ଘଟଣାର ୩୧ ବର୍ଷ ପରେ କେତେ ଆନ୍ଦୋଳନ ଯୋଗୁ ଓଡ଼ିଆଭାଷୀ ଲୋକେ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶଟିଏ ଲାଭ କରିଥିଲେ । ତେବେ ସମ୍ବଲପୁରରେ ଓଡ଼ିଆ ଭାଷା ପ୍ରଚଳନ ସମ୍ବାଦ ଶ୍ରବଣ କରି କାଠଯୋଡ଼ି ହଷ୍ଟେଲରେ ଥିବା ରେଭେନ୍‌ସା କଲେଜର ସମ୍ବଲପୁରୀ ଛାତ୍ରମାନେ ଅତ୍ୟନ୍ତ ଆନନ୍ଦଉଲ୍ଲାସର ସହିତ ପାଳନ କରିଥିଲେ । ନୀଳକଣ୍ଠ ଏ ସମ୍ବାଦରେ ଆନନ୍ଦିତ ହୋଇଥିଲେ ହେଁ ତାଙ୍କର ବୈପ୍ଳବିକମନ ବଙ୍ଗବିଭାଜନ ସମ୍ବାଦରେ ବିଚଳିତ ହୋଇ ପଡ଼ିଥିଲା ! ସେ ସତେ ଯେପରି ଅନୁଭବ କରିଥିଲେ ଏଥିରେ ବ୍ରିଟିଶ୍ ସରକାରଙ୍କର ହୀନ ଚକ୍ରାନ୍ତର ବିଷମଞ୍ଜି ପୋତା ହୋଇ ରହିଛି । ଏହାର ମୂଳୋତ୍ପାଟନ ନ କଲେ ଭାରତଜନନୀ ଭବିଷ୍ୟତରେ ଏଥିପାଇଁ ଅତ୍ୟନ୍ତ ଦୁଃଖ ଲାଭ କରିବ । ରେଭେନ୍‌ସାରେ ପାଠ ପଢ଼ୁଥିବା ବଙ୍ଗାଳୀ ପିଲାମାନେ ସେ ଦିନଟି ପ୍ରତିବାଦ ସ୍ୱରୂପ ଉପବାସ ପାଳନ କରିଥିଲେ । ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଯେ ଏହି ବଙ୍ଗାଳୀପିଲାମାନଙ୍କର ପ୍ରତିବାଦ-ଆନ୍ଦୋଳନର ନେତୃତ୍ୱ ନେଇଥିଲେ ତରୁଣ ଛାତ୍ର ନୀଳକଣ୍ଠ । ନୀଳକଣ୍ଠ ଯେ ଭବିଷ୍ୟତରେ ରାଜନୈତିକ ରଙ୍ଗମଞ୍ଚରେ ଜଣେ ପ୍ରଧାନ ଅଭିନେତା ହେବେ, ଏହି ଘଟଣାଟି ଯେପରି ଥିଲା ତାର ଏକ ଶୁଭସୂଚନା । ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଯେ ଏହି ଘଟଣା ପୂର୍ବରୁ ନୀଳକଣ୍ଠ ହିଁ ମଧୁସୂଦନ ଦାସଙ୍କ ପ୍ରେରଣାରେ ଓଡ଼ିଆଆନ୍ଦୋଳନରେ ଯୋଗ ଦେଇଥିଲେ । (୧୮)

୧୯୦୩ ସାଲରେ ଉତ୍କଳସମ୍ମିଳନୀର ଜନ୍ମ ହୁଏ । ଏହି ସମ୍ମେଳନର ପ୍ରାଣପ୍ରତିଷ୍ଠାତା ମଧୁବାବୁ ଓଡ଼ିଶାର ଗ୍ରାମଆଡ଼େ ବୁଲି ସମ୍ମିଳନୀର ବାର୍ତ୍ତା ପ୍ରଚାର କରୁଥାଆନ୍ତି । ୧୯୦୪ ସାଲରେ ମଧୁବାବୁ ପୁରୀର ଜଗନ୍ନାଥବଲ୍ଲଭଠାରେ ସଭାଟିଏ ଡାକିଥିଲେ । ସେଠାରେ ପୁରୀ ଜିଲ୍ଲାସ୍କୁଲର ଛାତ୍ର ନୀଳକଣ୍ଠ ଏବଂ ତାଙ୍କର ସହପାଠୀ କଲିକତାର ନଗେନ୍ଦ୍ରନାଥ ରକ୍ଷିତ ଉପସ୍ଥିତ ଥିଲେ । ମଧୁବାବୁ ଭାଷଣ ଦେଇ ସାରିଲା ପରେ ସଭା ସ୍ଥଳରେ ଗୋଟିଏ ପ୍ରତିଜ୍ଞାପତ୍ରରେ ଦସ୍ତଖତ କରିବାପାଇଁ

(୧୮) ନୀଳକଣ୍ଠ ସ୍ମାରକୀ—୧୯୮୦-ପୃ ୭୬-୭୭

ଉପସ୍ଥିତ ଜନସମାଜକୁ ଅନୁରୋଧ କଲେ । ଏହି ସଂକଳ୍ପପତ୍ରର ମର୍ମ ଥିଲା— "ମୁଁ ପ୍ରାଣପଣେ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର କରିବି । ବିଶେଷରେ ସ୍ୱଦେଶୀ ଲୁଗା ଛଡ଼ା ଆଉ କେବେ କିଛି ପିନ୍ଧିବି ନାହିଁ ।" ସଭାରେ ପୋଲିସ ଥାଆନ୍ତି । ଇଂରେଜ ସରକାରଙ୍କ ଭୟରେ ସମସ୍ତେ ଥରୁଥାଆନ୍ତି । ସ୍ୱଦେଶୀ ବ୍ୟବହାର ସଂକଳ୍ପ କଲେ ଇଂରେଜ-ସ୍ୱାର୍ଥର ବିରୋଧୀ ବୋଲି ଗଣାଯିବାର ଭୟ ଥିଲା । ତେଣୁ ସଭାସ୍ଥଳରେ କ୍ୱଚିତ ଲୋକ ଦସ୍ତଖତ କରିବାକୁ ଆଗେଇ ଆସିଥିଲେ । ମାତ୍ର ଶ୍ରୀଯୁକ୍ତ ନୀଳକଣ୍ଠ ସେଥିରେ ଦସ୍ତଖତ କରି ଆଜୀବନ ତାହା ପାଳନ କରିଥିଲେ । ସେହିଦିନୁ ସେ ସ୍ୱଦେଶୀବସ୍ତ୍ର ବ୍ୟତୀତ ଆଉ କିଛି ବ୍ୟବହାର କରି ନଥିଲେ । (୧୯) ଦେଶପାଇଁ କାର୍ଯ୍ୟ କରି ସେ ବହୁ ଦୁଃଖ ବରଣ କରିଥିଲେ ।

ତରୁଣ ନୀଳକଣ୍ଠଙ୍କ ପ୍ରତିଭା କଥାଟି ଅଲୋଚନା କଲାବେଳେ ତାଙ୍କର ବୃଦ୍ଧ-ପିତା ଆନନ୍ଦ ଦାସଙ୍କ ବ୍ୟକ୍ତିତ୍ୱ ସ୍ମରଣୀୟ । ବୃଦ୍ଧ ବୟସରେ ବହୁ ଦେବଦେବୀଙ୍କୁ ଆଶ୍ରୟ କରି ଆନନ୍ଦ ଦାସେ ନୀଳକଣ୍ଠଙ୍କୁ ଲାଭ କରିଥିଲେ । ସେ ନିଜେ ପାଠ ପଢ଼ି ନଥିବାରୁ ସମାଜରେ ଉପଯୁକ୍ତ ସ୍ୱୀକୃତି ଲାଭ କରିବା ସମ୍ଭବ ନଥିଲା । ମାତ୍ର ସେ କାମନା କରୁଥିଲେ ତାଙ୍କର ପୁତ୍ର କିପରି ଭବିଷ୍ୟତରେ ବଡ଼ମଣିଷ ହେବ । ପ୍ରାଣର ଗଦ୍ ଗଦ୍ ଭାଷାରେ ନୀଳକଣ୍ଠ ଆତ୍ମଚରିତରେ ସେହିକଥା ଉଲ୍ଲେଖ କରିଛନ୍ତି ।

"ମୋତେ ସେତେବେଳେ ମାତ୍ର ପାଞ୍ଚ ବର୍ଷ ପୂରି ଯାଇଚି । ସେ କାଳର ରୀତି ଅନୁସାରେ ନନା ପ୍ରତିଦିନ ସନ୍ଧ୍ୟା ପୂର୍ବରୁ ଟିକିଏ ଭାଙ୍ଗ ଘୋଟି ପିଉଥିଲେ । ଦିନେ ମୁଁ ଯାଇ ପାଖରେ ବସି କହିଲି, 'ନନା ମୁଁ ପିଇବି ।' ସେ ଆପେ ପିଇସାରି ଖାଲି କୁଂଡିଟା ଧୋଇ ମୋତେ ଟିକିଏ ଦିଇବାକୁ ଦେଲେ । ରାଗ ରାଗ ଲାଗିଲା । ମୁଁ ପିଇ ଦେଇ ଭାରି ଖୁସି ହେଲି । ତହିଁ ଆରଦିନ ଠିକ୍ ବେଳକୁ ପୁଣି ଯାଇ ବସିଲି । କହିଲି, ନନା ମୁଁ ଖାଇବି ।' ଆଜି ମଧ୍ୟ ମୋର ସେ ଚିତ୍ର

(୧୯) "କିନ୍ତୁ ବଙ୍ଗଭଙ୍ଗର ଭୟାବହ ପରିଣାମ ତାଙ୍କ ଦୂରଦୃଷ୍ଟି ଯୋଗୁ ସେ ହୃଦୟଙ୍ଗମ କରି ପାରିଲେ । ହିନ୍ଦୁ ଓ ମୁସଲମାନ ରାଜ୍ୟ ଅଲଗା ଅଲଗା କରି ଜାତିଭେଦ ସୃଷ୍ଟି କରିବାପାଇଁ ବଡ଼ଲାଟ କର୍ଜନ ବଙ୍ଗଳାକୁ ଭାଗଭାଗ କରିଥିଲେ । ତେଣୁ ଓଡ଼ିଆଙ୍କ ଉତ୍ସବରେ ନ ମାତି ସେ ବଙ୍ଗାଳିମାନଙ୍କ ସଙ୍ଗେ ମିଶି ବଙ୍ଗଭଙ୍ଗର ତୀବ୍ର ପ୍ରତିବାଦ କରିଥିଲେ । " (ମୋ ନନାଙ୍କ ଦେଶ—ବିକ୍ରମ ଦାସ—୧୯୮୩—ପୃ ୨୧୨)

—ନୀଳକଣ୍ଠଗ୍ରନ୍ଥାବଳୀ—ପ୍ରଥମଖଣ୍ଡ—୧୯୬୩—ଆତ୍ମଜୀବନୀ—

ପୃ ୪୧—୪୨

ମନେ ପଡ଼ୁଛି । ନନା ଟିକିଏ ଚମକିତ ହୋଇ ବସିଗଲେ । ତଳ ସାହାଳିଘରୁ ବୋଉକୁ ଡାକଲେ । ବୋଉ ଆସିଲାରୁ କୁଣ୍ଡି, ବାଡ଼ି ଗଣ୍ଡେଇ ମସଲା ଥିବା ବଟୁଆ ସବୁ ତାକୁ ଦେଇ କହିଲେ 'ତୁ ସ୍ୱାକୁ ନେ ଫିଙ୍ଗି ଦେ, ନଇଲେ ଯାହା କର, ମୁଁ ଆଉ ଭାଙ୍ଗ ଖାଇଲେ ପୁଅ ପାଇବ ନାଇ । ଏ ଭାଙ୍ଗଡ଼ି ହୋଇଯିବ ।"
ଏ ପ୍ରାୟ ନନାଙ୍କ ପଚିଶବରଷ ବେଳର କଥା ସେ ଅଣାନବେ ବରଷରେ ୧୯୨୮ରେ ମଲେ, ମାତ୍ର ସେଇ ଦିନଠାରୁ ସେ ଭାଙ୍ଗ ଆଉ କେବେ ସ୍ପର୍ଶ କରି ନାହାନ୍ତି ।

ତାଙ୍କ ଉତ୍ତର ବୟସର ଆଉ ଗୋଟିଏ କଥା ମଧ୍ୟ ଏଠାରେ କହେ । ବାଆସ୍ତରି ବର୍ଷରେ ତାଙ୍କର ଭୀଷଣ କଫ କାଶ ଓ ଜ୍ୱର ହେଲା । × × × ମୋ ମନେ ହେଲା ସେ ନିଶ୍ଚୟ ମରିଯିବେ । × × କହିଲେ (ତାଙ୍କର ଦୁଇଜଣ ପ୍ରିୟ ବନ୍ଧୁ) ଅଫିମ ଖାଅ କାଶ ବନ୍ଦ ହୋଇଯିବ, ନିଦ ଲାଗିବ । ଚାରି ପଇସାର ଅଫିମ ଆଣିଦେଲେ । ସେଦିନ ରାତିରେ ଟିକିଏ ଖାଇ ନିଶା ଥିବାତକ କାଶ ଟିକିଏ ବନ୍ଦ ହେଲା । ନିଦ ଲାଗିଲା । ନିଶା ଛାଡ଼ି ଗଲାରୁ ପୁଣି ଯେଉଁ କଥାକୁ ସେଇ କଥା । ବାରିଶଲି ବରିବର ଖାଇଲେ ହୁଏତ ଟିକିଏ ଉଶ୍ୱାସ ଲାଗିବ । ପୁଣି ବାରିଶଲି ପୁଅ ପାରିଗଲାଣି । ମୋତେ ୭୨ ବର୍ଷ ହେଲାଣି । ମନୁଷ୍ୟ ଆଉ କେତେ କାଳ ବା ବଞ୍ଚେ । ମଲାବେଳକୁ ବିଷଗୁଡ଼ାକ ଖାଇ କଳଙ୍କ ରଖିଯିବି । ତୋ ପାଇଁ ସ୍ୱାକୁ ରଖିଚି । ତୁ ସ୍ୱାକୁ ନେଇ ଆଗ ଫିଙ୍ଗିଦେ । ତା'ପରେ ଔଷଧ କଥା ବୁଝିବୁ ।" ମୋର ସେତେବେଳେ ମନରେ ଯାହା ହେଲା କହିବା ଦରକାର ନାଇ । ମୁଁ ଆଗ ଅଫିମ ନେଇ ଫିଙ୍ଗିଦେଲି, ତାପରେ ଔଷଧ ବ୍ୟବସ୍ଥା କଲି । ସେଥିରେ ତାଙ୍କର ଆରୋଗ୍ୟ ହୋଇଗଲା ।" (୨୦)

ନୀଳକଣ୍ଠ ଆଜୀବନ ନିଜର ପ୍ରତିଜ୍ଞାରେ ଅଟଳ ରହିଥିଲେ । ଏଥିପାଇଁ ସେ ତାଙ୍କର ପିତାଙ୍କଠାରୁ ପ୍ରେରଣା ଲାଭ କରିଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଛାତ୍ର ଜୀବନରୁ ନୀଳକଣ୍ଠ ରୋଗୀ ସେବାକୁ ଜୀବନର ଅନ୍ୟତମ ବ୍ରତ ରୂପେ ଗ୍ରହଣ କରିଥିଲେ । ନିଜର କତିପୟ ବନ୍ଧୁମାନଙ୍କ ସହଯୋଗରେ ସେ ଏହି କାର୍ଯ୍ୟ କରିବାପାଇଁ ଯେଉଁ ଉତ୍ସାହ ପ୍ରଦର୍ଶନ କରିଥିଲେ ସେ କାଳର ତରୁଣ ସମାଜରେ ତାହାର ତୁଳନା ନଥିଲା । ଇଂରେଜୀ ପଢ଼ୁଆ ଛାତ୍ରମାନେ ଅତ୍ୟନ୍ତ ବ୍ୟକ୍ତି-କୈନ୍ଦ୍ରିକ ହୋଇ ପଡ଼ୁଥିଲେ । ସେମାନେ ନିଜକୁ ବାବୁଗୋଷ୍ଠୀର ବୋଲି ମନେକରି ଜନଜୀବନଠାରୁ ନିଜକୁ ଦୂରେଇ ରଖୁଥିଲେ । ତେଣୁ ଏହି ଛାତ୍ରମାନଙ୍କର ସାଧାରଣ

(୨୦) ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମ ଭାଗ—୧୯୬୩—ଆତ୍ମଜୀବନୀ—ପୃ ୩

ସମାଜଜୀବନ ପ୍ରତି କୌଣସି ସହାନୁଭୂତି ନଥିଲା । ମାତ୍ର ନୀଳକଣ୍ଠ ଥିଲେ ଏହି ଭାବଧାରାର ସଂପୂର୍ଣ୍ଣ ବ୍ୟତିକ୍ରମ । ସେ ବେଳରେ ଏହା କିପରି ସମ୍ଭବ ହୋଇଥିଲା ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଏ କ୍ଷେତ୍ରରେ ଦାସେ ଆପଣେ ତାଙ୍କୁ ପ୍ରେରଣା ପ୍ରଦାନ କରିଥିଲେ । ନିଜେ ନୀଳକଣ୍ଠ ଲେଖିଛନ୍ତି—"ଏଇଠାରେ ଗୋଟିଏ କଥା କହିଦେବା ମନେ କରୁଛି । ସେ ହେଉଛି ରୋଗୀ ସେବା । ଏହି ରୋଗୀ ସେବା କଟକରେ ମୁଁ ମାଟ୍ରିକୁଲେସନ୍ ୨ୟ ଶ୍ରେଣୀରେ ପଢ଼ିବା ଦିନୁ ଆରମ୍ଭ କରିଥିଲି । କଟକରେ ସେତେବେଳେ ସାଧାରଣ ଓଡ଼ିଆ ଓ ଓଡ଼ିଆ ଭଦ୍ରଲୋକଙ୍କ ରହିବାର ଅବସ୍ଥା ଭଲ ନଥିଲା । ଓଡ଼ିଆଲୋକେ ପ୍ରବାସୀ ହୋଇ କାମ କରୁଥିଲେ । ସେତିକବେଳେ ତାଙ୍କୁ ନାନା ରୋଗ ଏପରି କି ହଇଜା ପରି ରୋଗ ବରାବର ଧରୁଥିଲା । ଲୋକେ ଟୋପାଏ ପାଣି ନ ପାଇ ମରୁଥିଲେ । ମଲାପରେ ତାଙ୍କୁ କେହି ପୋଡ଼ିବାକୁ ନଥିଲା । ଏ ସବୁ ଦେଖି ଗୋପବନ୍ଧୁବାବୁ ଆମ୍ଭମାନଙ୍କୁ ସଙ୍ଗେ ଧରି (ହରି ଭାଇନା, ପ୍ରଚାରକ ଅନନ୍ତ ମିଶ୍ର ଓ ମୋତେ) ଗୋଟିଏ ଦଳ କରିଥିଲେ । ଆମେ ଖବର ପ୍ରଚାର କରିଦେଇଥିଲୁ ସହରରେ ଯାହାର ଯେଉଁଠି ପ୍ରବାସୀ କିମ୍ବା ଆତ୍ମୀୟମାନଙ୍କ ମଧ୍ୟରେ ଏହିପରି ଦୁର୍ଗତି ଘଟିବ ସେ ଆମକୁ ଖବର ଦେଲେ ଆମେ ଯାଇ ପହଞ୍ଚିବୁ ।" (୨୧)

ସେ କାଳରେ ହଇଜା ପାଇଁ ବିଶେଷ ଫଳପ୍ରସୂ ଔଷଧ ବାହାରି ନଥିଲା । ତେଣୁ ହଇଜା ଆକ୍ରମଣ କଲେ ଏକାବେଳକେ ଅନେକ ଲୋକ ମରିଯାଉଥିଲେ । ଗୁନିଆ ହୋଇ ମଧ୍ୟ ରୋଗୀ ପ୍ରାଣ ଗୁଡ଼ୁଥିଲେ । ନୀଳକଣ୍ଠ ଏହି ସମୟରେ ହଇଜା ମଲୁଙ୍କର ସେବା କରିବାପାଇଁ ହୋମିଓପାଥି ଅଧ୍ୟୟନ କଲେ । ସେ ଦେଶୀ ବିଦେଶୀ ବହୁ ଗ୍ରନ୍ଥ ଅଧ୍ୟୟନ କରି ଔଷଧବାକ୍ସ ଧରି ରୋଗୀଦ୍ୱାରରେ ପହଞ୍ଚି ଯାଉଥିଲେ । ନିଜେ ପଥ୍ୟ ରାନ୍ଧି ଖାଇବାକୁ ଦେଉଥିଲେ । ଆତ୍ମୀୟମାନେ ଯେତେବେଳେ ଭୟରେ ରୋଗୀର ପାଖ ପଶୁ ନଥିଲେ ନୀଳକଣ୍ଠ ନିଜର ବନ୍ଧୁମାନଙ୍କ ସହିତ ନିର୍ଭୀକ ଭାବରେ ସେବା ମନୋଭାବ ନେଇ ରାତିରାତି ରୋଗୀମାନଙ୍କୁ ଜଗି ରହୁଥିଲେ ଏବଂ ସେମାନଙ୍କ ମଧ୍ୟରେ ନୂତନ ଜୀବନ ସଂଚାର କରୁଥିଲେ । ଗୋପବନ୍ଧୁଙ୍କ ପ୍ରେରଣାରେ ସତ୍ୟବାଦୀରେ ବନବିଦ୍ୟାଳୟ ପ୍ରତିଷ୍ଠା ହେଲା । ସେଠାରେ ଉଚ୍ଚଶିକ୍ଷା ଲାଭକରି ନୀଳକଣ୍ଠ ପ୍ରଧାନଶିକ୍ଷକ ଭାବରେ ଯୋଗ ଦେଲେ । ଅଧ୍ୟୟନ ଓ ଅଧ୍ୟାପନ ସହିତ ରୋଗୀସେବା ଥିଲା ସତ୍ୟବାଦୀ ବନ-ବିଦ୍ୟାଳୟର ଆଉ ଏକ ବିଶେଷତ୍ୱ । ମାନବ ସେବାହିଁ ଜୀବନର ପ୍ରକୃତ ଆଭିମୁଖ୍ୟ, ଏହି ମନ୍ତ୍ରରେ ଦୀକ୍ଷିତ ହେଉଥିଲେ ସତ୍ୟବାଦୀର ଅନ୍ତେବାସୀଗଣ । ତେଣୁ ସେ କାଳର କୁସଂସ୍କାର-ବିଜଡ଼ିତ ସତ୍ୟବାଦୀର ଗ୍ରାମ ଅଞ୍ଚଳରେ ସତ୍ୟବାଦୀପିଲାମାନଙ୍କ

(୨୧) ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମ ଭାଗ—୧୯୬୩—ଆତ୍ମ ଜୀବନୀ—ପୃ ୫୬

ସହିତ ପଣ୍ଡିତ ନୀଳକଣ୍ଠ ସେବାଧର୍ମର ଯେଉଁ ପରାକାଷ୍ଠା ପ୍ରଦର୍ଶନ କରିଥିଲେ ତାହାର ତୁଳନା ନାହିଁ । ରଥଯାତ୍ରାକାଳରେ ପୁରୀସହରରେ ଭାରତର ସର୍ବାଞ୍ଚଳରୁ ବହୁ ଜନସମାଗମ ହୋଇଥାଏ । ପ୍ରାୟତଃ ହଇଜା ଆକ୍ରମଣରେ ବହୁଲୋକେ ମୃତ୍ୟୁବରଣ କରନ୍ତି । ରୋଗୀମାନଙ୍କର ଉପଯୁକ୍ତ ସେବା ଏବଂ ଶବ-ସତ୍କାର ପାଇଁ ବିଶେଷ ସୁବିଧା ନଥାଏ । ନୀଳକଣ୍ଠ ଏବଂ ତାଙ୍କର ସହକର୍ମୀମାନଙ୍କ ନେତୃତ୍ୱରେ ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ରମାନେ ରୋଗୀସେବା ସହିତ ଶବସତ୍କାର କରି ଚରମ ଆଦର୍ଶ ପ୍ରଦର୍ଶନ କରିଥିଲେ । ନୀଳକଣ୍ଠ ହୋମିଓପାଥି ବାକ୍ସ ଧରି ଗ୍ରାମକୁ ଗ୍ରାମ ବୁଲିଯାଉଥିଲେ ଏବଂ ରୋଗୀମାନଙ୍କ ପାଖରେ ରହି ଦିନରାତି ସେବାରେ ଲାଗି ପଡ଼ୁଥିଲେ । ବେଳେବେଳେ ଅସହାୟ ଏବଂ ଦୁଃସ୍ଥ ରୋଗୀମାନଙ୍କ ପାଇଁ ବାର୍ଲି ନିଜ ଘରେ ତିଆରି କରି ରୋଗୀପାଇଁ ନେଇ ଯାଉ-ଥିଲେ । ଏଥିରେ ତାଙ୍କର ବୋଉ ବିରକ୍ତ ହୋଇ କହିଲେ, "ଆମର ଏତେ ରୋଗୀମାନଙ୍କୁ ନେଇ ବାର୍ଲି ଖାଇବାକୁ ଦେବାରେ କଣ ଅଛି ? ତାଙ୍କୁ ଔଷଧ ଦେବା ହେଉଛି ଆମ କାମ, ଏ ସବୁ କଣ ?"

ନୀଳକଣ୍ଠଙ୍କ ନନା ସେତେବେଳେ ଘରେ ନଥିଲେ । ବାହାରୁ ଆସି ଶୁଣି କହିଲେ—"ଆଚ୍ଛା, ତୁ ତ ଯିବା କହି ପୁଅକୁ ମନା କରୁଛୁ । କାଲି ଯଦି ଦୁଷ୍କାଳରେ ଆମ ଘରେ କିଛି ହୁଏ, ତେବେ କିଏ ଆସିବ ?" (୨୨)

ସେବା କାର୍ଯ୍ୟରେ ନୀଳକଣ୍ଠଙ୍କୁ ପିତାଙ୍କର ଆଶୀର୍ବାଦ ମିଳିବା ଯୋଗୁଁ ସେ ଏ ଦିଗରେ ଅଧିକ ଉତ୍ସାହିତ ହେବା ସ୍ୱାଭାବିକ ।

୧୮୬୬ ଖ୍ରୀଷ୍ଟାବ୍ଦରେ ନଅଙ୍କ ଦୁର୍ଭିକ୍ଷ ହୋଇଥିଲା । ଏଥିରେ ଓଡ଼ିଶାର ଅର୍ଦ୍ଧାଧିକ ଲୋକ ପୋକମାଛି ପରି ମୃତ୍ୟୁବରଣ କରିଥିଲେ । ସରକାରୀକଳର ଉଦାସୀନତା, ଯୋଗାଯୋଗ ଅସୁବିଧା ଏବଂ ଉପଯୁକ୍ତ ନେତୃତ୍ୱର ଅଭାବ ଥିଲା ସେକାଳ ଓଡ଼ିଶାରେ ଭାଗ୍ୟ ବିପର୍ଯ୍ୟୟ ପାଇଁ ମୁଖ୍ୟତଃ ଦାୟୀ । ଜନସମାଜର ସେବା କରିବାପାଇଁ କେହି ଆଗୁଆ ହୋଇ ବାହାରି ଆସି ନଥିଲେ । ଜାତୀୟଜୀବନ କପରି ନିସ୍ତେଜ ଓ ନିଷ୍ପ୍ରାଣ ହୋଇ ରହିଥିଲା । ପଣ୍ଡିତ ଗୋପବନ୍ଧୁ ଓ ପଣ୍ଡିତ ନୀଳକଣ୍ଠଙ୍କ ନେତୃତ୍ୱରେ ଓଡ଼ିଆ ଜାତି ଏହି ଅବସାଦଗ୍ରସ୍ତ ମନୋଭାବରୁ ମୁକ୍ତିଲାଭ କରିବାପାଇଁ ବ୍ୟାକୁଳ ହୋଇ ପଡ଼ିଲା । ଗୋପବନ୍ଧୁ ବିକଳ ହୋଇ ସେହି ଜନତା ଜନାର୍ଦ୍ଦନଙ୍କର ସେବାରେ ନିଜକୁ ଉତ୍ସର୍ଗ କରିଦେଲେ ଏବଂ ଅନ୍ତରଙ୍ଗ ସହକର୍ମୀ ମାନଙ୍କୁ ସେହି ସେବାମନ୍ତ୍ରରେ ଦୀକ୍ଷିତ କରିଦେଲେ । ସେ ଲେଖିଥିଲେ—

(୨୨) ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମଭାଗ—୧୯୬୩, ଆତ୍ମଜୀବନୀ— ପୃ-୫୮

"କାପୁରୁଷ ପର ମରିବା ଜଗତେ ନୁହେଁ ନର ପରୁରୁଷ,
ପରହିତ ସାଧି ମରେ ଯେ ମଣ୍ଡରେ ସେହି ଏକା ସୁପୁରୁଷ ।"

୧୯୦୭ ମସିହାରେ ପ୍ରଳୟଙ୍କରୀ ବନ୍ୟା କଟକଜିଲ୍ଲାର କେନ୍ଦ୍ରାପଡ଼ା ଓ ଯାଜପୁର ସବ୍‌ଡ଼ିଭିଜନକୁ ଏକପ୍ରକାର ତଳତଳାନ୍ତ କରି ଦେଇଥିଲା । ବ୍ରାହ୍ମଣୀ, ବୈତରଣୀ ଓ ଖରସୁଆଁ ଏକାକାର ହୋଇଯାଇ ଏକ ବିସ୍ତୃତ ଅଞ୍ଚଳକୁ ଜଳମଗ୍ନ କରିଦେଲେ । ଜନସାଧାରଣଙ୍କର ଦୁର୍ଗତିର ସୀମା ରହିଲା ନାହିଁ । ଗୋପବନ୍ଧୁ ତାଙ୍କର କେତେକ ତରୁଣ ଛାତ୍ରବନ୍ଧୁଙ୍କ ସାହାଯ୍ୟରେ ଏ ଅଞ୍ଚଳରେ ସେବା କାର୍ଯ୍ୟ କରି ନିଜର ଅପୂର୍ବ ବ୍ୟକ୍ତିତ୍ୱର ପରିଚୟ ଦେଇଥିଲେ ।

କଟକ କଲେଜର ଛାତ୍ର ନୀଳକଣ୍ଠ ସେତେବେଳେ ଗୋପବନ୍ଧୁଙ୍କର ସହକର୍ମୀ ଭାବରେ କାର୍ଯ୍ୟ କରିଥିଲେ । ନଅଙ୍କଦୁର୍ଭିକ୍ଷ ପରେ ୧୯୦୭ର ପ୍ରଳୟକାରୀ ବନ୍ୟା ଥିଲା ଓଡ଼ିଶା ପାଇଁ ଚରମ ଆଘାତ । ଏ ସମ୍ପର୍କରେ ଗୋପବନ୍ଧୁ ନିଜେ ଅତ୍ୟନ୍ତ କରୁଣ ଭାବରେ "ଉତ୍କଳ ଦୀପିକାରେ" (୨୧ । ୯ । ୧୯୦୭) ସେ କାଳର ଚିତ୍ର ଦେଇ ଯାଇଛନ୍ତି । (୨୩)

(୨୩) "କେତେ ଜଣ କଲେଜଛାତ୍ରଙ୍କ ସଙ୍ଗେ ମୁଁ ସାହାଯ୍ୟ ବାଣ୍ଟିବା ଲାଗି କେନ୍ଦ୍ରାପଡ଼ା ଅଞ୍ଚଳକୁ ଯାଇ ବାଟରେ ଅନବରତ ବୃଷ୍ଟିରେ ଶ୍ରଦ୍ଧେୟ ସହୃଦୟବନ୍ଧୁ ବଳଦେବଜିଉଙ୍କ ମାନେଜର ଶ୍ରୀଯୁକ୍ତ ଅମ୍ବିକାଚରଣ ବସୁ ଏବଂ ସ୍ଥାନୀୟ ଜମିଦାର ଶ୍ରୀଯୁକ୍ତ ନରେନ୍ଦ୍ର ବାବୁଙ୍କ ଯତ୍ନ ଏବଂ ସାହାଯ୍ୟରେ ଅଗଷ୍ଟ ୨୯ ତାରିଖ ଗୁରୁବାର ରାତିରେ ଇନ୍ଦ୍ରପୁର ମୁକାମରେ ପହଞ୍ଚିଲୁ । ତହିଁ ଆରଦିନ ସକାଳେ ଆମେ ଇନ୍ଦ୍ରପୁର କେନାଲ୍ ବନ୍ଧ ଉପରେ ଠିଆ ହୋଇ ଦେଖିଲୁ, ଚତୁର୍ଦ୍ଦିଗ ଜଳମୟ. ଆଖି ପାଉନାହିଁ । ଯେମନ୍ତି କି ଏ ବିସ୍ତୀର୍ଣ୍ଣ ଜଳରାଶି ପୃଥିବୀ ଶେଷସୀମାଯାଏଁ ଲାଗିଛି । × × × ଯେଉଁଠାରେ ଲୋକଙ୍କର ବାସଥିଲା ସେଠାରେ ପ୍ରବଳ ସ୍ରୋତ ପଡ଼ୁଛି, ନୌକା ଚାଲୁଛି, ସ୍ଥାନେ ସ୍ଥାନେ କାତ ପାଉନାହିଁ । ବାସହୀନ ଇନ୍ଦ୍ରପୁର ଲୋକମାନେ ନାଳବନ୍ଧ ଉପରେ କୁଡ଼ିଆମାରି ରହିଛନ୍ତି । ଏହି ହତଭାଗ୍ୟ ମାନଙ୍କ ଉପରେ ପୁଣି ବିସୂଚିକାର ବଜ୍ରପାତ । ପ୍ରାୟ ପ୍ରତ୍ୟେକ ଘରେ ମାରିଭୟ । ଦୁର୍ଗନ୍ଧରେ ନାକ ଫାଟି ଯାଉଚି । ମଢ଼ା ପୋଡ଼ିବାକୁ ସ୍ଥାନ ନାହିଁ ବା ଜାଳ କାହିଁ ? କେହି ପୋଡ଼ୁଛନ୍ତି, କେହି ପୋତୁଛନ୍ତି, କେହି ବା ପାଣିରେ ଭସାଇ ଦେଉଛନ୍ତି । × × × ଏହି ଶତ ଶତ ବିପନ୍ନ ଲୋକମାନଙ୍କ ପ୍ରତି ସମାଜର କି କର୍ତ୍ତବ୍ୟ ଜନସାଧାରଣ ତାହା ବିଚାର କରିବେ ।

(ଗୋପବନ୍ଧୁ ରଚନାବଳୀ—୨ୟ ଖଣ୍ଡ ୧୯୭୭, ପୃ—୧-୫)

ସେ କାଳରେ ଗୋରାସାହେବମାନେ କଲେକ୍ଟର ହେଉଥାଆନ୍ତି । ଇଂରେଜ ସରକାରଙ୍କୁ ଲୋକଙ୍କର ଦୁର୍ଗତି ସମ୍ପର୍କରେ ପ୍ରକୃତ ଚିତ୍ର ଦେବାପାଇଁ ଇଂରେଜ ହାକିମମାନେ ଉଚିତ ମନେ କରୁନଥିଲେ । କାରଣ ସେମାନେ ଏହି କଳା ଲୋକଙ୍କୁ ଘୃଣା କରୁଥିଲେ । ଶାସକଜାତିର ଅହଂକାର ପାଇଁ ଲୋକ-ସାଧାରଣଙ୍କର ଦୁଃଖ ଦୁର୍ଦ୍ଦଶା ସେମାନଙ୍କ ଆଖିରେ ପଡୁନଥିଲା । ଗୋପବନ୍ଧୁ ନୀଳକଣ୍ଠଙ୍କ ପରି ଛାତ୍ରମାନଙ୍କ ସାହାଯ୍ୟରେ ନାନା ଲୋକସେବା ଅନୁଷ୍ଠାନ ଗଢ଼ି ସାହାଯ୍ୟ କାର୍ଯ୍ୟ ଚାଲୁ ରଖିଥିଲେ । ହଇଜାମଲୁଙ୍କର ସେବା କରୁଥିଲେ ଏବଂ ବଢ଼ିମରୁଡ଼ିରେ ଦୁଃଖୀଲୋକଙ୍କ ଦ୍ୱାରରେ ଯାଇ ଠିଆ ହେଉଥିଲେ । ଗୋପବନ୍ଧୁଙ୍କ ପ୍ରେରଣାରେ ଯୁବକମାନେ ନାନା କଷ୍ଟ ବରଣକରି ବନ୍ୟାଅଞ୍ଚଳରେ ଦୀର୍ଘଦିନ ସେବାକାର୍ଯ୍ୟ ଚାଲୁ ରଖୁଥିଲେ । ଛାତ୍ରଅବସ୍ଥାରୁ ନୀଳକଣ୍ଠ ଦୁଃସାହସୀ ଥିଲେ । ଜନସେବାପାଇଁ ସେ କୌଣସି ବନ୍ଧନ ଏବଂ ଆନୁଷ୍ଠାନିକ ଶୃଙ୍ଖଳାକୁ ମଧ୍ୟ ମାନି ପାରୁନଥିଲେ । ନୀଳକଣ୍ଠ ବୃତ୍ତିଭୋଗୀ ଛାତ୍ର ଥିବାରୁ ଅଧ୍ୟକ୍ଷଙ୍କ ବିରାଗଭାଜନ ହେଲେ ତାଙ୍କର ବୃତ୍ତି କଟିଯିବାର ଭୟଥିଲା । କଲେଜରୁ ମଧ୍ୟ ବାହାରିଯିବାର ଦଣ୍ଡ ମିଳିଥାଆନ୍ତା । ତଥାପି ସେ ଜନସେବା କାର୍ଯ୍ୟରେ ଅଟଳ ରହୁଥିଲେ । ଏଥିପାଇଁ କଡ଼ା ପ୍ରିନ୍‌ସିପାଲ୍ ବି. ଭି. ଗୁପ୍ତଙ୍କର ଆଶୀର୍ବାଦ ଲାଭ କରିବା ତାଙ୍କ ପକ୍ଷରେ ସମ୍ଭବ ହୋଇଥିଲା । (୨୪)

(୨୪) "ପ୍ରିନ୍‌ସିପାଲ୍ ଅତି ରୁକ୍ଷସ୍ୱରରେ ମତେ ପଚାରିଲେ, ତୁମେ କୁଆଡ଼େ ଯାଇଥିଲ ? "ମୁଁ କହିଲି, କେନ୍ଦ୍ରାପଡ଼ା, ଯାଜପୁର ଅଞ୍ଚଳରେ ଗଣି ଗଣି ଲୋକେ ବଢିରେ ବୁଡ଼ି ମରିଯାଉଥିଲେ । ମୁଁ ତାଙ୍କୁ ଚୁଡ଼ା ଚାଉଳ ବାଣ୍ଟିବାପାଇଁ ଗୋପବନ୍ଧୁ ଦାସଙ୍କ ସଙ୍ଗେ ଯାଇଥିଲି । ମୁଁ ତ ଆପଣଙ୍କୁ କେନ୍ଦ୍ରାପଡ଼ାଠାରୁ ପୋଷ୍ଟକାର୍ଡ଼ ଲେଖି ଜଣାଇଥିଲି । ଆପଣ ପାଇଥିବେ ! ପ୍ରିନ୍‌ସିପାଲ୍ ଆଗପରି ରୁକ୍ଷ ସ୍ୱରରେ ପୁଣି ପଚାରିଲେ, ଏହିପରି କଣ ଜଣାଇବାକୁ ହୁଏ ? × × × ମୁଁ ହଠାତ୍ କହି ଉଠିଲି, 'ଲୋକେ ଗଣି ଗଣି ମରିଯାଉଥିଲେ ମୁଁ ତ ତାଙ୍କରି ସାହାଯ୍ୟ ପାଇଁ ଯାଇଥିଲି । ଅବସ୍ଥା ବଡ଼ ଜରୁରି, ମୋର ଜଣାଇବାକୁ ବେଳ ନଥିଲା । ମୋର ଆଉ ଚାରା କଣ ଥିଲା ? ପ୍ରିନ୍‌ସିପାଲ୍ କହିଲେ, ତମର ଚାରା ଥିଲା କି ନାଇ, ସମୟ ଥିଲା କି ନାଇ, ଏ କଥା ଆମର ଭାବିବାର ବିଷୟ ନୁହେଁ । ସେଠାରୁ ମୁଁ କହିଲି, "ପ୍ରବୀଣ ବୟସ୍କମାନେ ଏଇପରି କହନ୍ତି । ପିଲାଏ ଏହିପରି ଯାଆନ୍ତି । ମୁଁ କିଛି ଅପକାର୍ଯ୍ୟ କରିବାକୁ ଯାଇନଥିଲି ।" କାହିଁକି କେଜାଣି ବି. ଭି. ଗୁପ୍ତଙ୍କ ପରି ପ୍ରିନ୍‌ସିପାଲ୍ ହଠାତ୍ ଏ କଥାରେ ଖେଁ କରି ହସିଦେଲେ । ମତେ କହିଲେ, "ଦୁଷ୍ଟ ପିଲା, ଯାଅ ଯାଅ ।"

ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମ ଭାଗ—୧୯୬୬-ପୃ-୧୬୩)

ରୋଗୀସେବାରେ ନୀଳକଣ୍ଠଙ୍କର ଆନ୍ତରିକତା ଅତ୍ୟନ୍ତ ଦୁର୍ଲଭ । ସେ ରାତରାତି ବସି ରୋଗୀର ମନରେ ଆଶାର ସଞ୍ଚାର କରୁଥିଲେ ଏବଂ ସେବା କରି ତାକୁ ମରଣଦ୍ୱାରରୁ ଫେରାଇ ଆଣୁଥିଲେ । ଆଜିକାଲି ପରି ଚିକିତ୍ସାବିଜ୍ଞାନ ସେତେବେଳେ ଏତେ ଉନ୍ନତି କରି ନ ଥିଲା । ଗ୍ରାମର ଲୋକମାନେ ଅନ୍ଧବିଶ୍ୱାସର ଶିକାର ହେଉଥିଲେ । ଠାକୁରଠାକୁରାଣୀମାନଙ୍କ ନାମରେ କାଳିସୀମାନେ କୋଳାହଳ ସୃଷ୍ଟି କରି ଲୋକମାନଙ୍କୁ ଆତଙ୍କିତ କରୁଥିଲେ । ନୀଳକଣ୍ଠ ଆବାଲ୍ୟରୁ ଥିଲେ ଏହାର ପ୍ରବଳ ବିରୋଧୀ । ସେ ଧର୍ମଧ୍ୱଜାଧାରୀ ପୁରୋହିତଠାରୁ ଆରମ୍ଭ କରି ତାନ୍ତ୍ରିକମାନ୍ତ୍ରିକମାନଙ୍କର ଅତ୍ୟାଚାରକୁ ପ୍ରତିବାଦ କରି ତାହାର ଅସଲ ସ୍ୱରୂପ ଉଦ୍‌ଘାଟନରେ ସାହାଯ୍ୟ କରୁଥିଲେ । ଏ କ୍ଷେତ୍ରରେ ସେ ଥିଲେ ଚରମ ବିପ୍ଳବୀ । ସମାଜପତିମାନଙ୍କର ନାଲିଆଖି ଓ ଅତ୍ୟାଚାରକୁ ଭ୍ରୂକ୍ଷେପ ନକରି ସେ ଜନସେବାକାର୍ଯ୍ୟରେ କିଏ କାର ଚିନ୍ତାରେ ଅଗ୍ରସର ହୋଇପାରିଥିଲେ । ୧୯୨୦ ଖ୍ରୀଷ୍ଟାବ୍ଦରେ କମାପଡ଼ାର 'ଡଭର' ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ିଥିଲା । ନଅଙ୍କ ଦୁର୍ଭିକ୍ଷ ପରି ଏହା ଥିଲା ଅତ୍ୟନ୍ତ ଭୟଙ୍କର । ଏପରି ପ୍ରାକୃତିକ ବିପତ୍ତି ଓଡ଼ିଶାବାସୀଙ୍କ ଭାଗ୍ୟରେ ଖୁବ କମ ଆସିଥାଏ । ଏହି ବିପଦର ମୁକାବିଲା କରିଥିଲେ ପଣ୍ଡିତ ନୀଳକଣ୍ଠ ସେବାକାର୍ଯ୍ୟରେ ନେତୃତ୍ୱ ପ୍ରଦାନ କରି । ନୀଳକଣ୍ଠଙ୍କ ସୁଯୋଗ୍ୟ ପୁତ୍ର ଡାକ୍ତର ବିକ୍ରମ ଦାସ 'ଡଭର'ର ରୂପ ପ୍ରବନ୍ଧରେ ସେହି ସ୍ମୃତିର ଉଦ୍‌ଘାଟନ କରିଛନ୍ତି ।

"ଦୁର୍ଭିକ୍ଷ ପଡ଼ିଲା—ଡଭର ଦୁର୍ଭିକ୍ଷ—ନଅଙ୍କ ଦୁର୍ଭିକ୍ଷର ପୁନରାବୃତ୍ତି । ନୀଳକଣ୍ଠ ସତ୍ୟବାଦୀ ସ୍କୁଲରୁ ପିଲାଙ୍କୁ ଧରି ଚାଉଳ, ଚୁଡ଼ା, ମୁଢ଼ି, ଓ କିଛି ଔଷଧ ନେଇ ଡ଼ଭର ଗଲେ । ଅଦ୍ଭୁତ ଭାବରେ ମାସମାସ ଧରି ଚୁଡ଼ା, ଚାଉଳ ବାଣ୍ଟିଲେ । ଥରେ ମୁଢ଼ି ଦେବାପାଇଁ ପିଲାଙ୍କୁ ଧାଡ଼ି ହୋଇ ବସିବାକୁ କହିଲେ । ଅସ୍ଥିଚର୍ମସାର ବୁଢ଼ୀପରି ମାଇପିଟିଏ ସେଇ ଧାଡ଼ିରେ ଆସି ବସିଲା । ସେ ତାକୁ କହିଲେ 'ବୁଢ଼ୀ ରୁ ଏଠୁ ଉଠ, ବଳିଲେ ତତେ ଦେବ, ଏପର୍ ପିଲାଙ୍କ ପାଇଁ ଦିଆ ହେଉଛି ।' ସଙ୍ଗେ ସଙ୍ଗେ କେତେକ ଗ୍ରାମବାସୀ କହି ଉଠିଲେ 'ଆଜ୍ଞା ସେ ତ ପିଲାଟାଏ —ଆପଣ ତାକୁ ଉଠାନ୍ତୁ ନାହିଁ ।

ଦୁର୍ଭିକ୍ଷ ଗଲା । ଫସଲ ହେଲା । ଦୁଇବର୍ଷ ପରେ ପୂର୍ଣ୍ଣ ସ୍ୱାସ୍ଥ୍ୟ ନେଇ ସେ ଝିଅଟି ବିବାହ କରି ଶାଶୁ ଘରକୁ ଗଲା । ଏହି ସମୟରେ ପଣ୍ଡିତ ନୀଳକଣ୍ଠ ସେ ଅଞ୍ଚଳକୁ ଯାଇଥିବା ବେଳେ ଯୁବତୀଟି ଆସି ତା ଜୀବନଦାତାଙ୍କ ଗୋଡ଼ତଳେ ପଡ଼ି ଆଶୀର୍ବାଦ ଭିକ୍ଷା କଲା । ଡ଼ଭର ଗାଁର ସେଇ ଅସ୍ଥିକଙ୍କାଳ ଝିଅଟି ବୋଲି ଜାଣି ନୀଳକଣ୍ଠଙ୍କ ଆଖିରୁ ବୋହିପଡ଼ିଲା ଦୁଇଧାର ଅଶ୍ରୁ ।" (୨୫)

(୨୫)—ନୀଳକଣ୍ଠ ସ୍ମାରକୀ—୧୯୮୦—ପୃ ୫୫

ନୀଳକଣ୍ଠଙ୍କ ବିଶାଳ ବ୍ୟକ୍ତିତ୍ୱ ନିକଟରେ ସାଧାରଣଲୋକ କାହିଁକି ବୁଦ୍ଧିଜୀବୀଙ୍କର ମଧ୍ୟ ଆଖି ପାଉ ନଥିଲା । ପଣ୍ଡିତଜୀ ଯାହା କହୁଥିଲେ ବା ଆଲୋଚନା କରୁଥିଲେ ପ୍ରାୟ ସମସ୍ତେ ବେଦର ଗାର ବୋଲି ଗ୍ରହଣକରି ନେଉଥିଲେ । ଯଦି ବା କାହାର କୌଣସି କିନ୍ତୁ କିନ୍ତୁ ଭାବନା ଆସିଥିଲା, ସେ ଭରସି କରି କହିପାରୁ ନ ଥିଲା । କାରଣ ତାଙ୍କର ଅଗାଧ ପାଣ୍ଡିତ୍ୟ ଏବଂ ଅସୁମାରି ଅନୁଭୂତି ନିକଟରେ ଅନ୍ୟମାନେ ଅତ୍ୟନ୍ତ ମ୍ଳାନ ହୋଇଯାଉଥିଲେ । ମାତ୍ର ପଣ୍ଡିତ ନୀଳକଣ୍ଠଙ୍କ ନିକଟରେ ପାଣ୍ଡିତ୍ୟର ସ୍ୱାଭିମାନ ଥିଲା ସତ୍ୟ, ସେ କିନ୍ତୁ ଅହଂକାରୀ କିମ୍ବା ଅଜ୍ଞାନୁସାରୀ ନ ଥିଲେ । ସେ ଯାହା ଲେଖୁଥିଲେ ତାହା ଅନ୍ୟମାନଙ୍କୁ ସର୍ବଦା ପଢ଼ି ଶୁଣାଉଥିଲେ । କେହି କିଛି ମତାମତ ବ୍ୟକ୍ତ କଲେ ନୀଳକଣ୍ଠ ସଙ୍ଗେ ସଙ୍ଗେ ବିଚାର ଆଲୋଚନା କରି ତାହାର ପରିବର୍ତ୍ତନ କରିଦେଉଥିଲେ । ତାଙ୍କର ଧାରଣା ଥିଲା ଯେ ସେ ନିଜ ପାଇଁ କହୁନାହାନ୍ତି କି ଲେଖୁ ନାହାନ୍ତି ସେ ଅନ୍ୟପାଇଁ ପ୍ରକାଶ କରି ଚାଲିଛନ୍ତି । ଲୋକେ ସେମାନେ ଯେପରି ଗ୍ରହଣ କରିବେ ଏଥିରେ ତାଙ୍କର ଯତ୍ନର ଅଭାବ ନ ଥିଲା । ଅନ୍ୟଠାରୁ ଗ୍ରହଣ କରିବାରେ ତାଙ୍କର ଉଦାରତାର ତୁଳନା ନାହିଁ । ଏ କ୍ଷେତ୍ରରେ ସେ ଥିଲେ ନମ୍ରତାର ଅବତାର ଯାହା ତାଙ୍କ ପରି ପଣ୍ଡିତଜନଙ୍କ ପାଖରେ ଦୁର୍ଲଭ କହିଲେ ଚଳେ । କେହି କୌଣସି କ୍ଷେତ୍ରରେ ତାଙ୍କର ତ୍ରୁଟି ଦର୍ଶାଇଦେଲେ ସେ ଅତ୍ୟନ୍ତ ଆନନ୍ଦ ମନରେ ତାହା ଗ୍ରହଣ କରି ନେଉଥିଲେ । (୨୬) କିଛି ନୂଆ କଥାଟିଏ, ସେ କାହାରିଠାରୁ ଶୁଣିଲେ ପିଲାଙ୍କ ପରି ପଚାରି ବସୁଥିଲେ । ମଲାପର୍ଯ୍ୟନ୍ତ ତାଙ୍କର ଏପରି ଜାଣିବାର ସ୍ପୃହା ଲାଗି ରହିଥିଲା ।

---

(୨୬) —"ପୁରୀ ସାମନ୍ତଚନ୍ଦ୍ରଶେଖର କଲେଜହଲରେ ପଣ୍ଡିତ ନୀଳକଣ୍ଠଙ୍କ ଭାଷଣ । ବକ୍ତୃତା ପ୍ରସଙ୍ଗରେ ପଣ୍ଡିତଜୀ ପାଣିନିଙ୍କ ଗୋଟିଏ ସୂତ୍ରର ବିଶ୍ଳେଷଣ କଲେ । ସଭାକକ୍ଷ ପଣ୍ଡିତମଣ୍ଡଳୀରେ ପରିପୂର୍ଣ୍ଣ । ସଭା ଶେଷ ହେଲା ପରେ ଦୁଇଚାରିଜଣ ଶ୍ରୋତା ତାଙ୍କୁ ଅତିଥି ଭବନରେ ଯାଇ ସାକ୍ଷାତ କଲେ । ଏମାନଙ୍କ ମଧ୍ୟରେ ଥିଲେ ଓଡ଼ିଶାର ଜଣେ ବିଶିଷ୍ଟ ପଣ୍ଡିତ ସ୍ୱର୍ଗତ ସଦାଶିବ ଦାସଶର୍ମା । ସେ କହିଲେ; ବକ୍ତୃତା ଖୁବ ଉଚ୍ଚକୋଟୀର ହେଲା । କିନ୍ତୁ ଗୋଟିଏ ଦୁଇଟି ଭୁଲକଥା ଆପଣ କହିଲେ । ସଭାରେ ଏ ଭୁଲ ପ୍ରତି ଦୃଷ୍ଟି ଆକର୍ଷଣ କରିବା ଠିକ୍ ହୋଇ ନ ଥାନ୍ତା ବୋଲି ଏଠାକୁ ସାକ୍ଷାତ କରିବା ପାଇଁ ଆସିଲି । ପଣ୍ଡିତ ନୀଳକଣ୍ଠ ନିଜର ଗୋଟିଏ ଦୁଇଟି ଭୁଲ କଥା ଶୁଣିଲେ ଏବଂ କହିଲେ—"ସଦାଶିବ ଦାସ ଯଦି ଭୁଲ ବୋଲି କହୁଛନ୍ତି ତା'ହେଲେ ମୁଁ ଆଉ କେଉଁଠି ଏ ଭୁଲ କଥା କହିବି ନାହିଁ ।" (ନୀଳକଣ୍ଠ ସ୍ମାରକୀ—୧୯୮୦—ପଣ୍ଡିତ ନୀଳକଣ୍ଠଙ୍କ ମହାନୁଭବତା—ଡ. ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ—ପୃ ୬୦—୬୧)

ଜୀବନଚାଯାକ ପଣ୍ଡିତ ନୀଳକଣ୍ଠ ରାଜନୀତିରେ ବୁଡ଼ି ରହିଥିଲେ । ତେଣୁ ଘଟଣାପ୍ରବାହରେ ବହୁଲୋକଙ୍କ ସହିତ ତାଙ୍କର ମନର ଅମେଳ ଏବଂ କାର୍ଯ୍ୟକ୍ଷେତ୍ରରେ ବିରୋଧ ହେବା ସ୍ୱାଭାବିକ । ଏଥିପାଇଁ ଜୀବନରେ ସେ ବହୁବାର ଅପଦସ୍ତ ହୋଇଛନ୍ତି, ବଦନାମ ସହିଛନ୍ତି ଏବଂ ଆର୍ଥିକ ଓ ସାମାଜିକ ଦୁର୍ଗତିର ମଧ୍ୟ ବାରମ୍ବାର ସମ୍ମୁଖୀନ ହୋଇଛନ୍ତି । ତଥାପି କାହାରି ପ୍ରତି ବ୍ୟକ୍ତିଗତ ଭାବରେ ତାଙ୍କର ଅସୂୟା ନ ଥିଲା । ସେ ଖେଳୁଆଡ଼ମନୋଭାବ ନେଇ ରାଜନୈତିକ ପ୍ରାଙ୍ଗଣରେ ଅବତୀର୍ଣ୍ଣ ହୋଇଥିଲେ । ହାରଜିଣା ତ ସାଧାରଣ କଥା । ମଣିଷକୁ ସେ କେବେହେଲେ ଭୁଲ ବୁଝୁ ନ ଥିଲେ । ସରଳ ବିଶ୍ୱାସରେ ନିର୍ଭର କରି ବାରମ୍ବାର ସେ ଠକିଯାଇଛନ୍ତି ସିନା ମଣିଷପ୍ରତି ତାଙ୍କର ସ୍ନେହ ଓ ବିଶ୍ୱାସ କେବେହେଲେ ତୁଟି ନ ଥିଲା । ଏହିପରି ରାଜନୈତିକ ପ୍ରତିଦ୍ୱନ୍ଦୀଗଣ ଯେଉଁମାନେ ତାଙ୍କର ନାନାଭାବରେ କ୍ଷତି କରିଥିବାର ସେ ଜାଣନ୍ତି, ଅନ୍ୟ ସମୟରେ ସେମାନେ ଆସି ତାଙ୍କଠାରୁ ଆର୍ଥିକ ସାହାଯ୍ୟ ଗ୍ରହଣ କରିଛନ୍ତି । ପାଖଲୋକେ ବାରଣ କରିଥିଲେ ହେଁ, ସେହି ଭଦ୍ରଲୋକଙ୍କର ଅପକର୍ମ ସମ୍ପର୍କରେ ସ୍ମରଣ କରାଇ ଦେଇଥିଲେ ହେଁ ପଣ୍ଡିତ ନୀଳକଣ୍ଠ ନିର୍ବିକାର ଚିତ୍ତରେ ସେ ଅପରାଧୀ ବନ୍ଧୁଙ୍କୁ ସାହାଯ୍ୟ କରିଛନ୍ତି । ଏ କ୍ଷେତ୍ରରେ ସେ ସଦାଶିବ ଥିଲେ ବୋଲି ସ୍ୱୀକାର କରିବାକୁ ହେବ । ବାହ୍ୟତଃ ସେ ଅତ୍ୟନ୍ତ ରୁକ୍ଷ ଓ କଠୋର ଥିଲେ ବୋଲି ତାଙ୍କୁ ଅନେକେ ଉତ୍କଳର ଦୁର୍ବାସା ବୋଲି ନାମିତ କରିଥିଲେ । ମାତ୍ର ଏହି ରୁକ୍ଷ ବହିରାବରଣ ତଳେ କରୁଣାର, ସମ୍ବେଦନଶୀଳତାର, ପ୍ରେମାନୁଭୂତିର ଏକ ନିରବଚ୍ଛିନ୍ନ ଫଲ୍ଗୁ ପ୍ରବାହିତ ହେଉଥିଲା । ସେ ସିନା କାହାର ଶତ୍ରୁ ହୋଇଥିବେ, ତାଙ୍କର କେହି ପ୍ରକୃତପକ୍ଷେ ଶତ୍ରୁ ନଥିଲେ । (୬୭) ତାଙ୍କ ପାଖରେ ଆପଣାପର ଭେଦଭାବ ନ ଥିଲା । ସେ ଥିଲେ ଖାଣ୍ଟି ମଣିଷଟିଏ । ସେ ମଣିଷକୁ ଭଲପାଇ ଶିଖିଥିଲେ । ମଣିଷର ସେବା କରିବାପାଇଁ ଜୀବନରେ ବ୍ରତ ଗ୍ରହଣ କରିଥିଲେ । ମଣିଷ ଭିତରେ ହିଁ ସେ ଦେଖିଥିଲେ ବ୍ରହ୍ମର ସ୍ୱରୂପ । କୌଣସି ମନ୍ଦିର ଓ ପ୍ରତିମାପୂଜାକୁ ସେ ଗ୍ରହଣ କରିଆନ୍ତେ ଅବା କାହିଁକି ? ସେ ବୃଦ୍ଧ ବୟସରେ ମଧ୍ୟ ତାରୁଣ୍ୟର ଉପାସନା କରି ଚାଲିଥିଲେ । ତାଙ୍କ ନିକଟରେ ଯୁବକ ହିଁ ଥିଲା ଦେଶର ଓ ସମାଜର ମୂଳପିଣ୍ଡ । ସର୍ବଦା ବିପ୍ଲବୀ ଯୁବକମାନଙ୍କ ଗହଣରେ ସେ ଆଲୋଚନା କରିବାକୁ ସୁଖ ମଣୁଥିଲେ । ସେମାନଙ୍କ ମତାମତ ତାଙ୍କପାଇଁ ଥିଲା ଅତ୍ୟନ୍ତ ମୂଲ୍ୟବାନ । କେହି ଯଦି ନାପସନ୍ଦ କରି କିଛି କଥା ଯୁବକମାନଙ୍କୁ ଆକ୍ଷେପ କରି କହୁଥିଲା, ସେ ଏକମତ ହୋଇପାରୁ ନ ଥିଲେ । ସେ ବିଶ୍ୱାସ କରୁଥିଲେ ଯୁବକମାନେ ହିଁ ଅଗ୍ନିପିଣ୍ଡ । ସେଇମାନେ ହିଁ ବିପ୍ଲବ କରନ୍ତି । ଯାବତୀୟ ପରିବର୍ତ୍ତନ ସେଇମାନଙ୍କ ଦ୍ୱାରା କେବଳ ସମ୍ଭବ ହୋଇଥାଏ ।

(୬୭) —ନୀଳକଣ୍ଠ ସ୍ମାରକୀ—୧୯୮୦—ପୃ ୭୧

ଜୀବନର ଅଧିକାଂଶ ସମୟ ସେ ରାଜଧାନୀ ଦିଲ୍ଲୀରେ ବିତାଇଥିଲେ । ରାଜନୀତିକ ଜୀବନର ଅନୁରୋଧରେ ନୀଳକଣ୍ଠଙ୍କୁ ସର୍ବଦା ନଗରମଧ୍ୟରେ ହିଁ ଅବସ୍ଥାନ କରିବାକୁ ପଡ଼ୁଥିଲା । ମାତ୍ର ସେ ପ୍ରାଣରେ ଓ ମନରେ ଥିଲେ ଅତ୍ୟନ୍ତ ଗାଉଁଲି । ନିଜର ପ୍ରିୟ ଗ୍ରାମବାସୀ ଏବଂ ପଲ୍ଲୀର ପରିବେଶକୁ ସେ ଆଦୌ ଭୁଲିପାରିନଥିଲେ । ଆଜୀବନ ଅଭିଜାତ ଗୋଷ୍ଠୀ ମେଳରେ ଜୀବନ ଅତିବାହିତ କରି ସୁଦ୍ଧା କେତେ ନିର୍ମଳ ମନରେ ସେ ଗ୍ରାମର ଦରିଦ୍ର ମଳିମୁଣ୍ଡିଆଙ୍କ ସହିତ ମିଶି ଯାଇପାରୁଥିଲେ, ତାହା ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଏ ବିଷୟରେ ତାଙ୍କର କୌଣସି ପରଆପଣା ଭାବ ନଥିଲା । କୌଣସି ପାରିବାରିକ ନିମନ୍ତ୍ରଣ ଆସିଲେ ସେ ଗରିବ ଗ୍ରାମବାସୀ ଘରକୁ ପ୍ରଥମେ ଯିବାପାଇଁ ପୁତ୍ରମାନଙ୍କୁ ଆଦେଶ ଦେଉଥିଲେ । ସେ ଯେ ଜଣେ ଭାରତ ବିଖ୍ୟାତ ପାର୍ଲିଆମେଣ୍ଟାରିଆନ ଓ ଓଡ଼ିଶା ରାଜନୀତିର ମୁଖ୍ୟ କର୍ଣ୍ଣଧାର, ଏପରି ଧାରଣା ତାଙ୍କ ସହିତ ମିଶୁଥିବା ଗ୍ରାମଲୋକେ ଆଦୌ କ୍ଷଣକପାଇଁ ଭାବିପାରୁ ନଥିଲେ । ଏ ସମ୍ପର୍କରେ ତାଙ୍କର ପୁତ୍ର ଶ୍ରୀ ବିକ୍ରମ ଦାସଙ୍କ ସ୍ମୃତିଚାରଣ ଅତ୍ୟନ୍ତ ଉପଭୋଗ୍ୟ ହୋଇଥାଏ । (୨୮)

ପଣ୍ଡିତ ନୀଳକଣ୍ଠ ଥିଲେ ଏକ ଅଦ୍ଭୁତକର୍ମା ବ୍ୟକ୍ତିତ୍ୱ । ତାଙ୍କ ପରି ପଣ୍ଡିତ ସେ ସମୟରେ ଖୁବ୍ କମ୍ ଥିଲେ । ମାତ୍ର ଆଚରଣରେ ସେ ଥିଲେ ଅତ୍ୟନ୍ତ ସରଳ । ପିଲାଙ୍କ ପରି ସେ ଜାଣିବା ପାଇଁ ଆଗେଇ ଆସୁଥିଲେ । ଭାରତର ଶ୍ରେଷ୍ଠ ନଗରଗୁଡ଼ିକ ଥିଲା ତାଙ୍କର ରାଜନୀତିର କେନ୍ଦ୍ରସ୍ଥଳ । ନଗରଜୀବନର ସମସ୍ତ

---

(୨୮) ନନା ଅଧିକାଂଶ ସମୟରେ ଗାଁ ବାହାରେ ରହିବାକୁ ବାଧ୍ୟ ହେଉଥିଲେ । ପ୍ରାୟ ୨୦ ବର୍ଷକାଳ ଦିଲ୍ଲୀ ବଡ଼ଲାଟ ସଭାରେ ସେତେବେଳର ବିରୋଧି ଦଳ କଂଗ୍ରେସର ସେକ୍ରେଟାରୀ ଭାବରେ ଇଂରେଜମାନଙ୍କ ସଙ୍ଗେ ଲଢ଼ୁଥିଲେ ଓ ଓଡ଼ିଶା ରାଜନୀତିର ମଧ୍ୟ କର୍ଣ୍ଣଧାର ଥିଲେ । ତଥାପି ସେ ନିଜ ଗାଁକୁ ଭୁଲିପାରୁ ନଥିଲେ । × × × ସେ ସବୁବେଳେ ନିଜକୁ ଜଣେ କୃଷୀ ଓ ଗାଉଁଲିଲୋକ ବୋଲି ମନେ କରୁଥିଲେ । ରାତିଅଧରେ ଆସି ଗାଁରେ ପହଞ୍ଚିଗଲେ ମଧ୍ୟ ଲୁଣ୍ଗିଟିଏ ଧରି କାନ୍ଧରେ ଗାମୁଛାଟିଏ ପକାଇ ଗାଁର ଏମୁଣ୍ଡ ସେମୁଣ୍ଡ ଥରେ ବୁଲି ଆସନ୍ତି । ତାଙ୍କ ପାଟି ଶୁଣିଲେ ନିଦରୁ ଉଠି ଲୋକମାନେ ଆସି ଜୁଟି ଯାଆନ୍ତି । ସେ ମଣ୍ଡପ ଓ ଚଉରାମୂଳେ ବସି ଗାଁ ଲୋକଙ୍କର ଦୁଃଖସୁଖ ସବୁ ତନ୍ନତନ୍ନ କରି ବୁଝନ୍ତି । ଗାଁର ଥଟ୍ଟାଥଟ୍ଟେଇକୁ ଖୁବ୍ ଭଲପାଆନ୍ତି । ଗାଁରେ ପହଞ୍ଚିଗଲେ ତାଙ୍କ ଚିନ୍ତା ଓ ଭାବନାବହୁଳ ମସ୍ତିଷ୍କର ଭାର ଲଘୁ ହୋଇଯାଏ ।''

(ନୀଳକଣ୍ଠ ସ୍ମରଣିକା—୧୯୬୯ ପିତୃସ୍ମୃତି—ବିକ୍ରମଦାସ ପୃ—୧୧୩)

ଐଶ୍ୱର୍ଯ୍ୟ ସେ ଉପଭୋଗ କରୁଥିଲେ ଅଥଚ ତାଙ୍କପରି ଗାଉଁଲି ଲୋକ ଗଣି ହୋଇ ଯାଉଥିଲେ । ସେ ବିଶ୍ୱାସ କରୁଥିଲେ ଗାଁ ହେଉଛି ଭାରତୀୟ ଜୀବନର ମୂଳପିଣ୍ଡ । ଏଇଠାରେ ସେ ତାଙ୍କର ଆଦ୍ୟ ଯୌବନରେ ଆଦର୍ଶ ଶିକ୍ଷାନୀତିର ପରୀକ୍ଷା କରିଥିଲେ । ଏଇପରି ନିରଳସ ପଲ୍ଲୀକୋଳରେ ଅପୂର୍ବ ତ୍ୟାଗପୂତ ଜୀବନର ସାଧନା କରି ସେ ପ୍ରମାଣ କରିଦେଇଥିଲେ ଯେ ବ୍ୟକ୍ତିତ୍ୱର ବିକାଶ ପାଇଁ କେବଳ ନାଗରିକ ପରିବେଶ ଅପରିହାର୍ଯ୍ୟ ନୁହେଁ ।

ସବୁଠାରୁ ପ୍ରଧାନ କଥା ଥିଲା ତାଙ୍କର ଓଡ଼ିଆମି । ସେ ଥିଲେ କାୟମନୋବାକ୍ୟରେ ଖାଣ୍ଟି ଓଡ଼ିଆ । ଓଡ଼ିଆ ଜାତିର ଐତିହ୍ୟ ଓ ପରମ୍ପରା ପ୍ରତି ତାଙ୍କର ମମତାବୋଧ ଥିଲା ଅତ୍ୟନ୍ତ ନିବିଡ଼ । ସେ ପ୍ରତିମାପୂଜାର ବିରୋଧୀ ଥିଲେ । ମାତ୍ର ଜଗନ୍ନାଥଙ୍କ ମୈତ୍ରୀଧର୍ମର ଆଦର୍ଶରେ ସେ ଆଜୀବନ ଦୀକ୍ଷିତ ହୋଇଥିଲେ । ସେ ବିଶ୍ୱାସ କରୁଥିଲେ ବିଶ୍ୱ ସଂସ୍କୃତିକୁ କଳିଙ୍ଗର ଜଗନ୍ନାଥ ସଂସ୍କୃତିର ଯଥେଷ୍ଟ ଅବଦାନ ରହିଛି ।

ତାଙ୍କପରି ଜଣେ ଦେଶପ୍ରେମୀ ଓ ସଂସ୍କୃତିପ୍ରେମୀ ବ୍ୟକ୍ତି କ୍ୱଚିତ ଦେଖିବାକୁ ମିଳନ୍ତି ।

ଜାତୀୟ ଆନ୍ଦୋଳନ ଯୋଗୁ ସେ ବାରମ୍ବାର ଜେଲ ବରଣ କରିଥିଲେ । ବକୁଲବନର ବନବିଦ୍ୟାଳୟ ମାଟିରେ ମିଶିଗଲା । ତାହାର ଯୋଗ୍ୟ ଶିକ୍ଷକ-କର୍ମୀଗଣ ନୀଳକଣ୍ଠଙ୍କ ନେତୃତ୍ୱରେ ଗୋପବନ୍ଧୁଙ୍କ ମହାନ ପ୍ରେରଣାରେ ସ୍ୱାଧୀନତା ସଂଗ୍ରାମରେ ଝାସଦେଇ ପ୍ରମାଣ କରିଦେଲେ ଯେ ସେମାନେ ମହାନ ବିପ୍ଳବୀ । ମିଃ ଦାସଙ୍କ ନେତୃତ୍ୱରେ ସ୍ୱତନ୍ତ୍ର ଉତ୍କଳପ୍ରଦେଶ ପାଇଁ ଯେଉଁ ଆନ୍ଦୋଳନ ଲାଗିରହିଥିଲା, ନୀଳକଣ୍ଠଙ୍କର ଅବଦାନ ସେଥିରେ ଥିଲା ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । ନୀଳକଣ୍ଠ ୧୯୨୦ ସାଲରେ କଲିକତା ବିଶ୍ୱବିଦ୍ୟାଳୟର କୁଳପତି ଆଶୁତୋଷ ମୁଖାର୍ଜୀଙ୍କ ଶୁଭଦୃଷ୍ଟିରେ ପଡ଼ିଲେ । ସେ ବିଚାରିଲେ ଯେ ଓଡ଼ିଆ ଭାଷା ଓ ସାହିତ୍ୟର ଅଧ୍ୟାପନା ଓ ଗବେଷଣା ପାଇଁ ଯଦି କଲିକତା ବିଶ୍ୱବିଦ୍ୟାଳୟ କାର୍ଯ୍ୟ ଆରମ୍ଭକରେ ତେବେ ଏଥିପାଇଁ ସୁଯୋଗ୍ୟ କର୍ମୀ ହେବେ ନୀଳକଣ୍ଠ । ସେ ତାଙ୍କୁ ପ୍ରଥମ ଓଡ଼ିଆ ଅଧ୍ୟାପକର ସମ୍ମାନ ପ୍ରଦାନ କରି ନିଯୁକ୍ତ କଲେ । ମାତ୍ର ସ୍ୱାଧୀନତା ଆନ୍ଦୋଳନର ଆହ୍ୱାନ ନୀଳକଣ୍ଠଙ୍କ ବିଶ୍ୱବିଦ୍ୟାଳୟ ସୀମା ମଧ୍ୟରେ ଆବଦ୍ଧ ରଖି ପାରିଲାନାହିଁ । ସେ ସମ୍ବଲପୁରରେ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଥମେ ପ୍ରଚାର କଲେ । ତାଙ୍କର ନେତୃତ୍ୱରେ 'ସେବା' ନାମକ ଏକ ସାପ୍ତାହିକ ପତ୍ରିକା କଂଗ୍ରେସର ଅସହଯୋଗବାର୍ତ୍ତା ପ୍ରଚାର କରୁଥିଲା, ନୀଳକଣ୍ଠ ସେତେବେଳେ ଏକ ଆହ୍ୱାନ ଦେଇଥିଲେ—"ସ୍ୱରାଜ ଭାଇସା ଅଲବତ୍ତ

ହୋଗା ଗ୍ରେଡ଼କେ ଆଓ ଗୋଲାମୀ", ସମ୍ବଲପୁରର ଘରେ ଘରେ ଚହଲ ପଡ଼ି ଯାଇଥିଲା ।

ଅକାଳରେ ଗୋପବନ୍ଧୁ ଇହ ସଂସାରରୁ ବିଦାୟ ନେଲେ । ସେତେବେଳେ କୁଳବୃଦ୍ଧ ମଧୁସୂଦନ ଜୀବନର ଶେଷପାହାଚରେ ଉପବେଶନ କରିଥାଆନ୍ତି । ମଧୁସୂଦନ ଓ ଗୋପବନ୍ଧୁଙ୍କର ଉପଯୁକ୍ତ ଦାୟାଦ ଥିଲେ ନୀଳକଣ୍ଠ । ତାଙ୍କ ଉପରେ ଦେଶର ନେତୃତ୍ୱର ଦାୟିତ୍ୱ ଆପେଆପେ ଆସି ପଡ଼ିଥିଲା । ସେ ଦୀର୍ଘକାଳ ଧରି ଉତ୍କଳ କଂଗ୍ରେସର ମୁଖ୍ୟ ଭାବରେ ସୁଚାରୁରୂପେ ପରାଧୀନ ଭାରତରେ ଦାୟିତ୍ୱ ତୁଲାଇ ଆସିଥିଲେ । ଜଣେ ସୁଦକ୍ଷ ପାର୍ଲିଆମେଣ୍ଟାରିଆନ ହିସାବରେ ସେ ଥିଲେ ଅଦ୍ୱିତୀୟ । କେନ୍ଦ୍ର ଆସେମ୍ବ୍ଲିରେ ତାଙ୍କ ପରି ଓଡ଼ିଆ ଆଉ କେହି ନଥିଲେ । ଭାରତରେ ମଧ୍ୟ ଏପରି ପ୍ରତିଭାବାନ ପୁରୁଷ ଖୁବ୍ କମ୍ ଥିଲେ ।

ରାଜନୈତିକ ଝଡ଼ଝଞ୍ଜା ମଧ୍ୟରେ ସେ କେତେବେଳେ କେଉଁଠି ଅବସ୍ଥାନ କରନ୍ତୁ ନା କାହିଁକି, ତାଙ୍କର ପ୍ରଚଣ୍ଡ ବ୍ୟକ୍ତିତ୍ୱ ସର୍ବଦା ଥିଲା ଜାଜ୍ଜ୍ୱଲ୍ୟମାନ । ରାଜନୀତି ସହିତ ସାହିତ୍ୟସେବାକୁ ମଧ୍ୟ ସେ ଆପଣାର ଏକ ଧର୍ମରୂପେ ବରଣ କରିନେଇଥିଲେ । ଏ କ୍ଷେତ୍ରରେ ସେ ଥିଲେ ଅବିସ୍ମରଣୀୟ, ଅନନୁକରଣୀୟ, ସ୍ୱତନ୍ତ୍ର ମର୍ଯ୍ୟାଦାରେ ମହିମାମଣ୍ଡିତ ।



# ସଂସ୍କାରକ ନୀଳକଣ୍ଠ

ଓଡ଼ିଶାର ଇତିହାସରେ ଊନବିଂଶ ଶତାବ୍ଦୀର ଚଳଚଞ୍ଚଳତା ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । ଦୀର୍ଘକାଳର ମୁସଲମାନ ରାଜତ୍ୱ ଏବଂ ମରହଟ୍ଟା ରାଜତ୍ୱ ପରେ ଓଡ଼ିଶାର ଲୋକେ ଇଂରେଜ ଅଧୀନରେ ବସବାସ କଲେହେଁ ଇଂରେଜୀ ଶିକ୍ଷା, ଖ୍ରୀଷ୍ଟଧର୍ମ ପ୍ରଚାର ଏବଂ ପାଶ୍ଚାତ୍ୟ ବୈଜ୍ଞାନିକ ଅନୁଭୂତିର ସ୍ୱାଦ ଜନମାନସରେ ଅଭାବନୀୟ ପରିବର୍ତ୍ତନ ପାଇଁ ଉପାଦାନ ଯୋଗାଉଥିଲା । କାଳକାଳ ଧରି ପରାଧୀନ ସମାଜ ଥିଲା ହୀନପ୍ରଭ, ଅଥର୍ବ ଏବଂ ନାନା କୁସଂସ୍କାର ଓ ଅନ୍ଧବିଶ୍ୱାସର ଅଧୀନ । ନୂତନ ଇଂରେଜୀ ଶିକ୍ଷାକୁ ସମାଜର ପ୍ରଭାବଶାଳୀ ବ୍ରାହ୍ମଣମାନେ ସ୍ୱାଗତ କରିପାରି ନଥିଲେ । ୧୮୫୭-୫୮ ଖ୍ରୀଷ୍ଟାବ୍ଦରେ ଇନ୍‌ସ୍ପେକ୍ଟର ଡକ୍ଟର ରୋର୍ ପୁରୀ ଜିଲ୍ଲା-ସ୍କୁଲକୁ ଲକ୍ଷ୍ୟ କରି ମନ୍ତବ୍ୟ ପ୍ରଦାନ କରିଥିଲେ ଯେ ଇଂରେଜୀ ପାଠ ପଢ଼ିଲେ ବ୍ରାହ୍ମଣମାନଙ୍କର ସମାଜରୁ ପ୍ରଭାବ କମିଯିବ ଏବଂ ସେମାନେ ତାଙ୍କର ଚିରାଚରିତ ଆୟ ମଧ୍ୟ ହରାଇ ବସିବେ । କଲିକତାଆଗତ ବଙ୍ଗାଳୀ ଅମଲାମାନଙ୍କର ପିଲାମାନେ ଏବଂ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିବା ପରିବାରର ଲୋକେ କେବଳ ପାଠ ପଢ଼ିବା ପାଇଁ ଆଗ୍ରହୀ ହେଉଥିଲେ । ଯେଉଁ ବ୍ରାହ୍ମଣ ପିଲାମାନେ ସେ କାଳରେ ଇଂରେଜୀ ପାଠ ପଢ଼ିବାପାଇଁ ଆଗେଇ ଆସିଥିଲେ ସେମାନଙ୍କୁ ନାନା ସାମାଜିକ ଅତ୍ୟାଚାର ଓ ଲାଞ୍ଛନା ସହ୍ୟକରିବାକୁ ହୋଇଥିଲା । ୧୮୭୦ ସାଲଠାରୁ ଓଡ଼ିଶାରେ ବ୍ରାହ୍ମଧର୍ମର ପ୍ରଚାର ଆରମ୍ଭ ହୁଏ । ବ୍ରାହ୍ମସମାଜର ସଭ୍ୟମାନେ ସଂସ୍କାରପ୍ରେମୀ ଥିଲେ । ସେମାନେ ବ୍ୟକ୍ତିଗତ ଜୀବନରେ ଚାରିତ୍ରିକ ନିଷ୍ଠା ପ୍ରତି ଯତ୍ନବାନ ହେବା ସଙ୍ଗେ ସଙ୍ଗେ ଦେଶରେ ପ୍ରଚଳିତ ନାନା କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥିଲେ । ସେତେବେଳେ ପ୍ରଧାନ ସମସ୍ୟା ଥିଲା ସତୀଦାହ ପ୍ରଥା, ବିଧବା ବିବାହ, ବାଲ୍ୟ ବିବାହ, କାଳେସୀ ପ୍ରଥା ଏବଂ ଧର୍ମନାମରେ ଲୋକାଚାରରେ ପ୍ରଚଳିତ ବହୁ ପ୍ରକାରର ଭଣ୍ଡାମି ।

ଇଂରେଜ ଅମଳରେ ଓଡ଼ିଆବାସୀଙ୍କର ଜୀବନର ଶୃଙ୍ଖଳା ଲୋପ ପାଇଗଲା । ଦୀର୍ଘକାଳ ଧରି ଓଡ଼ିଆଲୋକେ ଭାରତୀୟ ସମାଜର ବିପ୍ଳବର ଧ୍ୱଜା ଉତ୍ତୋଳନ କରି ଆସିଥିଲେ । ଏମାନେ ଥିଲେ ଏକ ସମରନିପୁଣ ଜାତି । ସାମ୍ରାଜ୍ୟ ବିସ୍ତାରପାଇଁ

ଓଡ଼ିଆ ବାହିନୀର ସମର-ନୈପୁଣ୍ୟ ଇତିହାସରେ ବିରଳ । ଅଥଚ ଇଂରେଜ ରାଜତ୍ୱ କାଳରେ ସାମାନ୍ୟ କିଛି ସ୍ଥାନୀୟ ବିଦ୍ରୋହ ସତ୍ତ୍ୱେ ଓଡ଼ିଆମାନେ ଯେପରି ସ୍ୱର୍ଗୀୟ ଆଦର ମୂକ ପାଲଟି ଗଲେ । ଇଂରେଜ ରାଜତ୍ୱ କାଳରେ ସମଗ୍ର ବ୍ରିଟିଶ ସାମ୍ରାଜ୍ୟରେ ଓଡ଼ିଆ ଭୂଖଣ୍ଡ ଯେପରି ସବୁଠାରୁ ଶାନ୍ତିପ୍ରିୟଅଞ୍ଚଳ ଥିଲବୋଲି ଐତିହାସିକ ମାନେ କହିଥାନ୍ତି (୨୯) । ସେକାଳରେ ମାନ୍ଦ୍ରାଜର ସେନାବାହିନୀରେ କାର୍ଯ୍ୟ କରୁଥିବା ଜଣେ ଇଂରେଜ William J. B. Lawrie ଇଂଲଣ୍ଡରେ ଗୋଟିଏ ପୁସ୍ତକ ପ୍ରକାଶକରି ଲେଖିଥିଲେ—"Orissa the garden of superstition and Idolaton." ତାଙ୍କ ମତରେ ଓଡ଼ିଶା ଥିଲା ପୌତ୍ତଳିକତା ଓ ଅନ୍ଧାନୁସରଣର ଏକ ନର୍କପୁରୀ । ବହୁ ଶତ ବର୍ଷ ଧରି ଏ ଅନ୍ଧଭାବନା ଏଠାରେ ପ୍ରଚଳିତ ହୋଇ ଆସିଛି । ଏହି ବିକଟ ବିଷାକ୍ତ ମୋହରୁ ଓଡ଼ିଶାବାସୀ ଯେ କେବେ ଉଦ୍ଧାର ପାଇବେ, ଏହା କଳ୍ପନାତୀତ । (୩୦)

କେବଳ ସେତିକି ନୁହେଁ, ଏଠାରେ ଧର୍ମ ନାମରେ ସତୀ ହେବାପାଇଁ ନାରୀମାନଙ୍କୁ ପତିର ଚିତାନଳରେ ବଳାତ୍କାରରେ ନିକ୍ଷେପ କରାଯାଉଥିଲା । କନ୍ଧମାନେ ଅଧିକଫସଲ ଉତ୍ପାଦନ ବିଶ୍ୱାସରଖି ଶସ୍ୟକ୍ଷେତ୍ରରେ ମଣିଷବଳି ଦେଉଥିଲେ । ଅଧିକ ପୁଣ୍ୟ ଅର୍ଜନ କରିବାପାଇଁ ଚଳନ୍ତା ରଥ ଆଗରେ ଆତ୍ମହତ୍ୟା କରିବା ମଧ୍ୟ ଏକ ବିଶ୍ୱାସରେ ପରିଣତ ହୋଇଯାଇଥିଲା । ଧର୍ମପ୍ରଚାର ଉଦ୍ଦେଶ୍ୟରେ ଆସିଥିବା ପାଦ୍ରୀମାନେ ହୁଏତ ଅତିରଞ୍ଜନ କରି କିଛି ଲେଖି ଥାଇ ପାରନ୍ତି, ମାତ୍ର ଏହା ଥିଲା ଅତ୍ୟନ୍ତ ସାମାଜିକ ସତ୍ୟ । ଏଥି ସହିତ ଆମ ସମାଜରେ ଛୁଆଁ ଅଛୁଆଁ ଭେଦଭାବ ପାଦ୍ରୀମାନଙ୍କର ଅଧିକ ଦୃଷ୍ଟି ଆକର୍ଷଣ କରିଥିଲା । ଯେମାନଙ୍କୁ ସବର୍ଣ୍ଣହିନ୍ଦୁମାନେ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରୁ ନଥିଲେ । ଅତି ହୀନଭାବରେ ବିପର୍ଯ୍ୟସ୍ତ ହୋଇ ପଡ଼ିଥିବା ଏହି ଚଳିଆ ଅଛୁଆଁ ସମାଜ ଖ୍ରୀଷ୍ଟଧର୍ମ ଆନ୍ଦୋଳନ ଫଳରେ ବୈପ୍ଳବିକ ମନୋଭାବ ଗ୍ରହଣ କରିବା ସ୍ୱାଭାବିକ । ସେମାନେ ହିନ୍ଦୁସମାଜ ପରିତ୍ୟାଗ କରି ଖ୍ରୀଷ୍ଟଧର୍ମ ଗ୍ରହଣକରିବାକୁ ଆଗେଇ

---

୨୯ । "and the province which, during four centuries had formed the traditional asylum of revolt, has lapsed in to the most peaceful part of the British Empire " (The English as settlers and governors in Orissa ପ୍ରବନ୍ଧରେ ହଣ୍ଟରଙ୍କ ମନ୍ତବ୍ୟ—A History of Orissa-by Hunter, Stirling, Beams-Ed. by N. K. Sahu. p.177)

୩୦ । Orissa and its Evangelization-by Amos Sutton 1950—P. 63

ଆସନ୍ତୁ ଏବଂ ନୂତନ ସାମାଜିକ ମର୍ଯ୍ୟାଦା ଓ ସ୍ୱୀକୃତି ଲାଭ କରନ୍ତୁ, ଏହା ଥିଲା ପାଦ୍ରୀମାନଙ୍କର ପ୍ରେରଣା ।

୧୮୮୭ ଖ୍ରୀଷ୍ଟାବ୍ଦରେ ଉତ୍କଳର ବ୍ରାହ୍ମମାନଙ୍କ ସହଯୋଗରେ "ନବସମ୍ବାଦ' ନାମରେ ଏକ ସାପ୍ତାହିକ ପତ୍ରିକା ପ୍ରକାଶିତ ହୁଏ । ଏହି ପତ୍ରିକାର ଉଦ୍ଦେଶ୍ୟ ଥିଲା, ଏହିପରି—"ନବ ଉତ୍କଳରୁ ପୂତିଗନ୍ଧମୟ ପାପ ଓ କଳଙ୍କର ନିଶାଣକୁ ଉତ୍ପାଟିତ କରିବା ନିମନ୍ତେ ଅଗ୍ରସର ହେଉଅଛୁ ।" ସେହି ପତ୍ରିକାର ପ୍ରଥମ ସଂଖ୍ୟାରେ 'ନବସମ୍ବାଦ' ଶୀର୍ଷକ ଏକ କବିତାରେ ଲେଖା ଯାଇଥିଲା—

ହରିଷ୍ଟନ୍ସ୍ନ ପ୍ରେମ କିରଣ ଦେଖ ଭାରତ ଶିରେ
ବିଛିନ୍ନ ବିଭିନ୍ନ ଭାରତ ଏକ ହେଉଛି ଧୀରେ ।
ବର୍ଣ୍ଣଭେଦ ଧର୍ମଭେଦର ଦିନ ହେଉଛି ଶେଷ,
ମହାଯୋଗେ ହେବ ଭାରତ ମହାଭାରତ ଦେଶ ।

× × ×

କେ ଅଛ ଉତ୍କଳ ଭବନେ ଜାଗ ଜାଗ ସରବେ
ଘୋଷେ ଏହି ନବ ସମ୍ବାଦ ଘୋର ଗମ୍ଭୀର ରବେ ।
ତେଜି ମୋହ ନିଦ୍ରା ବହନ ଉଠ ଉତ୍କଳବାସୀ
କୁସଂସ୍କାର ନାଗପାଶକୁ ଜ୍ଞାନ ଖଡ୍‌ଗେ ବିନାଶି ।

ଊନବିଂଶ ଶତାବ୍ଦୀର ନୂତନ ଶିକ୍ଷାପ୍ରାପ୍ତ ଯୁବକଗୋଷ୍ଠୀ କ୍ରମେ ଈଶ୍ୱର ବିଶ୍ୱାସରୁ ଦୂରେଇ ରହୁଥିଲେ ଏବଂ ନାନା ପ୍ରକାରେ ପାନୀୟ ଦୋଷ ଏବଂ ବ୍ୟଭିଚାର ସେମାନଙ୍କ ଜୀବନକୁ ଜର୍ଜରିତ କରି ରଖିଥିଲା । ସାମାଜିକ ଉତ୍ସବାଦିରେ ବାରାଙ୍ଗନାମାନଙ୍କର ଆଦର କ୍ରମଶଃ ବୃଦ୍ଧିପ୍ରାପ୍ତ ହେଉଥିଲା । ଏ ସଂପର୍କରେ 'ନବ ସମ୍ବାଦ' ବାରମ୍ବାର ଚେତାବନୀ ଶୁଣାଇଛନ୍ତି । (୩୧)

---

୩୧ । "କିନ୍ତୁ ଅତିଶୟ ପରିତାପର ବିଷୟ ଯେ ସେମାନେ ନିଶ୍ୱରର ଭାବରେ ଚରିତ୍ର ରକ୍ଷାକରିବାକୁ ଯାଇ ବାରମ୍ବାର ପତିତ ହେଉଅଛନ୍ତି; ବାରମ୍ବାର ପାନ ଦୋଷ ଓ ବ୍ୟଭିଚାର ପଙ୍କରେ ବୁଡ଼ୁଅଛନ୍ତି । ତଥାପି ସେମାନଙ୍କର ଜ୍ଞାନୋଦ୍ରେକ ହେଉନାହିଁ ।"
(ନବସଂବାଦ—୨୩ । ୧ । ୧୮୮୭—ପୃ ୩-୪)
"ଆଜିକାଲି ପ୍ରତ୍ୟେକ ଶୁଭଦିନରେ ପ୍ରତ୍ୟେକ ଉତ୍ସବରେ ଇନ୍ଦ୍ରିୟ-ବିଳାସ ପ୍ରିୟତା ଅଧିକ ପରିମାଣରେ ଲକ୍ଷିତ ହୁଏ । କୃତବିଦ୍ୟ ଲବ୍ଧ-ପ୍ରତିଷ୍ଠ ବିଜ୍ଞ ବ୍ୟକ୍ତିମାନେ ମଧ୍ୟ ଏ ବିଳାସପ୍ରିୟତା ପାପରୁ ମୁକ୍ତ ନୁହନ୍ତି । କହିବାକୁ ଗଲେ ସେହିମାନଙ୍କ ଦଳରେ ଏ ବେଗଟା ସଂକ୍ରାମକ । ଶୁଭଦିନ ମାନଙ୍କରେ ପ୍ରାୟ ମଜଲିସ ହୁଅଇ ଏବଂ ଏହି ସବୁ ମଜଲିସରେ ପାପର ଭୀଷଣ ଅବତାର ବାରାଙ୍ଗନା ମୂର୍ତ୍ତି ବିରାଜମାନ ।"
(ନବ ସମ୍ବାଦ—୧୭ । ୩ । ୧୮୮୭-ପୃ-୩୦)

'ନବ୍ୟଦଳ' ଶୀର୍ଷକ ଏକ ଅଗ୍ରଲେଖାରେ 'ନବସମ୍ବାଦ' ସେ କାଳର ନୂତନ ଶିକ୍ଷିତ ଗୋଷ୍ଠୀଙ୍କୁ ଲକ୍ଷ୍ୟ କରି ଲେଖିଥିଲେ—"ସୁରାପାନ ଦୋଷରେ ଲିପ୍ତ ହୋଇ ଅନେକ ବୟସ୍କ ଓ ପ୍ରବୀଣ ଶିକ୍ଷିତ ବ୍ୟକ୍ତି ସୁଦ୍ଧା ଯେ କି କୁତ୍ସିତ କାର୍ଯ୍ୟ କରନ୍ତି ତାହା କହିବାକୁ ଲଜ୍ଜାବୋଧ ହେଉଅଛି । × × × × ପୁଣି ଶିକ୍ଷିତ ମାନଙ୍କ ମଧ୍ୟରୁ କେହିକେହି ଏପରି ସାହସୀ ଯେ ସେମାନେ ତର୍କ କରି ବେଶ୍ୟାଳୟକୁ ଯିବା ସତ୍‌କାର୍ଯ୍ୟ ବୋଲି ପ୍ରମାଣ କରିବାକୁ ଚେଷ୍ଟା କରନ୍ତି । × × × ଉପରୋକ୍ତ ପାପକାର୍ଯ୍ୟ ଛଡ଼ା ଅଧିକାଂଶ ଯୁବକ ମାନଙ୍କ ମଧ୍ୟରେ ଏବଂ ଅଳ୍ପ ବୟସ୍କ ଗ୍ରାଜୁମାନଙ୍କ ମଧ୍ୟରେ ଆହୁରି ଗୋଟିଏ ଗୁରୁତର ଦୋଷ ପ୍ରବେଶ ଲାଭ କରୁଅଛି । ଏହା ଅନୁକରଣ ପ୍ରଣାଳୀ । ଆଜକାଲି ଅଧିକାଂଶ ଶିକ୍ଷିତ ଯୁବକମାନେ ଏବଂ ଅପ୍ରାପ୍ତ ବୟସ୍କ ଗ୍ରାଜୁମାନେ ଫେସନ୍ ରୋଗାକ୍ରାନ୍ତ ହେଉଅଛନ୍ତି । ଅନୁକରଣପ୍ରଣାଳୀକୁ ଆମ୍ଭେମାନେ ଏକାବେଳକେ ନିନ୍ଦନୀୟ କହୁନାହୁଁ । ଏଥିରେ ଅନେକ ସମୟରେ ଉପକାର ହୁଏ ସନ୍ଦେହ ନାହିଁ । କିନ୍ତୁ ସଦସତ୍ ବିବେଚନା ନ କରି ଅନୁକରଣରେ ଯେ ଅତ୍ୟନ୍ତ ଅନିଷ୍ଟ ହୁଏ ଏହା ବୁଦ୍ଧିମାନ ମାତ୍ରକେ ବୁଝିପାରିବେ । (୩୨)

ଇଂରେଜୀ ଶିକ୍ଷା ଯୋଗୁଁ ଏକ ନୂତନ 'ବାବୁ'ଗୋଷ୍ଠୀର ଅଭ୍ୟୁଦୟ ହୋଇଥାଏ । ଏମାନେ ହେଲେ ସେକାଳର ଭାଷାରେ କଳାସାହେବ । ମାକଲେ ସାହେବ ଯଥାର୍ଥରେ ଭବିଷ୍ୟତ ବାଣୀ କରିଥିଲେ । ଇଂରେଜୀ ଶିକ୍ଷା ପ୍ରବର୍ତ୍ତନ ଫଳରେ ଏପରି ଦଳେ କଳା ସାହେବ ସୃଷ୍ଟି ହେବେ ଯେଉଁମାନେ ଇଂରେଜ ସାମ୍ରାଜ୍ୟବାଦର ଅନ୍ତରଙ୍ଗ ପ୍ରହରୀ ହୋଇ ଏଠି ରହିଥିବେ । ବାସ୍ତବିକ ଏଇ ନୂଆ ଶିକ୍ଷିତ ସମାଜ ଥିଲେ ଇଂରେଜଶାସନର ସର୍ବଶ୍ରେଷ୍ଠ ପୃଷ୍ଠପୋଷକ । ପାଶ୍ଚାତ୍ୟ ଶିକ୍ଷା, ଦୀକ୍ଷା, ଆଦବକାଇଦା ଥିଲା ସେମାନଙ୍କର ଅତ୍ୟନ୍ତ ପ୍ରିୟ । ସେମାନେ ପ୍ରାଚ୍ୟ ସଂସ୍କାର ଉପରେ ପଦାଘାତ କରି ଏ ଦେଶର ସଂସ୍କୃତି ଓ ସାହିତ୍ୟକୁ ଅସ୍ୱୀକାର କରିବାକୁ ଶିଖିଲେ । ସେମାନଙ୍କ ପାଇଁ ପରଂପରା ଓ ପୂର୍ବଦୃଷ୍ଟିର ଦ୍ୱାର ବନ୍ଦ ହୋଇଗଲା । ଏହି ଶ୍ରେଣୀର ଲୋକମାନଙ୍କୁ ବ୍ୟଙ୍ଗ କରି ସେତେବେଳେ ଅନେକ ଲେଖା ପ୍ରକାଶିତ ହେଉଥିଲା । ସେଥିରୁ ଜଣାଯାଉଥିଲା ଦେଶରେ ଏକ ସଂସ୍କାରର ପାଣିପାଗ ସୃଷ୍ଟି ହେଉଛି । ତାହା ନହେଲେ ଦେଶର ଭାଗ୍ୟ ବଦଳିବ ନାହିଁ କିମ୍ବା ଏ ଦେଶରୁ କୁସଂସ୍କାରର ଅମା ଅନ୍ଧକାର ଦୂରୀଭୂତ ହେବନାହିଁ । (୩୩)

---

୩୨ । ନବସମ୍ବାଦ—୨୧ । ୪ । ୧୮୮୨—ପୃ ୫୦-୫୧

୩୩ । "କଳିଯୁଗେ ବାବୁରୂପୀ ଅବତାର ହେବେ
ଏକାଦଶ ଅବତାର ନାମ ବୋଲାଇବେ ।
× × × ×

ଏହିପରି ପାଣିପାଗରେ ଏକ ରକ୍ଷଣଶୀଳ ବ୍ରାହ୍ମଣଶାସନରେ ନୀଳକଣ୍ଠ ଜନ୍ମଗ୍ରହଣ କରି ଲାଳିତପାଳିତ ହେଉଥାଆନ୍ତି । ତାଙ୍କ ମଧ୍ୟରେ ପ୍ରାଚୀନ ସମାଜର ଅନେକ ବିଶ୍ୱାସ ବଦ୍ଧମୂଳ ହୋଇ ଯାଉଥାଏ । ସେତେବେଳକୁ ଗୋପବନ୍ଧୁ ମର୍ମେ ମର୍ମେ ଅନୁଭବ କରୁଥାଆନ୍ତି ଯେ ଦେଶର ଏକ ଅଭାବନୀୟ ପରିବର୍ତ୍ତନ ଆବଶ୍ୟକ । ଏଥିପାଇଁ ଉପଯୁକ୍ତ କର୍ମୀର ସନ୍ଧାନ ସେ କରୁଥାଆନ୍ତି । ଗୋପବନ୍ଧୁଙ୍କୁ ଯେତେବେଳେ ମାତ୍ର ୨୨ବର୍ଷ ବୟସ ସେହି ସମୟରେ ସେ ୧୮୯୯ ଖ୍ରୀଷ୍ଟାବ୍ଦରେ "ଅବକାଶ ଚିନ୍ତା" ବୋଲି ଖଣ୍ଡିଏ କବିତା-ପୁସ୍ତକ ପ୍ରକାଶ କଲେ ଓଡ଼ିଶା ପେଟ୍ରିୟଟ ପ୍ରେସରୁ । ଏଥିରେ ଗୋପବନ୍ଧୁଙ୍କର ଭକ୍ତିପ୍ରାଣତା, ଦେଶପ୍ରୀତି, ବିଶ୍ୱପ୍ରୀତି ଏବଂ ସଂସ୍କାର ପ୍ରାଣତାର ବାରମ୍ବାର ପରିଚୟ ମିଳୁଅଛି । ବ୍ରାହ୍ମଣ ସମିତି ଛାତ୍ରାବାସର ରକ୍ଷଣଶୀଳ ବ୍ରାହ୍ମଣଛାତ୍ରମାନଙ୍କୁ ଉପଲକ୍ଷ୍ୟ କରି ଗୋଟିଏ କବିତା ଲେଖାଯାଇଥିଲା । ଗୋପବନ୍ଧୁ ତହିଁରେ କହିଥିଲେ—

ଭାରତ ବାସୀର ଧର୍ମବଳ ସାର
ଧର୍ମ ବିନା ଆଜି ଏଡ଼େ ଛାରଖାର ।
ଧର୍ମେ ପରି ଆଗେ ତୁମ୍ଭ ଅଧିକାର
ସତ୍ୟ ଶୁଦ୍ଧ ଧର୍ମ କର ହେ ପ୍ରଚାର ।

---

୩୩ । ଶିଖିବେ ପାଶ୍ଚାତ୍ୟ ବିଦ୍ୟା ରୀତିନୀତିମାନ
ଅର୍ଥକାରୀ ବିଦ୍ୟା ବୋଲି କରିବେ ଗ୍ରହଣ ।
ଶିକ୍ଷାଗୁରୁ ଦୀକ୍ଷାଗୁରୁ ବିଳାତି ତାଙ୍କର
ଯେଉଁ ମନ୍ତ୍ର ଦେବେ କର୍ଣ୍ଣେ ସେହି ହେବ ସାର ।
କେହି ଅଧା କେହି ପୂରା ଇଂରେଜି ଶିଖିବେ
ଭୋଜନେ, ଶୟନେ, ସ୍ୱପ୍ନେ ବୋଲିକୁ ଝାଡ଼ିବେ ।
ଘରେ ବସି ବୋଲିଇବେ ବିଳାତି ଫେରନ୍ତା
ବିଘଟି କରିବେ ଇଂରେଜୀରେ କଥାବାର୍ତ୍ତା ।
× × × ×
ପାଞ୍ଚସାତ ମଦମତ୍ତ ହୋଇ ସଙ୍ଗିଗଣ
ସନ୍ଧ୍ୟାହେଲେ ବେଶ୍ୟାଘରେ କରିବେ ଗମନ ।
ହିନ୍ଦୁଆନି, ଦେବପୂଜା ଜାତି ଭେଦମାନ
ଏ ସବୁ ହୋଇବ ତାଙ୍କୁ ଉପହାସ ଜ୍ଞାନ ।
× × × ×
ଓଲଡ୍ ଫେଲୋରେ ପିତାମାତ ହେବେ ଗଣ୍ୟ
ଦାସଦାସୀଠାରୁ ବଳି ହେବେ ଅପମାନ ।
ଧରିଜଣେ ସରିପରି ହୋଇବ ବିଚାର,
ମୁଖେମୁଖେ ସିଦ୍ଧ ହେବ ସ୍ୱଦେଶ ଉଦ୍ଧାର ।"
( ଓଡ଼ିଆ ଓ ନବ ସମ୍ବାଦ—ତା ୧୮ । ୩ । ୧୮୯୧—ପୃ ୭୭ )

ଦେଖାଅ ଜୀବନେ ଅଭୂତ ଶକତି
କର୍ମେ ଅନାଶକ୍ତ, ଧର୍ମେ ଦୃଢ଼ବ୍ରତି ।
× × × ×
ନିଜ ସୁଖ ଲାଗି ଜାତ ନୁହେ ହିନ୍ଦୁ
ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ ।
ଦେଖାଅ ଏ ସତ୍ୟ ଆପଣା ପରାଣେ
ହିଅ ଏହି ମନ୍ତ୍ର ସର୍ବ ବର୍ଣ୍ଣ କାନେ ।
ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧି ବିଶ୍ୱ ହିତ ତେଜି ଅଭିମାନ ।''

ଗୋପବନ୍ଧୁ ଯାହା କହୁଥିଲେ ତାହା କାର୍ଯ୍ୟରେ ପରିଣତ କରିବାପାଇଁ ଆଗେଇ ଆସୁଥିଲେ । ଏହି ସମୟର କଥା, ନୀଳକଣ୍ଠଙ୍କର ଗୃହଜୀବନ ସରି ନଥାଏ । ସେ ଛୁଟୀରେ ଗୋପବନ୍ଧୁଙ୍କ ସହିତ ସାକ୍ଷାତ କରିବାପାଇଁ ତାଙ୍କ ଗ୍ରାମକୁ ଯାଇଥିଲେ । ସେହିକାଳରେ ଗୋପବନ୍ଧୁ ଗାଁ ମୁଣ୍ଡ ଠାକୁରାଣୀ ଜାଗେଶ୍ୱରୀଙ୍କ ପାଖେ ସପ୍ତାଙ୍ଗ ବସାଇଥାନ୍ତି । ସାତଦିନ ହବିଷପାରଣା କରି ଜଗନ୍ନାଥ ଦାସଙ୍କ ଭାଗବତ ଆବୃତ୍ତି ହେଉଥାଏ । ଭାଗବତ ପଢ଼ାସରିଲା ପରେ ଭାଗବତଗାଦିକୁ ଅରୁଆଭାତ ଭୋଗ ବଢ଼ାଗଲା । ଦାସେ ଆପଣେଙ୍କ ସହିତ ନୀଳକଣ୍ଠ ଏବଂ ତାଙ୍କର ସାଥୀ ହବିଷରେ ବସିଲେ । କିନ୍ତୁ ତାଙ୍କର ଦୁଃଖର ସୀମା ନଥିଲା । ମୁହଁଲାଜରେ ଗୋପବନ୍ଧୁଙ୍କୁ ପ୍ରତିବାଦ କରି ନପାରିଲେ ସୁଦ୍ଧା ସେ ଦିନ ସେ ମନପୂରାଇ ଖାଇପାରି ନଥିଲେ । (୩୪) ଗୋପବନ୍ଧୁ ଥିଲେ ଏକ ଯାଦୁକରୀ ବ୍ୟକ୍ତିତ୍ୱର ଅଧିକାରୀ । ସେ କି କମିଆ

୩୪ । ''ସେ ଦିନର ଅନୁଭୂତି ମୋର ନୂଆ । ଆମେ ଶାସନୀ ବ୍ରାହ୍ମଣ । ଗୋପବନ୍ଧୁବାବୁ ଶାସନୀ ନଥିଲେ । ସେ କାଳର ରୀତି ଅନୁସାରେ ସେ ଆମଠାରୁ ଶ୍ରେଷ୍ଠ ବ୍ରାହ୍ମଣ । ଆମର ତାଙ୍କ ଘରେ ଖାଇବାର ନୁହେଁ । ପୁଣି ସେବକ ରନ୍ଧାଭାତ, ତା' ପୁଣି ବେତାରୁ ଆଞ୍ଜୁଳାରେ ପରଶା ହେବ, ସେବକ ପରଶିବ । ବିନା ଚଳୁରେ ଖାଇବାକୁ ହେବ । ଏଥିରେ ମୁଁ ଓ ହୁଏତ ମୋର ସଙ୍ଗୀ ଦୁହେଁ ଏକାବେଳକେ ଅନଭ୍ୟସ୍ତ । ପୁଣି ଓଡ଼ିଆ ଜଗନ୍ନାଥ ଦାସଙ୍କ ଭାଗବତକୁ ଭୋଗ ଦିଆ ହେଉଛି । ସେ ତ ଆମର ଅସ୍ପୃଶ୍ୟ । ଜଗନ୍ନାଥ ଦାସ ଶାସନୀ ଥିଲେ । ଓଡ଼ିଆରେ ଭାଗବତ ଲେଖିଥିଲେ ବୋଲି ସେ କପିଳେଶ୍ୱରପୁର ଶାସନଟି ପୁରୁଣାଶାସନ ଭିତରେ ଅସ୍ପୃଶ୍ୟ ଓ ଅପାଂକ୍ତେୟ ହୋଇଥିଲା । × × × ସେଦିନ ଆମେ ଚଳୁ ନ କରି ସମସ୍ତେ ସେ ଭାତ ତିଅଣ ଖାଇଲୁ । କିନ୍ତୁ ମୋର ମନେ ଅଛି, ଅଧାଖିଆ ପର୍ଯ୍ୟନ୍ତ ମୋ ପେଟକୁ ଭାତ ଯାଉ ନଥାଏ ।
( ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମଖଣ୍ଡ—୧୯୬୩—ଆତ୍ମଜୀବନୀ—ପୃ ୨୦ )

କଲେ କେଜାଣି ନୀଳକଣ୍ଠ ଏବଂ ତାଙ୍କର ବନ୍ଧୁଗଣ କେବଳ ପ୍ରାଚୀନ ସମାଜଗତ ଅହଂକାରକୁ ଜଳାଞ୍ଜଳି ଦେଇ ନଥିଲେ । ସେହିଦିନ ଶପଥ ନେଇଥିଲେ ଏକ ନୂଆ ସମାଜର ପ୍ରତିଷ୍ଠା ପାଇଁ । ଜନ୍ମବେଳେ ମାତୃଭୂମିକୁ ଯେଉଁ ରୂପରେ ଦେଖିଥିଲେ, ଆଜୀବନ ସାଧନା କରିବେ ତାର ରୂପରେଖ ବଦଳାଇ ଦେଇ ଏକ ସମୃଦ୍ଧ ଓଡ଼ିଶାର ପ୍ରତିଷ୍ଠା ପାଇଁ । ଏଇ ଦିନର ଶପଥ ଡ଼ାଲପନ୍ତ ମେଲ୍ କପର ଏକ ମହାଦ୍ରୁମରେ ପରିଣତ ହୋଇଥିଲା, ଇତିହାସ ତାର ମୂକସାକ୍ଷୀ । ସେଥିପାଇଁ ସଂସ୍କାରକ ନୀଳକଣ୍ଠଙ୍କ ଜୀବନଚରିତକୁ ବାଦ ଦେଇ ଆଧୁନିକ ଓଡ଼ିଶାର ଇତିହାସ ଲେଖାଯାଇ ପାରିବ ନାହିଁ । (୩୫)

ସେ କାଳରେ ଘାରପେଶା, କାଳସିଲଗିବା ଇତ୍ୟାଦି ନାନା ପ୍ରକାର କୁସଂସ୍କାର ପ୍ରଚଳିତ ଥାଏ । ଲୋକମାନେ ସରଳ ବିଶ୍ୱାସରେ ଏ ସବୁର ଶିକାର ହେଉଥାଆନ୍ତି । ଭୟଭୀତ ହୋଇ ଠାକୁରାଣୀଙ୍କ ପାଖରେ ନାନା ଭୋଗ ଓ ଜନ୍ତାଳ ଲାଗି ରହିଥାଏ । ନୀଳକଣ୍ଠ ଏହି ଯୁବକ ଅବସ୍ଥାରୁ ଏ ସବୁ ବିରୁଦ୍ଧରେ ଅଣ୍ଟାଭିଡ଼ି ବାହାରିଥିଲେ । ବୁଢ଼ା ବୁଢ଼ୀ ଲୋକେ ଭାବୁଥିଲେ ଯେ ନୀଳକଣ୍ଠଙ୍କୁ ଠାକୁରାଣୀ ଭେଟିଣା ହୋଇଯିବ । ସେ ଆଉ ବଞ୍ଚିବେ ନାହିଁ । କେତେ ଦିଅଁ ସେବା କରି ନୀଳକଣ୍ଠଙ୍କୁ ପାଇଥିବାରୁ ତାଙ୍କର ମା' ବିକଳ ହେଉଥାଆନ୍ତି । ମାତ୍ର ଏ ସବୁଥିରେ

---

୩୫ । "ସେଇ ଶପଥରୁ ଗଢ଼ା ହେଲା ସତ୍ୟବାଦୀ ସ୍କୁଲ । ଦେଶକୁ ଉନ୍ନତ କରିବାକୁ ମଣିଷ ଗଢ଼ିବାର ଦାୟିତ୍ୱ ନେଲେ ନୀଳକଣ୍ଠ, ସେଥିର ଅଧ୍ୟକ୍ଷ ଭାବରେ । ଅଧ୍ୟାପନା ସଙ୍ଗେ କି ଶୀତ, କି ବର୍ଷା ରାତିରେ ସ୍କୁଲ ଗୃହ ଆ ବାରଣ୍ଡାରେ ଲଣ୍ଠନଟାଏ ଟଙ୍ଗା ହୋଇଥିବ, ବହି ଖଣ୍ଡେ ଧରି ପଢ଼ି ରହିଥିବେ, ନୀଳକଣ୍ଠ । ଭିତରେ ଶୋଇଥିଲେ କାଳେ ଡ଼ାକ ନ ଶୁଭିବ, ବା କିଏ ସଙ୍କୋଚରେ ନ ଡ଼ାକି ଚାଲିଯିବ, ପାଖ ବା ଦୂର ଗାଁରୁ ହଇଜା ପ୍ରଭୃତିର ଖବର ପାଇଲାକ୍ଷଣି ସେ ସ୍କୁଲର କେତୋଟି ପିଲା, ହୋମିଓପ୍ୟାଥି ଔଷଧ ବାକ୍ସ ଓ ବିଶୋଧକ କିଛି ଧରି ସଙ୍ଗେ ସଙ୍ଗେ ବାହାରି ପଡ଼ିବେ । ରୋଗୀସେବା ସାଥିରେ ଗାଁମାନଙ୍କରୁ 'କାଳେସୀ' ଛଡ଼ାଇ ହଇଜାର ବ୍ୟାପକତା ଦୂର କଲେ । × × ଏଇଥିରୁ ଆରମ୍ଭ ସମାଜ-ସଂସ୍କାରରୂପୀ ଜଣଆନ୍ଦୋଳନ । ଏଇ ଠାକୁରାଣୀ କାଳେସୀବାଡ଼ିଆରୁ ତାଙ୍କର ଦାର୍ଶନିକ ତତ୍ତ୍ୱର ଉତ୍ପତ୍ତି ଏବଂ ଏକେଶ୍ୱରବାଦର ଅଭିବ୍ୟକ୍ତିପାଇଁ 'ଭକ୍ତଗାଥା', ଗୀତାର ଭାଷ୍ୟ, ଜଗନ୍ନାଥଧର୍ମ 'ସଂସ୍କୃତ ଓ ସଂସ୍କୃତି' ପ୍ରଭୃତିର ଉଦ୍ଭବ ।"

(ନୀଳକଣ୍ଠ ସ୍ମାରକୀ—୧୯୮୦— ଉତ୍ତରର ଗ୍ରୁପ ବିକ୍ରମ ଦାସ—ପୃ ୫୫)

ନୀଳକଣ୍ଠଙ୍କର ଖାତିର ନଥାଏ । ସେ ଗ୍ରାମଗ୍ରାମ ବୁଲି କାଳେସୀମାନଙ୍କୁ ଏପରି ହରକତ କଲେ ଯେ ତାଙ୍କ ନାମ ଶୁଣିଲେ କାଳେସୀମାନେ ଛାଡ଼ି ପଳାଉଥିଲେ । ବହୁ ଗ୍ରାମରେ ଷାରପେଣିବା ମଧ୍ୟ ବନ୍ଦ ହୋଇଯାଇଥିଲା । 'ନୀଳକଣ୍ଠ ସ୍ମାରକୀ' ଗ୍ରନ୍ଥରେ ଇନ୍ଦ୍ରାଦେବୀଙ୍କ ଲିଖିତ 'ପଣ୍ଡିତ ନୀଳକଣ୍ଠଙ୍କ 'ଷାରପେଣା' ଓ କାଳେସୀ-ଛଡ଼ା ' ପାଠକଲେ ଏହା ପ୍ରମାଣିତ ହୋଇ ପାରିବ ।

ନୀଳକଣ୍ଠ ଭୟ କ'ଣ ଜାଣି ନଥିଲେ । ସାଧାରଣ ଲୋକେ ଯେଉଁଥିରେ ହାତଦେବାକୁ ଡରୁଥିଲେ, ସେ ଆଗଭୁର ଭରସି ପଡ଼ି ସେ କାର୍ଯ୍ୟଟି କରି ଦେଉଥିଲେ । ଠାକୁରାଣୀଙ୍କ ଅମୁଣିହା ଭୋଗରୁ ସେ ଖାଇ ଦେଉଥିଲେ ବୋଲି ତାଙ୍କର ମା' ବିଚଳିତା ହୋଇ ପଡ଼ୁଥିଲେ । ମାତ୍ର ସେ ମା'ଙ୍କୁ ବୁଝାଇ ଦେଇଥିଲେ ଯେ ଯଦି ସେ ମାତୃରୂପିଣୀ, ସେ ସନ୍ତାନର କ୍ଷତି କରିବେ କାହିଁକି ?

ତାଙ୍କର ନିର୍ଭୀକତା ସମ୍ପର୍କରେ ସୁଯୋଗ୍ୟ ପୁତ୍ର ବନମଦାସଙ୍କର "ପିତୃସ୍ମୃତି" ପ୍ରବନ୍ଧର ଗୋଟିଏ ଘଟଣା ଏଠାରେ ଉଲ୍ଲେଖ କରାଯାଇ ପାରେ ।

"ଦଶହରା ବେଳ । ହଇଜାରେ ବହୁତ ଲୋକ ମରୁଯାଉଥାଆନ୍ତି । ଆମ ଗାଁର ଶ୍ରୀ ଭଗବାନ ଦାସ ସେଥିରେ ଚାଲିଗଲେ । ମୁଦାର ନ ଉଠିଲେ ଠାକୁରାଣୀ ଗାଁ ବୁଲି ପାରିବେନି, ସମସ୍ତଙ୍କ ଘରେ ଭୋଗ ଅଟକିବ । ଏକେତ ପୂଜା ବେଳ, ଅନ୍ଧାର ରାତି, ତହିଁକି ହଇଜା ମଲା; ପୁଣି ଛାଡ଼ି ରାତି ଦୁଇଟାରେ କେହି ଶ୍ମଶାନକୁ ଯିବାକୁ ରାଜି ହେଲେନି; ସେ ବଳୀ ଆସେମ୍ବ୍ଲିରୁ ଫେରିଥାଆନ୍ତି । କଥା ଆସି ତାଙ୍କ କାନରେ ବାଜିଲା । ସେ ଓ ବଡ଼ଭାଇ ଆଗୃହୀ ହରିହର ଆଉ ଦୁଇଜଣଙ୍କୁ ଧରି ଶବ କାନ୍ଧେଇ ଶ୍ମଶାନକୁ ଚାଲିଗଲେ । ଧୋବା ଭଣ୍ଡାରୀ କେହି ନଥାନ୍ତି । ଶ୍ମଶାନଟି ନିରୁଛିଆ ସ୍ଥାନରେ । କାଠ ପ୍ରଭୃତି ଆଣିବାକୁ ଯିବାକୁ ହେବ । ସେ ଏକୁଟିଆ ଶବଟିକୁ ଜଗି ରହିଲେ । ଅନ୍ୟମାନେ ଜିନିଷପତ୍ର, ପୁରୋହିତ, ଧୋବା ପ୍ରଭୃତି ଖୋଜିବାକୁ ଗାଁକୁ ଗଲେ । ସମସ୍ତେ ଫେରି ଦେଖିଲେ ଶବ ନିକଟରେ ଗଛ ମୂଳକୁ ମୁଣ୍ଡ ଦେଇ ନିର୍ଭୀକ ଭାବରେ ସେ ଶୋଇପଡ଼ିଛନ୍ତି । କେହି କେହି କହିଲେ, ତମକୁ ଡର ମାଡ଼ିଲାନି ? ଶବ ଦେହରେ ଭୂତ ପ୍ରେତ ପଶିଯିବେ, ତମେ ନିଦରେ କପରି ଶୋଇ ପଡ଼ିଲ ? ସେ ଉତ୍ତର ଦେଲେ, 'ଦେଖନ୍ତୁ, ମୁଁ କଅଣ ଶବକୁ ଛାଡ଼ିଛି, ଗୋଟିଏ ବରଡ଼ାପତ୍ର ମୋ ଦେହରୁ ଶବ ଦେହକୁ ପରା ଲଗାଇ ରଖିଛି । ଭୂତର କଅଣ ଡର ନାହିଁ; ସେ କଅଣ ମୋତେ ଡ଼ର ନଥିବ ? ଭାରି ହସ ହେଲା ।"

ନୀଳକଣ୍ଠଙ୍କ ସମାଜ ସଂସ୍କାର ଥିଲା ବ୍ୟାପକ ଏବଂ ସୁଦୂରପ୍ରସାରୀ । ସେଥିରେ ଯୌବନର ଭାବୋଚ୍ଛ୍ୱାସ ନଥିଲା । ସେ ଗ୍ରାମ୍ୟ ଜୀବନରେ ଗୀର୍ଜା ଗୃହରେ ପ୍ରାର୍ଥନାରେ ଯୋଗ ଦେଇଥିଲେ କମ୍ପା ହରଚଣ୍ଡୀ ଠାକୁରାଣୀଙ୍କ ପାଇଁ ଉଦ୍ଦିଷ୍ଟ

ଶ୍ରୋଗରୁ କିଛି ଖାଇ ଦେଇଥିଲେ ବୋଲି ପ୍ରବାଣମାନେ ବିଚଳିତ ହୋଇ ପଡ଼ି-ଥିଲେହେଁ ତାଙ୍କର ସଂସ୍କାରପ୍ରାଣତା ଭାବପ୍ରବଣତାରେ ସୀମାବଦ୍ଧ ନଥିଲା ! କର୍ମକାଣ୍ଡ-ପ୍ରଭାବିତ ନାନା ବିଧିବିଧାନ ତଥା କୁଳୀନତାର ନାନା ଆଗ୍ରହ ବ୍ୟବହାର ସମାଜ ଜୀବନକୁ ଅତ୍ୟନ୍ତ ପଙ୍ଗୁ କରି ଦେଇଥିଲା । କିନ୍ତୁ ଏ ସବୁ ବିରୁଦ୍ଧରେ କାହାର ଅବା ସାହସ ଥିଲା ସ୍ୱର ଉତ୍ତୋଳନ କରିବାପାଇଁ ? ନୀଳକଣ୍ଠ ଅତ୍ୟନ୍ତ ଯୁକ୍ତିନିଷ୍ଠ ଥିଲେ । ସେ ଅତ୍ୟନ୍ତ ନିର୍ଭୀକ ଭାବରେ ଏହି ଅନ୍ଧବିଶ୍ୱାସ ବିରୁଦ୍ଧରେ ଲାଗିପଡ଼ିଥିଲେ । ବନବିଦ୍ୟାଳୟର ଆଦର୍ଶ ଶିକ୍ଷକ ଭାବରେ ସେହି ପ୍ରେରଣାରେ ପ୍ରଭାବିତ କରିଥିଲେ ନିଜର ପ୍ରିୟ ଛାତ୍ରମାନଙ୍କୁ । ତାଙ୍କର ଏହି ସଂସ୍କାର ନିଷ୍ଠା ପରିବ୍ୟାପ୍ତ ହୋଇଥିଲା ସମାଜ, ସାହିତ୍ୟ ଓ ରାଜନୀତି ଆଡ଼କୁ । ପ୍ରତ୍ୟେକ କ୍ଷେତ୍ରରେ ସେ ଥିଲେ ଅନମନୀୟ, ସ୍ୱତନ୍ତ୍ର । ସେ ନୀତିନିଷ୍ଠ ଥିଲେ ଅଥଚ ଅନ୍ଧାନୁସାରୀ ହୋଇ ନଥିଲେ । କୌଣସି ସଂସ୍କାର-ଭାବନାକୁ ସେ ବ୍ୟକ୍ତିଗତ ଅସୂୟାଭାବରୁ ଗ୍ରହଣ କରିନଥିଲେ । ହିନ୍ଦୁଧର୍ମର ପୌତ୍ତଳିକତାଠାରୁ ଆରମ୍ଭକରି ଜଗନ୍ନାଥଙ୍କ ପତିତପାବନ ପର୍ଯ୍ୟନ୍ତ, ବୈଷ୍ଣବ-ପରକୀୟା-ଦର୍ଶନଠାରୁ ଆରମ୍ଭକରି ଓଡ଼ିଆ ସାହିତ୍ୟରେ ଲିପିସଂସ୍କାର ଯାଏଁ ସବୁଠାରେ ନୀଳକଣ୍ଠ ଏକ ନୂତନ ଦୃଷ୍ଟିଦିଗନ୍ତର ବାର୍ତ୍ତାବହ ଥିଲେ । ନୀଳକଣ୍ଠଙ୍କର ବିଶାଳ ପ୍ରତିଭା ଓ ଯୁକ୍ତିଧର୍ମୀ ବିଶ୍ଳେଷଣ ପଟୁ ମନୀଷୀ ନିକଟରେ ସମସ୍ତେ ହେଉଥିଲେ ନତମସ୍ତକ । ନୀଳକଣ୍ଠଙ୍କର ଏହି ସଂସ୍କାର-ଧର୍ମୀ ଆନ୍ଦୋଳନକୁ ଅନେକ ଅଲୋଚକ ନିଶ-ଆନ୍ଦୋଳନ ବୋଲି ନାମିତ କରିଥାନ୍ତି । ପଣ୍ଡିତ ନୀଳକଣ୍ଠ ନିଜେ ଲେଖିଛନ୍ତି—

"ସେତିକି ବେଳକୁ ନିଶ-ଆନ୍ଦୋଳନ ନାମରେ ମୋ ଉପରେ ତଥା ସତ୍ୟବାଦୀ ଅନୁଷ୍ଠାନ ଉପରେ ସାମାଜିକ ଅତ୍ୟାଗ୍ରହ । ଅବଶ୍ୟ 'ନିଶ' ସଙ୍ଗେ ସେ ସାମାଜିକ ଆନ୍ଦୋଳନର ବିଶେଷ କିଛି ତାତ୍ତ୍ୱିକ ବା ନୈତିକ ସମ୍ପର୍କ ନଥିଲା । ମୁଁ କଲିକତାରେ ପଢ଼ିବାବେଳୁ ଦାଢ଼ିଖିଅର ହୋଇ ଖାଲି ନିଶ ରଖିଥିଲି । ପଣ୍ଡିତମାନେ ମୋର ଲୋକ-ବିରୁଦ୍ଧ କ୍ରିୟା ଲୋକଙ୍କୁ ବୁଝାଇବା ପାଇଁ ସଙ୍କେତ ସ୍ୱରୂପ ନିଶଟାକୁ ଦେଖାଇଦେଲେ; ତେଣୁ ସେ କାଳର ଜାତି ବର୍ଣ୍ଣ ଭେଦ ଉଠାଇବା-ପାଇଁ ଯେଉଁ ବିରାଟ ସାମାଜିକ ଆନ୍ଦୋଳନ ହୋଇଥିଲା, ତାହାର ନାମଟି ହେଉଛି 'ନିଶ' ଆନ୍ଦୋଳନ । କଥା ହେଉଛି, ମୋ ଯୋଗେ ଆକୃଷ୍ଟ ହୋଇ ଗୃହଆଡ଼ୁ ଛାତ୍ର ସତ୍ୟବାଦୀ ଆସିଲେ । ସମସ୍ତଙ୍କ ପାଇଁ ଛାତ୍ରାବାସର ବ୍ୟବସ୍ଥା ହେଲା । ମୁଁ ଥାଏ, ସେ କୁଳଗୃହରେ ଏକପ୍ରକାର କୁଳପତି । ସଦାସର୍ବଦା ମୁଁ ସେଠାରେ ଥାଏ । କୁଳଗୃହର ଛାତ୍ରମାନେ ସମସ୍ତେ ବର୍ଣ୍ଣ ଓ ଧର୍ମ ନିର୍ବିଶେଷରେ ଏକ ପଙ୍କ୍ତିରେ ଖାଇବାର ବ୍ୟବସ୍ଥା ହେଲା । ସତ୍ୟବାଦୀ ରକ୍ଷଣଶୀଳ ବ୍ରାହ୍ମଣଶାସନ ମାନଙ୍କର କେନ୍ଦ୍ର । ସେଇ ରକ୍ଷଣଶୀଳମାନେ ଆସି ମତେ ଅନୁରୋଧ କଲେ—

'ବ୍ରାହ୍ମଣ ଓ ଅବ୍ରାହ୍ମଣଙ୍କ ପାଇଁ ଅଲଗା ଅଲଗା ଭୋଜନ ସ୍ଥାନର ବ୍ୟବସ୍ଥା କର। ତା' ନ ହେଲେ ଲୋକଙ୍କୁ ଅସହ୍ୟ ହେଉଛି।" ମୁଁ କହିଲି, "କୁଳଗୃହର ସମସ୍ତ ଅନ୍ତେବାସୀଙ୍କର ମୁଁ କୁଳପତି, ସୁବିଧା ଥିଲେ ମୋର ପତ୍ନୀ ନିଜ ପୁତ୍ର ରୂପେ ସେମାନଙ୍କୁ ରାନ୍ଧି ଖାଇବାକୁ ଦିଅନ୍ତି। ମୁଁ ଏଇ ପୁତ୍ରମାନଙ୍କର ମଧ୍ୟରେ ବର୍ଣ୍ଣ-ଧର୍ମ ଭେଦ କରି ପାରିବି ନାହିଁ, କ୍ଷମା କରନ୍ତୁ।" (୩୬) ସେତେବେଳେ ପୁରୀର ବିଶିଷ୍ଟ ସଂସ୍କାରକ ପଣ୍ଡିତ ସଦାଶିବ ମିଶ୍ର ସେ କାଳର ଉପଯୋଗିତାକୁ ଲକ୍ଷ୍ୟ ରଖି ଗୋଟିଏ ଗ୍ରନ୍ଥ ରଚନା କରିଥାଆନ୍ତି "କନ୍ୟାପାଧର୍ମ—ସର୍ବସ୍ୱ"। ଏହା ଏକ ସ୍ମୃତିଗ୍ରନ୍ଥ। ଏଥିରେ ବ୍ରାହ୍ମଣମାନେ ଯୁବତୀ-ବିବାହ କରିପାରିବେ ବୋଲି ଯୁକ୍ତି ଉପସ୍ଥାପନ କରାଯାଇଥିଲା। "ଜାତି-ଆନ୍ଦୋଳନର ମୂଳ ହୁଏତ ଏଇଠାରେ ଅଛି।" (୩୭) ବୋଲି ନୀଳକଣ୍ଠ ସ୍ୱୀକାର କରିଥିଲେ। ସତ୍ୟବାଦୀ ବନବିଦ୍ୟାଳୟର ଶିକ୍ଷକ ଥିଲାବେଳେ ଏହି ଅନ୍ଦୋଳନ ତୀବ୍ରତର ହୋଇଥିଲେ ହେଁ, ବହୁ ପୂର୍ବରୁ ନୀଳକଣ୍ଠଙ୍କର ସଂସ୍କାର-ସାଧନା ପ୍ରକଟିତ ହୋଇଥିଲା। ସେ ତାଙ୍କର କେତୋଟି ପ୍ରବନ୍ଧରେ ତାର ସୂଚନା ପ୍ରଦାନ କରିଥିଲେ। (୩୮) ଏହି ସଂସ୍କାର ଆନ୍ଦୋଳନ ସେତେବେଳେ କିଛି ନୂଆକଥା ନଥିଲା। ଊନବିଂଶ ଶତାବ୍ଦୀରେ ନବଜାଗରଣ—ଆନ୍ଦୋଳନ ବା ଭାରତୀୟ ରେନେସାଁର ଉତ୍ପତ୍ତି। ବହୁ ଅନୁଷ୍ଠାନ ଏ କ୍ଷେତ୍ରରେ ନେତୃତ୍ୱ ଦେଉଥାଆନ୍ତି। ଓଡ଼ିଶାରେ ମଧ୍ୟ ଊନବିଂଶ ଶତାବ୍ଦୀର ଶେଷଭାଗରେ ବହୁ ସାଂସ୍କୃତିକ ଅନୁଷ୍ଠାନ ପ୍ରତିଷ୍ଠା ଲାଭ କରିଥିବା ଜଣାଶୁଣା କଥା। କିନ୍ତୁ ଏମାନଙ୍କର ସଂସ୍କାର-ଆହ୍ୱାନ ଅତ୍ୟନ୍ତ ସୀମିତ ଥିଲା। ସମାଜରେ ବ୍ରାହ୍ମଣମାନେ ଥିଲେ କର୍ଣ୍ଣଧାର ସ୍ୱରୂପ, ଅତ୍ୟନ୍ତ ପ୍ରଭାବଶାଳୀ। ଏହି ସଂସ୍କାର କାର୍ଯ୍ୟରେ

(୩୬) ନୀଳକଣ୍ଠ ଗ୍ରନ୍ଥାବଳୀ, ପ୍ରଥମ ଖଣ୍ଡ—୧୯୬୩ ଆତ୍ମଜୀବନୀ— ପୃ-୬୪

(୩୭) ତତ୍ରୈବ— ପୃ-୧୬୩

(୩୮) "ଆଜି ଯାହା ଲୋଡ଼ା ତାହା ଦେଇଛନ୍ତି ଶ୍ରୀ ନୀଳକଣ୍ଠଦାସ ନିମ୍ନଲିଖିତ ପ୍ରବନ୍ଧମାନଙ୍କରେ, ଯଥା (କ) ତନ୍ତ୍ର ଉପାସନା ସମ୍ବନ୍ଧରେ ଦୁଇ ଏକ କଥା (୧୯୦୯ ମାର୍ଚ୍ଚ, (ଖ) ଅଛୁଁ ଓ ହେବୁ (ଡିସେମ୍ବର ୧୯୦୯ ଓ ଫେବୃଆରି ୧୯୧୦), (ଗ) ନୀତି ଓ ପ୍ରକୃତ (୧୯୧୦ ମେ'), (ଘ) ପ୍ରତିଭା ପୂଜା ଓ ପ୍ରତିମା ପୂଜା (୧୯୧୦ ଜୁଲାଇ), (ଙ) ମୋ ଜାତି (ସେପ୍ଟେମ୍ବର ୧୯୧୧ ଓ ଡିସେମ୍ବର ୧୯୧୧), (ଚ) ଆମ୍ଭର ଥିଲା ଓ କାରଣ ଆଇପାରେ ବା ସାମାଜିକ କୁସଂସ୍କାର (୪ଟି ସଂଖ୍ୟାରେ ପ୍ରକାଶିତ— ଅକ୍ଟୋବର ୧୯୧୧ ଠାରୁ ଜୁଲାଇ ୧୯୧୨ ଭିତରେ) (ସଂସ୍କାରକ ଶ୍ରୀ ନୀଳକଣ୍ଠଙ୍କ ଦାସ— ଅଧ୍ୟାପକ ଶ୍ରୀ ନଟବର ସାମନ୍ତରାୟ— ନୀଳକଣ୍ଠ ସ୍ମାରକୀ— ୧୯୮୦ ପୃ-୧୫୧)

ଯେତେବେଳେ ଖୋଦ୍ ବ୍ରାହ୍ମଣମାନେ ନେତୃତ୍ୱ ନେଲେ, ସେତେବେଳେ ତାହା ଅତ୍ୟନ୍ତ ଅଗ୍ରଗତି କରିବା ସ୍ୱାଭାବିକ । ପୁରୀଜିଲ୍ଲାର ଶାସନଗ୍ରାମଗୁଡ଼ିକ ରକ୍ଷଣଶୀଳ ବ୍ରାହ୍ମଣ ପରିବାରମାନଙ୍କ ଦ୍ୱାରା ଅଧ୍ୟୁଷିତ । ସେମାନଙ୍କ ମଧ୍ୟରୁ କେତେଜଣ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ହୋଇ ବିପ୍ଳବର ବହ୍ନି ଜାଳିଦେଲେ । ସଂସ୍କାରକ ନୀଳକଣ୍ଠ ଏହି ଅଭିଯାନର ସାର୍ଥକ କର୍ଣ୍ଣଧାର ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । (୩୯)

ସତ୍ୟବାଦୀ ବନବିଦ୍ୟାଳୟରୁ ଏହି ଅଭିଯାନ ପ୍ରବଳଭାବରେ ଆରମ୍ଭ ହୋଇଥିଲା । ଶିକ୍ଷକ ଓ ଛାତ୍ରମାନେ ଖୋଲାଖୋଲି ପ୍ରଚଳିତ ପ୍ରଥା ବିରୁଦ୍ଧରେ ପ୍ରତିବାଦ କଲେ । ରକ୍ଷଣଶୀଳ ବ୍ରାହ୍ମଣମାନେ ଏହି କାର୍ଯ୍ୟରେ ଉତ୍ତ୍ୟକ୍ତ ହୋଇ ବନବିଦ୍ୟାଳୟର ଗୃହଛପରଘରେ ଅଗ୍ନି-ସଂଯୋଗ କରିଦେଲେ । ଅତ୍ୟନ୍ତ ମୂଲ୍ୟବାନ ପୁସ୍ତକାଳୟ ସହିତ ବନବିଦ୍ୟାଳୟର ବହୁ ମୂଲ୍ୟବାନ ଆସବାବ ପାଉଁଶ ଗଦାରେ ପରିଣତ ହୋଇଗଲା । (୪୦) କିନ୍ତୁ ଏଥିରେ ନୀଳକଣ୍ଠ ଏବଂ ତାଙ୍କର ସହକର୍ମୀ ଗଣ ଆଦୌ ପରାଜୟ ସ୍ୱୀକାର କରିନଥିଲେ । ନୀଳକଣ୍ଠ ଥିଲେ ଲଢୁଆ ମନୋଭାବର ଲୋକ । ଏ କ୍ଷେତ୍ରରେ ସେ ଲାଭ କରିଥିଲେ ତାଙ୍କର ଆଶୀର୍ବାଦର ବୃଦ୍ଧ ପିତାଙ୍କର ଅକୁଣ୍ଠ ସମର୍ଥନ ଓ ଆଶୀର୍ବାଦ । ବ୍ରାହ୍ମଣ ଶାସନରେ କୌଣସି ଭୋଜିସଭାରେ ତାଙ୍କୁ ରକ୍ଷଣଶୀଳମାନେ ପଚାରିଥିଲେ— "ତୁମେ ବାରଣ ବଢ଼େଇରେ ଦାୟୀ କି ପୁଅରେ ଦାୟୀ । ତୁମ ପୁଅ ସ୍ୱଧର୍ମୀ କାର୍ଯ୍ୟ କରୁଛି । ତାକୁ ତୁମେ ତ୍ୟଜପୁତ୍ର କର" । ବୃଦ୍ଧ ପିତା ପ୍ରତିବାଦ କରି ଭୋଜିସଭାରୁ ଉଠି ଆସିଥିଲେ ଏବଂ ସେ ରାତିଟି ତାଙ୍କର ଉପବାସରେ କଟିଥିଲା । ସେ ଅନୁଭବ କରିଥିଲେ ଯେ

(୩୯) ନୀଳକଣ୍ଠ ସ୍ମାରକୀ—୧୯୮୦, ପୃ-୧୪୪

(୪୦) "ସେ ଯାହା ହେଉ, 'ଋଣ' ରଖିବା ଫଳରେ ନୀଳକଣ୍ଠବାବୁ ସ୍କୁଲ ଉପରେ ସମାଜର କଟାକ୍ଷ ଆଣି ପକାଇଲେ । ପୁରୀ ଆଖପାଖ ଶାସନ-ମାନଙ୍କରେ ହୁଲସ୍ଥୁଲ ପଡ଼ିଲା । ତାଙ୍କ ବାପାଙ୍କୁ ବ୍ରାହ୍ମଣସମାଜ ସଙ୍ଗୁଡ଼ି ସଭାରୁ ଉଠାଇଦେଲେ । ହରିହରବାବୁଙ୍କ ବାପା ମଧ୍ୟ ଅରେ ଅଧେ ନିର୍ଯ୍ୟାତନା ସହିଲେ । ଜଳନ୍ତା ନିଆଁରେ ଆହୁତି ପଡ଼ିଲା । ନୀଳକଣ୍ଠ ବାବୁ 'ମୋ ଋଣ' ନାମରେ ଏକ ପ୍ରବନ୍ଧ ଲେଖିଲେ । ଓଡ଼ିଶାର ପ୍ରଧାନ ସମାଜ ସଂସ୍କାରକ ବିଶ୍ୱନାଥ କର 'ଉତ୍କଳ ସାହିତ୍ୟ'ରେ ତାହା ଛପାଇଲେ । ଅନ୍ୟତମ ସମାଜ ସଂସ୍କାରକ ରାୟବାହାଦୁର ମଧୁସୂଦନ ରାଓ ସେ ପ୍ରବନ୍ଧର ପ୍ରଶଂସା କଲେ । ତାହା ପ୍ରକୃତରେ ଏକ ପଠନୀୟ ପ୍ରବନ୍ଧ । ତାହାର ସମାଜସଂସ୍କାରକ ଦିଗ ଛାଡ଼ିଲେ ମଧ୍ୟ ସାହିତ୍ୟିକ ମୂଲ୍ୟ ଥିଲା । (ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ—ଗୋଦାବରୀଶ ମିଶ୍ର ୧୯୫୮— ପୃ-୨୨୩—୨୨୪)

ତାଙ୍କର ପୁଅ ନୀଳକଣ୍ଠ ଦୂରଦ୍ରଷ୍ଟା । ସେ ଯାହା କରୁଛି, ସମାଜର ମଙ୍ଗଳପାଇଁ କରୁଛି । "ମୋ ନନାଙ୍କ ଦେଶ" ପୁସ୍ତକରେ ନୀଳକଣ୍ଠଙ୍କ ପୁତ୍ର ବିକ୍ରମଦାସ ଅତ୍ୟନ୍ତ ମନଛୁଆଁ ଶୈଳୀରେ ତାହା ବର୍ଣ୍ଣନା କରିଯାଇଛନ୍ତି । ନୀଳକଣ୍ଠଙ୍କର ଏହି ସଂସ୍କାରପ୍ରାଣତା ବନବିଦ୍ୟାଳୟର ଯୁବମାନସରେ ଅତ୍ୟନ୍ତ ପ୍ରଭାବଶାଳୀ ହୋଇଥିଲା ବୋଲି ଜଣାଯାଇଛି । ବନବିଦ୍ୟାଳୟର ଛାତ୍ର ଚନ୍ଦ୍ରଶେଖର ମିଶ୍ର ଏହି ଜାତି-ଆନ୍ଦୋଳନ ଓ ସଂସ୍କାର ସମ୍ପର୍କରେ ଲିପିବଦ୍ଧ କରିଯାଇଛନ୍ତି ଏହିପରି— "୧୯୧୧-୧୨ ସାଲରେ ମାଇନର ସ୍କୁଲ ସଙ୍ଗେ ୪ର୍ଥ ଶ୍ରେଣୀ ଖୋଲିଥାଏ ମାତ୍ର । ପୂର୍ଣ୍ଣ ହାଇସ୍କୁଲ ହେଲାବେଳକୁ ଓ ସେହି ତିନିଚାରିବର୍ଷ ମଧ୍ୟରେ ଅସ୍ପୃଶ୍ୟତା-ଦୂରୀକରଣ, ସାମାଜିକ ବହୁ କୁସଂସ୍କାର ତ୍ୟାଗ ଏବଂ ଏକ ପଙ୍‌କ୍ତିରେ ଜାତିବର୍ଣ୍ଣ ନିର୍ବିଶେଷରେ ଭୋଜନ ଇତ୍ୟାଦି ବହୁତ ଦେଶ ଓ ସମାଜର ଉନ୍ନତିକର କଳ୍ପନା କାର୍ଯ୍ୟକାରୀ ହୋଇଥିଲା କିନ୍ତୁ ମୁଁ ପ୍ରାଇମେରୀ ବିଦ୍ୟାଳୟରେ ଥିବା ସମୟରେ ଶ୍ରୀନୀଳକଣ୍ଠ ଦାସ କେତେ ଯୁବକଙ୍କୁ ଅନୁପ୍ରାଣିତ କରି ପଣ୍ଡିତବ୍ରାହ୍ମଣ ଜାତି ରଖିବା ଶାସ୍ତ୍ର ବିରୁଦ୍ଧ ନୁହେଁ – ତେଣୁ ଜାତି ରଖିବା ସାମାଜିକ ନୀତିରେ କ୍ଷତିକାରକ ନୁହେଁ ଏହା ପ୍ରଚାର କରୁଥିଲେ । ସେ ନିଜେ ଓ ତାଙ୍କ ଦଳର ଯୁବକମାନେ ଜାତି ରଖିଲେ । ରକ୍ଷଣଶୀଳ ବ୍ରାହ୍ମଣ ସମାଜରେ ଚହଲି ପଡ଼ିଗଲା; ମାତ୍ର ନୀଳକଣ୍ଠଙ୍କର ପାଣ୍ଡିତ୍ୟ, ଯୁକ୍ତି ଏବଂ ବାଗ୍ମିତା ଦୃଷ୍ଟିରେ ସମାଜ ବହୁ ଚେଷ୍ଟା କଲେ ମଧ୍ୟ ସେମାନଙ୍କୁ ଏକଘରକିଆ କରିପାରି ନଥିଲା— ଭୋଜି ସଭାରେ ବାସନ୍ଦ କରିପାରି ନଥିଲା— ମୁକ୍ତିମଣ୍ଡପ ଦ୍ୱାରା ସେମାନଙ୍କ ପ୍ରତି ରୁଦ୍ଧ କରିପାରି ନଥିଲା । (୪୧)

ଓଡ଼ିଆ ଜାତୀୟତାର ପ୍ରଧାନ ମନ୍ତ୍ରଦାତା କୁଳବୃଦ୍ଧ ମଧୁସୂଦନ ଦାସ ସତ୍ୟବାଦୀ ବନବିଦ୍ୟାଳୟ ପରିଦର୍ଶନ କରି ଗଦ୍‌ଗଦ୍ କଣ୍ଠରେ ପିଲାମାନଙ୍କୁ କହିଥିଲେ— "ଏ ବିଦ୍ୟାଳୟ ଧନରେ ଗଢ଼ା ହେଉନାହିଁ, ରକ୍ତ, ମାଂସ, ମସ୍ତିଷ୍କରେ ଗଢ଼ା ହେଉଛି । ଗୋପବନ୍ଧୁ-ନୀଳକଣ୍ଠଙ୍କୁ ମୁଁ ବହୁଦିନରୁ ଜାଣେ । ସେ ଦୁହେଁ ଏବଂ ଯେଉଁ କୃପାସିନ୍ଧୁ, ଗୋଦାବରୀଶ ଆସିବେ— ଏ ସମସ୍ତେ କେବଳ ଏ ବିଦ୍ୟାଳୟରେ ସମ୍ପୃକ୍ତ ନୁହଁନ୍ତି । ପରାଧୀନ ଭାରତର ଏବଂ ଖଣ୍ଡବିଖଣ୍ଡିତ ଓଡ଼ିଆଜାତିର ମୁକ୍ତି ସାଧନ ପାଇଁ ଏମାନେ ପ୍ରାଣବଳି ଦେଇଛନ୍ତି । ତୁମେ ପିଲାମାନେ ଏମାନଙ୍କ ପାଖରେ ବସି, ଶୋଇ, କାମ କରି, ପଢ଼ି, ଯେତେବେଳେ ଯୁବକ ହେବ ସେତେବେଳେ ଉତ୍କଳଜନନୀର ଶହ ଶହ ଗୁଣୀ ସନ୍ତାନ ଏ ଦେଶର ନାୟକ ହେବେ । ଘର ପୋଡ଼ିଗଲା, ଇଟାର କାନ୍ଥ ଭାଙ୍ଗିଗଲା-ବିଦ୍ୟାଳୟଗୃହ ରକ୍ତମାଂସ ଦ୍ୱାରା ଗଢ଼ା ହେଉଛି । × × × × ସ୍ୱାଧୀନ ମନୁଷ୍ୟର ସାଧୁଚିନ୍ତା ବିଫଳ ହୁଏ ନାହିଁ ।(୪୨)

୪୧। ସତ୍ୟବାଦୀରେ ସାତ ବର୍ଷ— ୨ୟ ମୁଦ୍ରଣ—୧୯୬୬—ପୃ—୪
୪୨। ତତ୍ରୈବ—ପୃ—୪୧

ଦୃଢ଼ ମନୋବଳ ନ ଥିଲେ ନୀଳକଣ୍ଠଙ୍କ ଜୀବନରେ ଏପରି ଦୁଃସାହସିକତା ସମ୍ଭବ ହୋଇ ନଥାନ୍ତା । ସେ ଭାରତୀୟ ସଂସ୍କୃତିର ଉପଯୁକ୍ତ ଦାୟାଦ ଥିଲେ । ସେ ମନ ଓ ପ୍ରାଣରେ ତାହାର ସମ୍ମାନ ଓ ଜୟଗାନ କରୁଥିଲେ । ସେ ବିଶ୍ୱାସ କରୁଥିଲେ ଯେ ପରାଧୀନତାର ଗ୍ଳାନି ଯୋଗୁ ଜାତୀୟ ସଂସ୍କୃତିରେ ଅବକ୍ଷୟ ଭାବ ରାଜପଣ କରୁଅଛି । ଜାତିର କଲ୍ୟାଣ ପାଇଁ ଏହି କଳଙ୍କଗୁଡ଼ିକୁ ଧୌତ କରିବାକୁ ହେବ । ୧୯୧୨ ସାଲରେ ବନବିଦ୍ୟାଳୟର ପିଲମାନଙ୍କ ଉଦ୍ଦେଶ୍ୟରେ ପବିତ୍ର ଶ୍ରୀପଞ୍ଚମୀ ଦିନରେ ସେ ଲେଖିଥିଲେ "ଶ୍ରୀପଞ୍ଚମୀ" କବିତା । ଏଥିରେ ସେ କହିଥିଲେ—

"ଭାରତ ପତିତ ଆଜି ହୀନ ଆର୍ଯ୍ୟ ହିନ୍ଦୁ
ହରିଇଛି ଜ୍ଞାନର ସେ ସ୍ନେହ
ତୁଳରେ ପ୍ରତିମା ରଚି ନାରିକେଳ ପରେ
ଗଢ଼େ ତେଣ୍ଡି ଭୌତିକ ବିଗ୍ରହ ।

× × × ×

ଥିଲ ଥିଲ ବୋଲି ପଡ଼ି କୁସଂସ୍କାର ଜାଲେ
ଦେଶସାରା ଜଡ଼ପିଣ୍ଡମୟ
ନାହିଁ ଆଜି ବିଜ୍ଞାନର ସେ ପୁଣ୍ୟ ବିଭବ
କର୍ମଯୋଗେ ଶକ୍ତିର ସଞ୍ଚୟ ।"

ନୀଳକଣ୍ଠଙ୍କର ଏ ସଂସ୍କାର-ଆନ୍ଦୋଳନ ସାରା ଓଡ଼ିଶାରେ ସଂକ୍ରମିତ ହୋଇଥିଲା । ମୁକୁରପତ୍ରିକାରେ "କାଶ" ପ୍ରବନ୍ଧରେ ସେ ଅଣ୍ଟା କରି ଲେଖିଥିଲେ "କେବଳ ବାପେ, ବଡ଼ବାପେ, ଯାହା କରିଅଛନ୍ତି ବୋଲି ଆମର ଧାରଣା ହୋଇଅଛି ଏବଂ ଲୋକେ ଯାହା କରୁଅଛନ୍ତି, ତାହାହିଁ ଶାସ୍ତ୍ର ତାହାହିଁ ସବୁ ।"

ନୀଳକଣ୍ଠ "ମୋ କାଶ" ପ୍ରବନ୍ଧରେ ଗୋଟିଏ ଉଦ୍ଧୃତି ଦେଇଥିଲେ—

"ଜାତୀୟ କୁସଂସ୍କାର ! ତାହାକୁ ନମସ୍କାର
ନାହିଁ ତହିଁରେ କିଛି କାରଣ ହେ ।"

ଆମ ଦେଶରେ ଧର୍ମନାମରେ ଅନେକ କଥା ପ୍ରଚଳିତ ହୋଇଆସୁଛି । ଏହା ସତ୍ୟ କି ମିଥ୍ୟା ସେ କଥା ପରୀକ୍ଷା ନକରି ଜନସାଧାରଣ ଅନୁସରଣ କରି ଆସୁଅଛନ୍ତି । ଏଇଥିରୁ କୁସଂସ୍କାରଗୁଡ଼ିକର ସୃଷ୍ଟି । ୧୯୦୯-୧୦ ସାଲରେ ଲିଖିତ "ଅଛୁ ଓ ହେବୁ" ପ୍ରବନ୍ଧରେ ପଣ୍ଡିତ ନୀଳକଣ୍ଠ ଏହି ମନୋଭାବର ତୀବ୍ର ପ୍ରତିବାଦ ଜଣାଇଥିଲେ । ସେ ଲେଖିଥିଲେ—"ସମାଜର ପ୍ରାଚୀନତା, ଅନୁଷ୍ଠାନ-

ମାନଙ୍କର ସଂରକ୍ଷଣ, ସଂଶୋଧନ, ପରିବର୍ତ୍ତନ ପ୍ରଭୃତି ଯାବତୀୟ ସାମାଜିକ ପ୍ରକ୍ରିୟା ଦୁଇଶକ୍ତିର ସଂଘର୍ଷଣରେ ପର୍ଯ୍ୟବସିତ, ସେଥିମଧ୍ୟରୁ ଗୋଟିଏ ରକ୍ଷଣଶୀଳତା ଓ ଅନ୍ୟଟି ପରିବର୍ତ୍ତନପ୍ରବଣତା । ଗୋଟିଏ କହେ, ଆମ୍ଭେମାନେ ଚିରଦିନ ପୁରୁଷାନୁକ୍ରମେ ଏଇପରି ଚଳିଆସୁଅଛୁ, ସୁଖରେ ଅଛୁ, ଏଇପରି ଥିବୁ ।' ଅନ୍ୟଟି କହେ, ଏପରି ଅଛୁ ସତ୍ୟ କିନ୍ତୁ ଏପରି ରହିବା ଉଚିତ ନୁହେଁ । ଅତଏବ ଯେପରି ଉଚିତ ସେଇପରି ହେବୁ ।''

ପରିବର୍ତ୍ତନ ହେଉଛି ସଂସାରର ନିୟମ, ସୃଷ୍ଟିର ଧର୍ମ । ବିଶେଷତଃ ମନୁଷ୍ୟ ସମାଜ ପକ୍ଷରେ ଏହା ନିଗୂଢ଼ ସତ୍ୟ । ମନୁଷ୍ୟେତର ପ୍ରାଣୀ ପ୍ରବୃତ୍ତିଦ୍ୱାରା ପରିଚାଳିତ । ତେଣୁ ସେମାନଙ୍କର ଅବସ୍ଥାରେ କୌଣସି ପରିବର୍ତ୍ତନ ଦେଖାଯାଏ ନାହିଁ । କିନ୍ତୁ ମନୁଷ୍ୟ ବିବେକର ଅଧୀନ ହୋଇ କାର୍ଯ୍ୟ କରୁଥିବାରୁ କାଳଚକ୍ରର ଆବର୍ତ୍ତନରେ କେତେ ପରିବର୍ତ୍ତନର ସମ୍ମୁଖୀନ ହୋଇଆସିଅଛି । ଗିରିଗୁହାରେ ଅବସ୍ଥାନ କରୁଥିବା ସେ କାଳର ମନୁଷ୍ୟ ଆଜି ଗ୍ରହ ଗ୍ରହାନ୍ତର ବକ୍ଷରେ ପାଦ ଦେଇ ଅନନ୍ତ ଅନ୍ତରୀକ୍ଷରେ ଭ୍ରମଣ କରିବାର ଶକ୍ତି ହାସଲ କରିଅଛି । ତେଣୁ ନୀଳକଣ୍ଠ କହିଛନ୍ତି —''ଏ ସବୁ ସ୍ପଷ୍ଟ ପ୍ରମାଣ କରୁଅଛି ଯେ ମନୁଷ୍ୟ ସର୍ବଦା ପରିବର୍ତ୍ତନଶୀଳ, ବୁଦ୍ଧି ଓ ବିଚାରଶକ୍ତି ବଳରେ ସେ ନିଜକୁ ସର୍ବଦା ଉତ୍ତରୋତ୍ତର ଉନ୍ନତ ପଥରେ ଟାଣି ନେଉଅଛି । କି ଆଧ୍ୟାତ୍ମିକ, କି ସାମାଜିକ, କି ବ୍ୟକ୍ତିଗତ କୌଣସି ଜୀବନରେ ତାହାର ଆସନ ସ୍ଥିର ନୁହେଁ । ସେ ସର୍ବଦା ଜଗତରେ କିଛି ହେଲେ ଗୋଟାଏ ଅଭାବ ଅନୁଭବ କରି ତାହା ପୂର୍ତ୍ତି କରିବା ନିମନ୍ତେ ଉପାୟ ଉଦ୍ଭାବନ କରୁଅଛି ।''

ଭାରତର ସମାଜ-ଜୀବନ ଅତ୍ୟନ୍ତ ପ୍ରାଚୀନ । ଏହି ପ୍ରାଚୀନ ସମାଜରେ ''ଅଛୁ'' ଶକ୍ତି ଅତ୍ୟନ୍ତ ପ୍ରବଳ ହୋଇଉଠେ । ସାଧାରଣ ଲୋକଙ୍କର ପରମ୍ପରାଗତ ଅଭ୍ୟାସ ସ୍ୱଭାବରେ ପରିଣତ ହୋଇଯାଏ । ଯୁଗେ ଯୁଗେ ''ସ୍ମୃତି'' ଶାସ୍ତ୍ର ପ୍ରଣୀତ ହୋଇ ଲୋକଙ୍କୁ କାର୍ଯ୍ୟ କରିବାକୁ ବାଧ୍ୟ କରିଥାଏ । ସେମାନଙ୍କର ସ୍ୱାଧୀନ ଚିନ୍ତା ଓ କାର୍ଯ୍ୟ ବ୍ୟାହତ ହୁଏ । ଅନ୍ଧଭାବରେ ଶାସ୍ତ୍ରବଚନ କିମ୍ବା ପ୍ରାଚୀନ ଚଳଣିକୁ ମାନିନେବା ଏକ ଗୌରବରେ ପରିଣତ ହୋଇଯାଏ । ସମାଜର ପ୍ରଗତି ମନ୍ଥର ହୁଏ ! ସମସ୍ତେ କିଛି ନ ବୁଝି କେବଳ ଚିତ୍କାର କରନ୍ତି— ''ଆମେ ଭଲ ଥିଲୁ, ପୂର୍ବପୁରୁଷମାନେ ଦେବତା ଥିଲେ, ସର୍ବଜ୍ଞ ଥିଲେ । ସେମାନେ ଯାହା କହିଅଛନ୍ତି ବା କରିଅଛନ୍ତି ତାହା ସର୍ବୋତ ଭାବରେ ପ୍ରମାଦ-ଶୂନ୍ୟ, ଆମେ ବୁଝୁଁ ବା ନ ବୁଝୁଁ ସେମାନଙ୍କ ପନ୍ଥା ବୋଲି ଯାହାକୁ ଜାଣି ଆସିଅଛୁ ସେଥିରେ ଚାଲୁଥିବୁ ତାହା ଛଡ଼ା ଆଉ ପ୍ରକୃଷ୍ଟପନ୍ଥା ସମ୍ଭବ ହୋଇ ନପାରେ ଇତ୍ୟାଦି ।''

ବିରାଡ଼ି ବେକରେ ଘଣ୍ଟି ବାନ୍ଧିବ କିଏ ? ଏହି ନ୍ୟାୟରେ ସମାଜର ଏହି ଜାଡ଼୍ୟତ୍ୱ ବିରୁଦ୍ଧରେ କେହି ସାଧାରଣଲୋକ ତୁଣ୍ଡ ଖୋଲିବାପାଇଁ ସାହସ କରନ୍ତି

ନାହିଁ । ଶକ୍ତିଶାଳୀ ସମାଜ ମଧ୍ୟ ସେମାନଙ୍କୁ କାବୁ କରିହୁଏ । ମାତ୍ର ପଣ୍ଡିତ ନୀଳକଣ୍ଠ ଥିଲେ ଅସାଧାରଣ ବ୍ୟକ୍ତିତ୍ୱ । ସେ ଥିଲେ ଆଜୀବନ ବିପ୍ଳବୀ । ସମାଜକୁ ବଦଳାଇବା ପାଇଁ ସେ ଯୌବନ କାଳରୁ ବଦ୍ଧପରିକର ହୋଇଥିଲେ । ଯେଉଁମାନେ ପ୍ରତିକ୍ରିୟାଶୀଳ ଲୋକ, ସେମାନେ ତାଙ୍କୁ ଦମନ କରିବାପାଇଁ ନାନା ଚକ୍ରାନ୍ତ କରିଥିଲେ ହେଁ ଶେଷରେ ପରାଭବ ଓ ପରାଜୟ ସ୍ୱୀକାର କରିଥିଲେ । ବାସ୍ତବିକ ସାଧୁଚକ୍ରାନ୍ତ କେବେହେଲେ ବିଫଳ ହୁଏନାହିଁ ।

ସଂସ୍କାରକ ନୀଳକଣ୍ଠଙ୍କର ବହୁମୁଖୀ କାର୍ଯ୍ୟକଳାପ ଆଲୋଚନା କଲାବେଳେ ପ୍ରସଙ୍ଗତଃ "ମୋ ଜୀବନ" ପ୍ରବନ୍ଧଟି ଆପେ ଆପେ ସ୍ମରଣକୁ ଆସିଯାଏ । ନୀଳକଣ୍ଠ ଏ ସମ୍ପର୍କରେ ନିଜର ଆତ୍ମଜୀବନୀରେ ଚମତ୍କାର ବିଶ୍ଳେଷଣ କରିଯାଇଛନ୍ତି । "ମୋ ଜୀବନ" ପ୍ରବନ୍ଧ ବା ଜୀବନରେଖିବା ତାଙ୍କର ବିପ୍ଳବର ମାପକାଠି ନଥିଲା । ପ୍ରତିକ୍ରିୟାଶୀଳ ଲୋକେ ତାହାକୁ ଏକ ପ୍ରତୀକ ଭାବରେ ଦେଖାଇଥିଲେ ମାତ୍ର ।

"ମୋ ଜୀବନ" ପ୍ରବନ୍ଧରେ ପ୍ରଥମରୁ ନୀଳକଣ୍ଠ ଏହି ତରୁଣ ବୟସରେ ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ପାରମ୍ପରିକ ଆଚାରବିଚାରକୁ ଲୋକମାନେ ଅକୁଣ୍ଠ ଭାବରେ ଗ୍ରହଣ କରି ଚାଲିଥିବାରୁ ନିନ୍ଦାବାଦ କରିଛନ୍ତି । ଯେପରି ଶବ-ମସ୍ତକରେ ଗଙ୍ଗା-ମାଟିରେ ହରିନାମ ଲେଖିଦେଲେ ମୃତ ଲୋକର ମୁକ୍ତିହୁଏ ବୋଲି ବିଶ୍ୱାସ ଜନ୍ମାଇ ଦିଆଯାଇଛି । ଏ କାର୍ଯ୍ୟରେ ଗଙ୍ଗା-ମାଟି ବ୍ୟତୀତ ଆଉ କେଉଁ ମାଟି ହେବନାହିଁ । ନୀଳକଣ୍ଠ ସେଥିପାଇଁ ଲେଖିଲେ "ଫଳ କଥା, ଯାହା କିଛିଦିନ ହେଲା ଚଳିହୋଇ ଆସୁଅଛି ତାହାର ଠିକ ସେହିପରି କରୁଚୁ ବୋଲି ବିଶ୍ୱାସ କରି କରିବାକୁ ହେବ, ତାହାକୁ ଈଶ୍ୱରୋପଦେଶ ବୋଲି ମାନିବାକୁ ହେବ—ନହେଲେ ଧର୍ମର ରହିବା ସ୍ଥାନ ଆଉ କାହିଁ ?" (ମୋ ଜୀବନ)

ନୈଷ୍ଠିକ ବ୍ରାହ୍ମଣମାନଙ୍କ ଘରେ ଶାଳଗ୍ରାମ ପୂଜା ଏକ ପାରମ୍ପରିକ ବିଧି । ଅନେକ ମନେ କରନ୍ତି ଯେ ଶାଳଗ୍ରାମ ଶିଳାଖଣ୍ଡ କୁଆଡ଼େ ଜୀବନ୍ତ ବିଗ୍ରହ । ତହିଁରେ ସ୍ୱୟଂ ବିଷ୍ଣୁ ବିରାଜମାନ କରନ୍ତି । ଯୁବକ ନୀଳକଣ୍ଠ ସେହି ପରିବାରର ସଂସ୍କାର ମଧ୍ୟରେ ଆତଯାତ ହୋଇ ସୁଦ୍ଧା ସଂଶୟ-ଦୋଳାରେ ଦୋଳାୟିତ ହୋଇଛନ୍ତି । ତେଣୁ ସେ ତାଙ୍କର ଅତୁଳ ଭାଷାରେ ପ୍ରକାଶ କରିଛନ୍ତି—'ମୁଁ ଜାଣିଥିଲି ମୁଁ ଗୋଟିଏ ଗାଉଁଲିଆ ପଥର ଖୁସିରେ ଧରିଥିଲି । ତା'ମୋର ରୁଚି । ସେଥିରେ କାହାର କିଛି କହିବାର ନାହିଁ । କିନ୍ତୁ ସେ ପଥର ଯେବେ ଗ୍ରାମକୁ ଆସି ଦେଖିଲି ଶାସନୀ ବ୍ରାହ୍ମଣେ ତାକୁ ଶାଳଗ୍ରାମ ନାମ ଦେଇ ମୋଠାରୁ ଛଡ଼ାଇ ନେଇ ଦାଅଁ ଖଟୁଲିରେ ଥୋଇ ତା' ସଙ୍ଗେ ସାଡ଼ମ୍ବର ପୂଜାପଦ୍ଧତି ଯୋଡ଼ିଦେଲେ । ଲୋକଙ୍କୁ ସେ ପୂଜାର ଆଡ଼ମ୍ବର ଦେଖାଇବା ତ ସ୍ୱାଭାବିକ ।" (ମୋ ଜୀବନ) ଏଇ ଧର୍ମଧ୍ୱଜୀ ବ୍ରାହ୍ମଣମାନେ ନାନା ପାପକର୍ମର ଦୁହାଇ ଦେଇ ସାଧାରଣ

କୁସଂସ୍କାରଗ୍ରସ୍ତ ଲୋକମାନଙ୍କୁ ପ୍ରାୟଶ୍ଚିତ ବିଧାନ କରି ଦେଉଥିଲେ । ସେମାନେ ସମାଜପତିମାନଙ୍କ ଇଚ୍ଛାରେ ବାଧ୍ୟ ହେଉଥିଲେ ପ୍ରାୟଶ୍ଚିତ କରିବାପାଇଁ । ଅନ୍ୟର ରୁଚି ଓ ଚଳଣି ଉପରେ ଧର୍ମ ନାମରେ ହସ୍ତକ୍ଷେପ କରି ଏହି ଧର୍ମଧ୍ୱଜୀଗଣ ଯୁଗେ ଯୁଗେ ଅବିଗ୍ଚାର କରି ଆସିଥିଲେ । ଏମାନେ ନିଜେ ନିରକ୍ଷର ଥିଲେ । କୌଣସି ଶାସ୍ତ୍ରପୁରାଣର ପାଖ ପ୍ରବେଶକରି ନଥିଲେ । ଅଭ୍ୟାସ କରି କିଛି ମୁଖସ୍ଥ କରି ଲୋକ ମାନଙ୍କ ଧର୍ମରକ୍ଷା କରିବାର ଏକଚାଟିଆ ଦାୟିତ୍ୱ ନେଇଛନ୍ତି ବୋଲି ଦାବୀ କରି ବୁଲୁଥିଲେ । ନୀଳକଣ୍ଠ ସେମାନଙ୍କୁ ଲେଖିଛନ୍ତି ଏହିପରି—"ମୁଁ ତ ଏ ନିରକ୍ଷର ବେଦଶାସ୍ତ୍ର ବିଶାରଦମାନଙ୍କୁ କେବେ ବିନା ଅର୍ଥଲାଭରେ ବ୍ୟବସ୍ଥା ଦେବାର ଦେଖିନାଇ । ମୋର ଧର୍ମରକ୍ଷା ଲାଗି ଏମାନେ ସ୍ୱତଃ ଏତେ ବିବ୍ରତ କାହିଁକି ?" (ମୋ ଜୀବନୀ) ଅଥଚ ପଣ୍ଡିତଙ୍କ ପୁଅ ମାଙ୍କଡ଼ ମାଇଲେ ଦୋଷ ନାହିଁ ନ୍ୟାୟରେ ଏମାନେ ଯାହା ଅପକୀର୍ତ୍ତି କଲେ ମଧ୍ୟ ଗୃହ ଖୁଣ ମାଫ୍ । କାରଣ ସେମାନେ ବ୍ରାହ୍ମଣ, ଛତିଶପାଟକର ରାଜା, ସ୍ୱୟଂ ବ୍ରହ୍ମାଙ୍କଠାରୁ ଜନ୍ମ ହୋଇ ପଡ଼ିଛନ୍ତି । ଅନ୍ୟ ଘରେ ବେକରେ ପଘା ଲାଗି ଗୋରୁ ମଲେ ପାପ । ପ୍ରାୟଶ୍ଚିତ ଅବଶ୍ୟ କରିବାକୁ ହେବ । କାହାଘରେ ଘା'ରେ ହଠାତ୍ ପୋକ ପଡ଼ିଲେ ମହାପାପ । ପ୍ରାୟଶ୍ଚିତ ନକରି ଉପାୟ ନାହିଁ । ମାତ୍ର ବ୍ରାହ୍ମଣଘରେ ଏ ସବୁ ଆଦୌ ଦୋଷାବହ କଥା ନୁହେଁ । ବ୍ରାହ୍ମଣ ଧର୍ମଧ୍ୱଜୀଙ୍କର ଅତ୍ୟାଗ୍ଚାରକୁ ବିଦ୍ରୂପକରି ନୀଳକଣ୍ଠ ସମାଜର ଆଖି ଖୋଲି ଦେଇଥିଲେ । ସେ ଲେଖିଥିଲେ—"ଆପଣ-ମାନେ ଅବିଶ୍ୱାସ କରିବେ ନାଇ, ମୁଁ ଆଖିରେ ଦେଖିଚି, ସେଦିନ ସଙ୍କର୍ଷଣପୁର ଗୁନାରଥେ ନିଜ ବିଲରେ ବାଲୁଙ୍ଗା ଓ ଘାସ ବାଛୁଥିଲେ, ହଠାତ୍ ଗୋଟିଏ ବୁଢ଼ୀଗାଈ ଆସି ବିଲରେ ମୁହଁ ପୂରାଇ ଦେବାରୁ ସେ ଏତେ ରାଗିଗଲେ ଯେ ତାହାର ଫଳରେ ଗାଈଟି କିଛିଦୂରଯାଇ ପଡ଼ି ମରିଗଲା । ରଥେ କିନ୍ତୁ ତାଙ୍କ ଭାଙ୍ଗପୋଟା ରକ୍ତପିତ୍ତି ଠେଙ୍ଗାଟି ଭାଜିଗଲା ବୋଲି ବହୁତ ଦୁଃଖ ପ୍ରକାଶ କରି ଘରକୁ ଆସିଲେ । ମୋ ମନେଅଛି ତାହାର ପ୍ରାୟ ଦୁଇ ବର୍ଷ ପରେ ଯେତେବେଳେ ସେ କେଲା ବେହେରାର ଗ୍ଚାମୁଣ୍ଡିଆକୁ ଗୋବଧ ପ୍ରାୟଶ୍ଚିତରେ 'ବ୍ରାହ୍ମଣ-ପଣ' (ଚୂଡ଼ା ଦହି) କରିବାକୁ ଯାଇଥିଲେ ସେତେବେଳେ ରଥଙ୍କ କଥାବାର୍ତ୍ତାରୁ ବାରଅଣାରୁ ବେଶି ସେଇ ଠେଙ୍ଗାଟି ବିଷୟରେ ହୋଇଥିଲା ।" (ମୋ ଜୀବନୀ)

ଦେବୀପୂଜା ଓ ତନ୍ତ୍ରସାଧନା ନାମରେ ଏଇ ସମାଜପତି ଶକ୍ତିଶାଳୀ ଗୋଷ୍ଠୀ ଖାଦ୍ୟ ଜୀଶାସେବନ କମ୍ବା ଅଗମ୍ୟାଗମନ କରୁଥିଲେ । କାହାରି ଶକ୍ତି ବା ସାହସ ନଥିଲା ପ୍ରତିବାଦ କରିବାପାଇଁ । ଶାସ୍ତ୍ରର ପାଖ ନପଶି ଏମାନେ ଶାସ୍ତ୍ର ନାମରେ ସମସ୍ତଙ୍କର ମୁଖ ବନ୍ଦ କରି ଦେଇଥିଲେ । ଦେଶରେ ଯେ ପ୍ରଗତିର ସ୍ରୋତ ପ୍ରବାହିତ ହେଉଛି, ନବଯୁଗର ବାର୍ତ୍ତା ଓ ବୈଜ୍ଞାନିକ ବିଭୂତି ଅନନ୍ୟ ଅଭିନବମାୟ ପରିବର୍ତ୍ତନ ଆନୟନ କରିବାରେ ଲାଗିଛି, ଏ ସମ୍ବାଦ ସେମାନେ ରଖୁ ନଥିଲେ । ଅତି ସଙ୍କୀର୍ଣ୍ଣ

ଥିଲା ସେମାନଙ୍କର ପରିବେଶ ଓ ଚିନ୍ତାଧାରା । ତାହିଁର ବଳୟ ଭେଦ କରି ଯିବାପାଇଁ ସେମାନେ ଚିନ୍ତା କରି ପାରି ନଥିଲେ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଏ ଦେଶରେ ପାଶ୍ଚାତ୍ୟ ଶିକ୍ଷାର ପ୍ରଚଳନ ହେଲା । ନୂତନ ଶିକ୍ଷିତ ଗୋଷ୍ଠୀ ଜଗତର ଭାବଧାରା ସହିତ ସଂପର୍କ ରକ୍ଷା କରି ଚିନ୍ତାକରିବାକୁ ଲାଗିଲେ । ଚତୁର୍ଦ୍ଦିଗରେ ଏକ ସ୍ୱତନ୍ତ୍ରତାର ଜୟଗୀତ ଉଦ୍‌ଘୋଷିତ ହେଉଥିଲା । ଏହି ଧର୍ମଧ୍ୱଜୀଗଣ ନିଜର ସ୍ୱାର୍ଥହାନି ଓ ଅଧିକାରଲୋପ ଭୟରେ ପ୍ରଗତିଶୀଳ ଶିକ୍ଷା ବ୍ୟବସ୍ଥାର ବିରୋଧ କରୁଥିଲେ । କାଗଜ ଛୁଇଁଲେ ମହାପାପ ହେବ ବୋଲି ଘୋଷଣା କରିଦେଲେ । ଇଂରେଜୀ ପାଠ ପଢ଼ିଲେ କୁଳନାଶ ହେବ ବୋଲି ସେମାନେ ଧାରଣା ଜନ୍ମାଇ ଦେଲେ । ନୀଳକଣ୍ଠ ଏଇମାନଙ୍କୁ ବିଦ୍ରୂପ କରି ଲେଖିଥିଲେ—"ନ ଜାଣି କରି ପୂର୍ବକାଳ ଲୋକ ସବୁ କାଗଜ ଛୁଉଁ ନଥିଲେ । ହଇ ହେ ଅନାମିଶ୍ରେ ! ତମେ ତ ବୁଢ଼ା ହେଲଣି, ତମ ମନେ ନଥିବ । ଏ ଗାଁରେ କେଇ କାଗଜ ଛୁଉଁଥିଲେ ? ଅଜା ଆମର କେତେ ମନା କରନ୍ତି । ଏବେ ନାତିକ ପଠେଇଚ ସାହାବ ପାଠ ପଢ଼ିବାକୁ ପାଇବ ଯେ । ଆମେ ଅକ୍ଷର ଚିହ୍ନି ନାହୁଁ, ଭଲ ହୋଇଚ । କେଜାଣି ପଢ଼ୁ ପଢ଼ୁ କି ପାଠ ନାଇଁ କି ପାଠ ପଢ଼ନ୍ତୁ, ପଛକୁ କୁଳଧର୍ମ ଯାଆନ୍ତା ।" (ମୋ ଜଣ)

ନୀଳକଣ୍ଠଙ୍କ ବ୍ୟକ୍ତିତ୍ୱ-ସାଧନାର ପ୍ରଧାନ ମାପକାଠି ଥିଲା ସ୍ୱାଧୀନ ଚିନ୍ତା । ସେ ଯେଉଁଠାରେ କିଛି ଅବ୍ୟାପାର ଦେଖିଥିଲେ ସେ ସଂପର୍କରେ ପ୍ରଶ୍ନ ପଚାରିଥିଲେ ଏବଂ ସଂସ୍କାରପାଇଁ ଆହ୍ୱାନ ଜଣାଇଥିଲେ । ସ୍ୱାର୍ଥାନ୍ୱେଷୀ ଧର୍ମଧ୍ୱଜୀ ସମାଜପତି-ମାନଙ୍କର ଛଳନାର ମୁଖା ଖୋଲିଦେଇ ବାରମ୍ବାର ଲାଞ୍ଛିତ କରିଥିଲେ । ପ୍ରତିକ୍ରିୟା ସ୍ୱରୂପ ନୀଳକଣ୍ଠଙ୍କ ପରିବାର ଏବଂ କର୍ମସ୍ଥଳୀ ନାନା ଅତ୍ୟାଚାରର ଶିକାର ହୋଇଥିଲେ ହେଁ ଏ ସବୁରେ ଟଳିଯାଇ ବିଭ୍ରାନ୍ତ ହେବାର ତାଙ୍କୁ କେହି ଦେଖିନାହିଁ । ବରଂ ସମାଲୋଚନାକୁ ଭ୍ରୂକ୍ଷେପ ନକରି ନୀଳକଣ୍ଠ ସମାଜର କଲ୍ୟାଣ-ପାଇଁ ଦ୍ୱିଗୁଣ ଉତ୍ସାହରେ ଲାଗିପଡୁଥିଲେ ଏବଂ ନିଜର ସହକର୍ମୀ ଓ ଅନୁଚରମାନଙ୍କୁ ମଣାଇ ପାରୁଥିଲେ ।

ନୀଳକଣ୍ଠଙ୍କର ଏ ସଂସ୍କାର-ପ୍ରୟାସର ବ୍ୟାପ୍ତି ଅସୀମ । ସାହିତ୍ୟ, ଧର୍ମ, ରାଜନୀତି, ଦର୍ଶନ ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ସେ ଗତାନୁଗତିକତାର ଅଧୀନ ହୋଇନାହାନ୍ତି । ଚଳି ଆସିଛି ବୋଲି ସେ ବିଶ୍ୱାସ କରିବାକୁ ରାଜି କାହିଁକି ହେବେ ? ସ୍ୱାଧୀନଚିନ୍ତାର ବିକାଶ ଘଟୁ ବୋଲି ସେ ସବୁକ୍ଷେତ୍ରରେ ଦାବୀ କରୁଥିଲେ । ଏ ସଂପର୍କରେ ଗୀତାର ପାଣ୍ଡିତ୍ୟ ପୂର୍ଣ୍ଣ ମୁଖବନ୍ଧ, ଓଡ଼ିଆ ସାହିତ୍ୟର କ୍ରମପରିଣାମ, ସଂସ୍କୃତ ଓ ସଂସ୍କୃତି ପ୍ରଭୃତି ଗ୍ରନ୍ଥ ପାଠ କଲେ ପଣ୍ଡିତ ନୀଳକଣ୍ଠଙ୍କ

ମନୋଭାବର ପ୍ରକୃତ ପରିଚୟ ମିଳିଥାଏ । କୁସଂସ୍କାରକୁ ଏଡ଼ି କୃତିତ୍ୱ ଫୁଟାଇବା ପାଇଁ ସର୍ବଦା ସେ ଆହ୍ୱାନ ଜଣାଇଛନ୍ତି । (୪୩)

"ସ୍ୱୟଂ ଜଗନ୍ନାଥ ମଧ୍ୟ ଆତ୍ମ ନିଜର ଭୁକ୍ତାବଶେଷ 'କୈବଲ୍ୟ' ଦାନ କରି 'ପତିତପାବନ' ବୋଲାଇବାକୁ ଲୋଡ଼ୁ ନାହାନ୍ତି । ପୁଣି ବୁଝିବାର ଅଛି, 'ପତିତପାବନ' ନାମଟି ପୁରୁଷୋତ୍ତମ ଜଗନ୍ନାଥ ନାମର ଗୋଟିଏ ଅତି କଦର୍ଯ୍ୟ ଅପଳାପ । × × × ଜଗନ୍ନାଥଙ୍କ ପାଖେ କେହି ପତିତ ନୁହେଁ—କେହି ଉନ୍ନତ ନୁହେଁ । ସେ କାହାକୁ ପତିତ କରନ୍ତି ନାହିଁ-ମଣନ୍ତି ନାହିଁ । × × × ଯାହାଙ୍କ ଦୃଷ୍ଟିରେ ପତିତ ନାହିଁ ବା ପତିତ ବୋଲି କେହି ଅପବାଦ ନୁହେଁ, ସେ ପୁଣି ପତିତପାବନ' ହେବେ କିପରି ?" (ତତ୍ରୈବ—ପୃ ୪୯୧)

ଧର୍ମ ନାମରେ ଭଣ୍ଡକ ମିଥ୍ୟା ସମାଜରେ କେବଳ ଆତ୍ମପ୍ରବଞ୍ଚନା ପ୍ରଚାର କରୁଥିଲେ । ମହାପୁରୁଷ ଏବଂ ସେମାନଙ୍କର ଅଦ୍ଭୁତ କ୍ରିୟାହିଁ ହେଲା ଏହି ଧର୍ମର ମୂଳକଥା । ସାହିତ୍ୟ ମଧ୍ୟ ଲେଖାଗଲା ଏହି ମହାପୁରୁଷମାନଙ୍କର ଅଦ୍ଭୁତକ୍ରିୟା ସବୁକୁ ବର୍ଣ୍ଣନା କରି । ଯୁଗେ ଯୁଗେ ଏହି ବିଶ୍ୱାସକୁ ପାଥେୟ କରି ନୂଆ ନୂଆ ମହାପୁରୁଷମାନେ ବାହାରି ପୁରପଲ୍ଲୀରେ ନିଜର ପ୍ରଭାବ ବିସ୍ତାର କରିବାରେ ଲାଗିଛନ୍ତି । ନୀଳକଣ୍ଠ ଓଡ଼ିଆ ସଂସ୍କୃତି ଓ ସାହିତ୍ୟ ଗ୍ରନ୍ଥରେ ଏ ସମ୍ପର୍କରେ ସବିଶେଷ ଆଲୋଚନା କରି ଠାଏଁ ଲେଖିଛନ୍ତି-"ଏଇପରି କେବଳ ଯୁକ୍ତିହୀନ ବିଶ୍ୱାସରେ ମନୁଷ୍ୟ ମତାନ୍ଧ ହୁଏ, ପଶୁପରି ହୁଏ । ତା ଛଡ଼ା ବିଶ୍ୱାସ, ତା ଉପରେ କୁହୁକ

୪୩ । "ସେଇ ଅନୁକ୍ରମେ ଭାଗ୍ୟଫଳ ଗଣନା ଓ କାଳକ୍ରମେ ଗଣିତ-ସାଧନା ପରି ତାର ଅମୂଳକ ଗଣନାମାନ ସୃଷ୍ଟି କରାହୋଇ ପ୍ରଚାରରେ ଗୋଟିଏ ପରମ୍ପରା ଚାଲିଲା । ଅଙ୍କ କଷିଲେ, ଫଳ କହିହୁଏ । ସେଥିରୁ ବାହାରିଚି 'ଖଡ଼ି ପକାଇବା' । ସେହିପରି ଗ୍ରହ ନକ୍ଷତ୍ର ସ୍ଥିତିଗତିକୁ ଅବଲମ୍ବନ କରି ବାହାରିଚି, ଫଳିତଜ୍ୟୋତିଷ । ସେହି ଅନୁକ୍ରମେ ପୁଣି ହାତ ଦେଖାଇ ସାମୁଦ୍ରିକଠାରୁ 'ହନୁମାନ ପ୍ରଶ୍ନ' ପ୍ରଭୃତି କେତେ ଲୋକ ମୋହକର 'ଅବିଦ୍ୟା' ନାମରେ ଚଳେ । ବିଦ୍ୟା ଓ ବିଜ୍ଞାନଚର୍ଚ୍ଚାରେ ଏ ସବୁ ବନ୍ଧ-କୁସଂସ୍କାର ଓ ଅଯଥା ମୋହ ତୁଟାଇବାକୁ ହେବ । ବିଶେଷରେ ପ୍ରାଚୀନତାର ଉପାସକ, ଆପଣମାନଙ୍କ ପକ୍ଷରେ ଏ ସବୁ ପ୍ରତିବନ୍ଧକ ଅତି ଦୁର୍ଲଂଘ୍ୟ । ଏହା ଭଲ କରି ବୁଝି ଚିନ୍ତା ଓ ଆଲୋଚନାକୁ ସ୍ୱାଧୀନ କରି ଉଦାର ଶିକ୍ଷାର ସ୍ପଷ୍ଟ ପ୍ରଭାବ ଓ ସମ୍ପର୍କରେ ଏ ଅନୁଷ୍ଠାନର କୃତିତ୍ୱ ଫୁଟାଇବା ଆପଣମାନଙ୍କର କାର୍ଯ୍ୟ ।" (ସଂସ୍କୃତ ଓ ସଂସ୍କୃତି—ନୀଳକଣ୍ଠ ଗ୍ରନ୍ଥାବଳୀ-ଦ୍ୱିତୀୟଖଣ୍ଡ-୧୯୬୫-ପୃ ୪୮୪-୪୮୫)

ବା ଯାଦୁବିଦ୍ୟା ପରି କାମ କରେ । ସେଥିରେ ସେ ନିଜ ବିଶ୍ୱାସକୁ ସତ୍ୟ ପରି ଦେଖେ । × × ଅନ୍ଧ ବିଶ୍ୱାସର କୁହୁକରେ ଏମାନଙ୍କର ଯେ ଆତ୍ମନାଶ ହେଉଛି, ତାହା ଦେଖିଲେ ପ୍ରାଣରେ ପୀଡ଼ା ହୁଏ । (୪୪)

"ଏବେ ଖ୍ରୀ: ୧୯୪୦ରେ ଭଦ୍ରଖର ଗୋପିନାଥ ପ୍ରେସରୁ 'ଅଦ୍ଭୁତ ଗାନ୍ଧି' ବୋଲି ଖଣ୍ଡେ ପୁସ୍ତକ ବାହାରିଚି । ମତେ ଯେଉଁ ପୁସ୍ତକ ଖଣ୍ଡ ମିଳିଚି, ସେଥିରେ ପ୍ରଥମ ମଲାଟ ପତ୍ରଟି ନାଇ । ତେଣୁ ସେଥିରେ ଲେଖକଙ୍କ ନାମଟି ନାଇ । ଏପୁସ୍ତକର ଗ୍ରନ୍ଥକାର ହେଉଛନ୍ତି ଏ.ନ୍. ମହାପାତ୍ର । ଏ ଗ୍ରନ୍ଥ ପାଲି, ଜିନାଥମେଲା, ଏପରିକି ଚୈତନ୍ୟ ମହାପ୍ରଭୁ ପୁସ୍ତକମାନଙ୍କ ବଳିଯାଇଛି । ଗାନ୍ଧିଜୀ (ମୋହନଦାସ କରମଚନ୍ଦ ଗାନ୍ଧି) ଥରେ ଦକ୍ଷିଣ ଆଫ୍ରିକାର ଗୋଟିଏ ରାଜ୍ୟର ଲୋକଙ୍କୁ ସ୍ୱାଧୀନ କରି ଦେଇ ଯିବାକୁ ଅନୁରୁଦ୍ଧ ହେବାରୁ ତାଙ୍କୁ କହିଲେ, ତମେ ସବୁ ରାଜ୍ୟ ଛାଡ଼ି ଦେଇ ସମୁଦ୍ର ଭିତରେ ଅମୁକ ଦ୍ୱୀପକୁ ଚାଲିଯାଅ । ସେମାନେ ଯିବେ କିପରି । ହଠାତ୍ ଗାନ୍ଧିଜୀ ଗୋଟିଏ ବାଘ ହୋଇଗଲେ । ଲୋକେ ଚାଲିଗଲା ପରେ ପୁଣି ସେ ମନୁଷ୍ୟ ହୋଇଯାଇ ତାଙ୍କ ରାଜାଙ୍କୁ ଡରାଇ ସେ ରାଜ୍ୟକୁ ସ୍ୱାଧୀନ କଲେ । ତାପରେ ଠାଏ ଗାନ୍ଧୀଙ୍କ ନାମରେ ମନୁଷ୍ୟ ଘୁଷୁରି ପାଲଟିଲା, ଗାନ୍ଧୀଙ୍କ ନାମରେ ବିଲରୁ ପୋକ ଛାଡ଼ିଲା, ଗାନ୍ଧୀଙ୍କ ନାମ-ର ବଳତରେ ଆତ୍ମଗଛ ହୋଇ ଆମ୍ବ ଫଳିଲା × × × ପ୍ରଭୃତି ଗଳ୍ପମାନ ଏଥିରେ ସତ୍ୟ ବୋଲି ପ୍ରମାଣ ସହ ଲେଖା ହୋଇଛି । (ତତ୍ରୈବ-ପୃ ୪୫୧ ୪୫୨)

'ମୋ ଜୀବନ' ପ୍ରବନ୍ଧ ଭଳି "ଆମର ଥିଲି, କାରଣ ଥାଇପାରେ" ପ୍ରବନ୍ଧରେ ନୀଳକଣ୍ଠ ସେକାଳର ନାନା ପ୍ରଚଳିତ କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଏ କୁସଂସ୍କାର ଯୋଗୁ ସମାଜଜୀବନ ଅବକ୍ଷୟ ଅବସ୍ଥାରେ ପହଞ୍ଚି ଯାଉଛି । ମାନବର ଆତ୍ମବିଶ୍ୱାସ ଲୋପ ହୋଇ ଯାଇଛି ।ଏକ ସୁସ୍ଥ ଓ ସମୃଦ୍ଧ ସମାଜ ଗଠନ କରିବାକୁ ହେଲେ ଏହି ଭ୍ରାନ୍ତ ମତ ଗୁଡ଼ିକର ଉଚ୍ଛେଦ ସାଧନ କରିବାକୁ ହେବ । ତାହାହେଲେ ସମାଜରେ କ୍ରାନ୍ତିକାରୀ ପରିବର୍ତ୍ତନ ସମ୍ଭବ ।

ନୀଳକଣ୍ଠ ଆମରଣ ଏଇ ବିଶ୍ୱାସରେ ଦୃଢ଼ଥିଲେ । ସ୍ୱାଧୀନତା ପରେ ପୁରୀର ସଂସ୍କୃତ ମହାବିଦ୍ୟାଳୟରେ ଭାଷଣ ପ୍ରସଙ୍ଗରେ ସେ ଆହ୍ୱାନ ଜଣାଇ କହିଥିଲେ— "ସେଥିରୁ ଜଣାଯିବ, ଓଡ଼ିଆ ସାହିତ୍ୟର ବଳିଷ୍ଠ ସନାତନଧାରା ମରିନାଇ, ମରିବାର

---

୪୪ । ଓଡ଼ିଆ ସଂସ୍କୃତି ଓ ସାହିତ୍ୟ ପଣ୍ଡିତ ନୀଳକଣ୍ଠ ଦାସ—୧୯୫୩ ପୃ-୪୪୬—୪୭

ନୁହେଁ । ଯୁଗ ଯୁଗ ବ୍ୟାପୀ ସମସ୍ତ ସ୍ପର୍ଦ୍ଧା ଓ ଅନୁକରଣ ଭିତରେ ଏହାର ନିର୍ମଳ ଧାରାକୁ ଦେଖି ନୂତନ ଚଳଣିରେ ବିଶ୍ୱ ସଂସ୍କୃତିକୁ ବାଟ ଦେଖାଇବାର ଅଧିକାର ଏବେ ବି ଓଡ଼ିଆର ଅଛି । ଅଙ୍ଗ ଓଡ଼ିଶା ଆଜି ଶରୀରରେ ପରାଧୀନ ନୁହେଁ । ଚିନ୍ତା ଓ ଚରିତ୍ରରେ ସ୍ୱାଧୀନ ହେବାର ଦିନ ଆସିଛି । ଉଠ, ଜାଗ୍ରତ ହୁଅ, ଜ୍ଞାନ ଓ କର୍ମରେ, ଦର୍ଶନ ଓ ଚରିତ୍ରରେ ଜଗତ ଉଦ୍ଭାସିତ କର ।" (୪୫)



୪୫ । ଓଡ଼ିଆ ସଂସ୍କୃତି ଓ ସାହିତ୍ୟ—୧୯୫୩-ପୃ ୪୬୦

# ଜାତୀୟତାର ମନ୍ତ୍ରଦାତା

## ସ୍ୱାଧୀନତାର ସ୍ୱପ୍ନ

ବହୁକାଳଧରି ପରାଧୀନ ଭାରତୀୟଗଣ ଅତ୍ୟନ୍ତ ହୀନମନ୍ୟତାର ଗ୍ଲାନି ମଧ୍ୟରେ କଷ୍ଟ ପାଉଥିଲେ । ସେମାନଙ୍କର ସ୍ୱାଧୀନ ଚିନ୍ତା ନଥିଲା । ଆତ୍ମମର୍ଯ୍ୟାଦା-ବୋଧ ହରାଇ ହୀନଅନୁକରଣପ୍ରିୟତା ମଧ୍ୟରେ ଜୀବନକୁ ନିୟନ୍ତ୍ରଣ କରିବାପାଇଁ ଶିକ୍ଷା କରୁଥିଲେ । ଦେଶର ଅର୍ଥନୀତି ଭାଙ୍ଗି ପଡ଼ିଥିଲା । ଦେଶରେ ରାଜନୈତିକ ଜୀବନର ଅଭ୍ୟୁଦୟ ହୋଇନଥିଲା । ଜାତୀୟ ଚରିତ୍ରର ପ୍ରାଣପ୍ରତିଷ୍ଠା ପାଇଁ କେହି ସ୍ୱପ୍ନ ଦେଖି ନଥିଲେ । ଏହି ପରିପ୍ରେକ୍ଷୀରେ ଊନବିଂଶ ଶତାବ୍ଦୀରେ ଓଡ଼ିଆ ଭାଷୀଙ୍କର ଦୁର୍ଭାଗ୍ୟ କଳ୍ପନାତୀତ । କାରଣ ୧୮୦୩ ସାଲରେ ଇଂରେଜମାନେ ଓଡ଼ିଶା ବୋଲି ଯେଉଁ ଅଞ୍ଚଳଟିକ ମରହଟ୍ଟାମାନଙ୍କଠାରୁ ଅଧିକାର କଲେ ତାହା ଓଡ଼ିଆଭାଷୀଙ୍କର ସ୍ୱୟଂସମ୍ପୂର୍ଣ୍ଣ ଅଞ୍ଚଳ ନଥିଲା । ପୂର୍ବରୁ ବଙ୍ଗଦେଶ, ମାନ୍ଦ୍ରାଜ ଏବଂ ମଧ୍ୟପ୍ରଦେଶ ସହିତ ବହୁ ଓଡ଼ିଆଅଞ୍ଚଳ ସାମିଲ୍ ହୋଇ ଇଂରେଜ ଶାସନାଧୀନ ହୋଇ ସାରିଥିଲା । ଓଡ଼ିଶାକୁ ଦଖଲ କରି ସାରିବାର ଅଳ୍ପକାଳ ମଧ୍ୟରେ ଇଂରେଜ-ଶାସକଗଣ ଓଡ଼ିଶାରେ ପ୍ରବଳ ବିରୋଧର ସମ୍ମୁଖୀନ ହୋଇଥିଲେ । ଏ ସଂଘର୍ଷ ଅଳ୍ପେ ବହୁତେ ପ୍ରାୟ ଅର୍ଦ୍ଧଶତାବ୍ଦୀ ବ୍ୟାପୀ ଲାଗି ରହିଥିଲା । ତେଣୁ ଇଂରେଜଶାସକଗଣ ଓଡ଼ିଆଭାଷୀ ଅଞ୍ଚଳକୁ ନିର୍ମମ ଭାବରେ ଉତ୍ପୀଡ଼ନ କଲେ ଏବଂ ସେମାନଙ୍କର ସ୍ୱାଭିମାନକୁ ଲୋପ କରିଦେବାକୁ ବହୁ ପରିମାଣରେ କ୍ଷମ ହୋଇ ପାରିଲେ । ଓଡ଼ିଆଭାଷୀ ଅଞ୍ଚଳର ଉନ୍ନତି ପାଇଁ ଏହି ବିଦେଶୀ ଶାସକମାନଙ୍କର କୌଣସି ଆନ୍ତରିକତା ବା ପ୍ରଚେଷ୍ଟା ରହିଲା ନାହିଁ । ଭାରତବର୍ଷରେ ଓଡ଼ିଆଜାତି କ୍ରମଶଃ ଦୁର୍ବଳ, ଅଶିକ୍ଷିତ ଏବଂ ଅନୁନ୍ନତ ହେବାକୁ ଲାଗିଲେ । ଯାହାହେଉ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଏପରି କେତେକ ଐତିହାସିକ ଘଟଣା ଘଟିଗଲା । ଯାହା-ଫଳରେ ଓଡ଼ିଆଜାତି ସଚେତନ ହେବାପାଇଁ ଉଦ୍ୟମ କଲା । ଓଡ଼ିଆର ଭାଷା, ଅର୍ଥନୀତି, ସମାଜନୀତିର ସଂସ୍କାର ଓ ସଂଘବଦ୍ଧ ଉନ୍ନତି ପାଇଁ ଉଦ୍ୟମ ପରିଲକ୍ଷିତ ହେଲା ।

୧୮୬୬ ରେ ନଅଙ୍କ ଦୁର୍ଭିକ୍ଷର କରାଳଗ୍ରାସ ଓଡ଼ିଶାରେ ବହୁଦିନ ପର୍ଯ୍ୟନ୍ତ ବିଦ୍ୟମାନ ଥିଲା । ଦୁର୍ଭିକ୍ଷତଦନ୍ତକମିଟି ସରକାରୀକଳର ଅପାରଗତା ପାଇଁ

ଓଡ଼ିଆ ଲୋକେ ଏପରି ଦୁର୍ବିପାକର ସମ୍ମୁଖୀନ ହେଲେ ବୋଲି ମତ ପ୍ରକାଶ କଲେ । ଫଳରେ ୧୮୬୮ ଖ୍ରୀଷ୍ଟାବ୍ଦରେ ତତ୍କାଳୀନ ଭାରତମନ୍ତ୍ରୀ ସାର୍ ଷ୍ଟାଫୋର୍ଡ଼ ନର୍ଥକୋଟ ସୁପାରିଶ କଲେ ଯେ ବଙ୍ଗଦେଶରୁ ଅଲଗା କରି ଓଡ଼ିଆଭାଷୀ ଲୋକଙ୍କ ପାଇଁ ଏକ ସ୍ୱତନ୍ତ୍ର ଶାସନତାନ୍ତ୍ରିକ ସଂସ୍ଥା କରିବାକୁ ହେବ । ୧୮୬୯ ଖ୍ରୀଷ୍ଟାବ୍ଦରେ ଜର୍ଜ କ୍ୟାମ୍ପବେଲ ମଧ୍ୟ ପ୍ରସ୍ତାବ କଲେ ଯେ ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକର ଏକୀକରଣ ଆବଶ୍ୟକ । ୧୮୮୮ ଖ୍ରୀଷ୍ଟାବ୍ଦ ପରେ ମଧୁସୂଦନ ଦାସ କଲିକତାରୁ ଫେରିଆସି କଟକରେ ସାଧାରଣ ଜୀବନ ଆରମ୍ଭ କଲେ ଏବଂ ଓଡ଼ିଆମାନଙ୍କର ଦାବୀ ଉପସ୍ଥାପିତ କରିବାପାଇଁ ଉଦ୍ୟମ ହେଲା । (୪୬) ତେବେ ୧୮୭୬ ଖ୍ରୀଷ୍ଟାବ୍ଦରେ ଓଡ଼ିଆଭାଷୀ ଅଞ୍ଚଳ ସହିତ ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ବିଷୟରେ ପ୍ରଥମ ବେସରକାରୀ ପ୍ରସ୍ତାବ ସରକାରଙ୍କ ପାଖରେ ଆଗତ କଲେ ସ୍ୱନାମଧନ୍ୟ ରାଜା ବୈକୁଣ୍ଠନାଥ ଦେ ଓ ବିଚିତ୍ରାନନ୍ଦ ପଟ୍ଟନାୟକ । ୧୮୯୫ ସାଲରେ ସମ୍ବଲପୁର ଅଞ୍ଚଳରୁ ଓଡ଼ିଆଭାଷା ଉଠାଇ ଦିଆଯିବା ଦ୍ୱାରା ଓଡ଼ିଆମାନେ ଅତ୍ୟନ୍ତ ଆଘାତ ପ୍ରାପ୍ତହେଲେ । ଓଡ଼ିଆ-ମାନେ ସର୍ବତ୍ର ଅବହେଳିତ ହେଉଛନ୍ତି ଏବଂ ସେମାନେ ଅନ୍ତତଃ ଓଡ଼ିଆଭାଷୀ ଅଞ୍ଚଳରେ ସ୍ୱତନ୍ତ୍ର ସୁବିଧା ଉପଭୋଗ ନକଲେ ଅବହେଳିତ ହୋଇ ରହିଯିବେ । ଏ କ୍ଷେତ୍ରରେ ନୂତନ ଯୁବଶକ୍ତି ତେଜି ଉଠିଲେ । "ଓଡ଼ିଶା ହେଉଛି ଓଡ଼ିଆର"—ଏହି ଧ୍ୱନି ପ୍ରବଳ ଆକାର ଧାରଣ କରିଥିଲା । (୪୭) ଉତ୍ତରଓଡ଼ିଶା ପରି ଦକ୍ଷିଣଓଡ଼ିଶା ଓ ପଶ୍ଚିମଓଡ଼ିଶା ସର୍ବତ୍ର ଓଡ଼ିଆମାନେ ନିଜ ଭାଷାର ସୁରକ୍ଷା ପାଇଁ ଏବଂ ବିଚ୍ଛିନ୍ନା-ଞ୍ଚଳର ଏକତ୍ରୀକରଣ ପାଇଁ ଦାବୀ କରିବାକୁ ଲାଗିଲେ । ଏହି ଆନ୍ଦୋଳନର ନେତୃତ୍ୱ ନେବାପାଇଁ ୧୯୦୩ ସାଲରେ ଉତ୍କଳସମ୍ମିଳନୀର ପ୍ରତିଷ୍ଠା ଏକ ଐତିହାସିକ ସତ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଯୁବକ ନୀଳକଣ୍ଠ ଏହି ପ୍ରଥମ ସମ୍ମିଳନୀରେ ଜଣେ ଦର୍ଶକ ଭାବରେ ଯୋଗଦାନ କରିଥିଲେ । ଓଡ଼ିଆଭାଷୀ ଅଞ୍ଚଳର ରାଜା, ପ୍ରଜା, ସାଧାରଣଲୋକ ଗୋଟିଏ ସଭାମଞ୍ଚରେ ବସି ଦେଶର ସମସ୍ୟା ଆଲୋଚନା କରିବେ ଏବଂ ସ୍ୱାର୍ଥ ରକ୍ଷାପାଇଁ ଏକାଠି ହୋଇ ଲଢ଼ିବେ, ଏହାଥିଲା ସେ କାଳର ଏକ ଅପୂର୍ବ ଅନୁଭୂତି । ଏହା ବର୍ଣ୍ଣନା କରି ନୀଳକଣ୍ଠ ଲେଖିଛନ୍ତି—"ଜାତୀୟଜୀବନର ସେ ନବୋନ୍ମେଷ ଆଜି ମୋର ମନରେ ପ୍ରାଚୀନ

---

୪୬—Orissa times—7th April, 19 2 "Orissa Through Ages".

୪୭—"୧୮୯୨ ସାଲ୍ ଜୁଲାଇ ମାସରେ ଓଡ଼ିଆ କମିଶନର ଜି ଟିଏ.ନବୀ ତାଙ୍କ ବାର୍ଷିକ ରିପୋର୍ଟରେ ଲେଖିଛନ୍ତି, ବଙ୍ଗଳାର କୌଣସି ଅଧିବାସୀକୁ ଓଡ଼ିଶାରେ କୌଣସି କର୍ମରେ ନିଯୁକ୍ତ କଲେ ତା ବିରୁଦ୍ଧରେ ପତ୍ର ପତ୍ରିକାରେ ଘୋର ପ୍ରତିବାଦ ହୁଏ ଓ ଓଡ଼ିଶା କେବଳ ଓଡ଼ିଆମାନଙ୍କର,

ହେଲେ ମଧ୍ୟ ଜୀର୍ଣ୍ଣ ହୋଇନାହିଁ । ଜୀବନରେ ତାହାହିଁ ଯେପରିକି ମୋର ଏକ ପ୍ରଥମ ଦୀକ୍ଷା'' ।(୪୮) ସେତେବେଳେ ଉତ୍କଳ ସମ୍ମିଳନୀ ଓଡ଼ିଶାରେ ଜାତୀୟତାର ମନ୍ତ୍ର ପ୍ରଚାର କରିଥିଲେ । ସ୍ୱଦେଶୀ ଜିନିଷର ବ୍ୟବହାର କରିବାପାଇଁ ମଧୁସୂଦନ ଦାସ ଯେଉଁ ପ୍ରତିଜ୍ଞା ପତ୍ର ପ୍ରକାଶ କରିଥିଲେ ଇଂରେଜ ସରକାରଙ୍କ ବିଷଦୃଷ୍ଟିରେ ପଡ଼ିବା ଭୟରେ କ୍ୱଚିତ ଲୋକେ ସାହସ ସ୍ୱୀକାର କରି ଦସ୍ତଖତ କରୁଥିଲେ । ମାତ୍ର ଯୁବକ ନୀଳକଣ୍ଠ ଏଥିରେ ଅକୁଣ୍ଠ ଚିତ୍ତରେ ଦସ୍ତଖତ କରି ମି. ଦାସଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ ଏବଂ ଆଜୀବନ ଏହି ସ୍ୱଦେଶୀ ମନ୍ତ୍ରକୁ ପାଳନ କରିଥିଲେ ସେ କାଳର ଲଢ଼ୁଆ କଂଗ୍ରେସ ଅନୁଷ୍ଠାନର ଅନ୍ୟତମ ପ୍ରଧାନ ସେନାପତି ଭାବରେ । ସତ୍ୟବାଦୀ ବନବିଦ୍ୟାଳୟର ପ୍ରଧାନଶିକ୍ଷକ ହିସାବରେ ସେ ବର୍ଷକୁ ବର୍ଷ ଉତ୍କଳସମ୍ମିଳନୀର ବାର୍ଷିକ ଅଧିବେଶନକୁ ଛାତ୍ରମାନଙ୍କ ସହିତ ଯାଇ ପହଞ୍ଚି ଯାଉଥିଲେ ଏବଂ ଅଧିବେଶନରେ ଓଡ଼ିଆପ୍ରାଣ ବ୍ୟକ୍ତିତ୍ୱମାନଙ୍କ ସହିତ ମିଶି ସମସ୍ୟା ସମାଧାନରେ ରତ ହେଉଥିଲେ । କେବଳ ସେତିକି ନୁହେଁ ଏହି ଜାତୀୟ ଭାବଧାରା ଉଦ୍‌ବୋଧନ ଉଦ୍ଦେଶ୍ୟରେ ସତେ ଯେପରି ତାଙ୍କର ଲେଖନୀ ମୁଖର ହୋଇ ଉଠିଥିଲା । ଗୋପବନ୍ଧୁଙ୍କ ଦ୍ୱାରା ସେ ଜାତୀୟଚେତନାରେ ଅନୁପ୍ରାଣୀତ ହୋଇଥିଲେ ଏବଂ ମଧୁବାବୁଙ୍କ ସଂସର୍ଗରେ ତାହା ପ୍ରଚଣ୍ଡ ରୂପ ଧାରଣ କରିଥିଲା । ତେଣୁ ମଧୁବାବୁଙ୍କ ଅନ୍ତେ ଗୋପବନ୍ଧୁଙ୍କ ଅବର୍ତ୍ତମାନରେ ଜାତୀୟତା ମହାଯଜ୍ଞରେ ତାଙ୍କ ବ୍ୟକ୍ତିତ୍ୱ ଆହୁ

---

—ଏ ଚିନ୍ତାର ବଳବତ୍ତର ହୋଇ ଉଠେ । ୧୮୭୧ ସାଲ ପରଠାରୁ ଶିକ୍ଷିତ-ମଧ୍ୟବିତ୍ତ ଶ୍ରେଣୀର ସ୍ୱରୂପରେ ଦୁଇଟି ବିଷୟ ଲକ୍ଷ୍ୟ କରାଯାଇପାରେ । ଯଥା—(କ) ୧୮୭୧—୧୯୦୦ ସାଲରେ ଜନ୍ମଲାଭ କରିଥିବା ଶିକ୍ଷିତ-ଶ୍ରେଣୀ ଆଲୋଚ୍ୟ ସମୟରେ ୧୮୭୦ ସାଲ ପୂର୍ବ ଶିକ୍ଷିତଶ୍ରେଣୀ ସହିତ ମିଳିତ ହୋଇ ଦେଶ ହିତରେ ମନପ୍ରାଣ ଢାଳି ଦେଇଥିଲା । ଏଇ ଉଭୟ କାଳରେ ଜନ୍ମଲାଭ କରିଥିବା ଶିକ୍ଷିତଶ୍ରେଣୀର ସମ୍ମିଳିତ ପ୍ରଚେଷ୍ଟା ବିନା ଊନବିଂଶ ଶତାବ୍ଦୀର ଉନ୍ନତି ଆଦୌ ସମ୍ଭବପର ନଥିଲା । (ଖ) ଓଡ଼ିଆ ଶବ୍ଦକୁ ସେମାନେ କେବଳ ଓଡ଼ିଆଜାତି ରୂପେ ବ୍ୟବହାର ନ କରି ଓଡ଼ିଶାର ପାଣିପବନରେ ପରିପୁଷ୍ଟ ସମସ୍ତ ଜାତିକୁ ଏଥିରେ ଅନ୍ତର୍ଭୁକ୍ତ କରିଥିଲେ । ଓଡ଼ିଶା ମାଟିରେ ଯେ ନିଜର ରକ୍ତକୁ ମିଶାଇ-ଦେବ ସେ ହେବ ଓଡ଼ିଆ—ଓଡ଼ିଶା କେବଳ ହେବ ତାହାରି—ଏ ଅର୍ଥଟି ଏଇ''ଓଡ଼ିଆ'' ଶବ୍ଦ ଭିତରେ ପ୍ରତିଫଳିତ ହୋଇଥିଲା ''। (ଓଡ଼ିଆ ସାହିତ୍ୟର ଇତିହାସ- ଡକ୍ଟର ନଟବର ସାମନ୍ତରାୟ—୧୯୬୪-ପୃ ୧୭୦)

୪୮—ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମ ଭାଗ—ଆତ୍ମଜୀବନୀ—ପୃ-୨୫

କଏ ଲେଡ଼ା ହୋଇ ପାଣ୍ଟଆଥାନ୍ତା । ଜାତୀୟତା ସମ୍ପର୍କରେ ନୀଳକଣ୍ଠ କହୁଥିଲେ— "ରକ୍ତ, ମାଂସ, ପିଣ୍ଡ ବା ଅପରବର୍ତ୍ତିତ ଭୂମିଖଣ୍ଡରେ ଜାତୀୟତା ରହେ ନାହିଁ, ଜାତୀୟତା ରହେ ଭାବରେ, ଆଦର୍ଶରେ—ଜାତୀୟଜୀବନର ମୌଳିକତା ଓ ଶକ୍ତିରେ" । (୪୯)

ଏହି କାରଣରୁ ନୂତନ ଦୃଷ୍ଟିଭଙ୍ଗୀ ନେଇ ନୀଳକଣ୍ଠ ଲେଖିଲେ ଖାରବେଳ ଓ କୋଣାର୍କେ ପର କାବ୍ୟ । ଜାତୀୟଜୀବନର ପ୍ରାଣସ୍ପନ୍ଦନ ଏଥିରେ ପ୍ରତିଧ୍ୱନିତ ହେଲା । ଇତିହାସର ଜାତୀୟ ବୀରମାନେ ଏହି କାବ୍ୟ ଦ୍ୱୟରେ ଜୀବନ୍ତ ହୋଇ ଏକ ଅବକ୍ଷୟ ସମାଜକୁ ପ୍ରେରଣା ଯୋଗାଇଲେ । ସ୍ୱାଧୀନତା କାମନା କିପରି ନୀଳକଣ୍ଠଙ୍କୁ ବିଚଳିତ କରୁଥିଲା ତାହା ତାଙ୍କର ଲେଖାଗୁଡ଼ିକ ପାଠ କଲେ ଉପଲବ୍ଧି କରାଯାଇ ପାରେ । ସେ ଶ୍ରେଷ୍ଠପିଲାମାନଙ୍କ ଉଦ୍ଦେଶ୍ୟରେ "ପିଲା ଓ ଚଢ଼େଇ" ବୋଲି କବିତାଟିଏ ଲେଖିଥିଲେ । ସେଥିରେ କିପରି ପରଅନୁସରଣ ଓ ପରନିର୍ଭରତା ଜୀବନର କଳଙ୍କ, ତାହା ବୁଝାଇ ଦେଇଥିଲେ ।

ପିଲା—ଆସୁଛି ବରଷାକାଳ ଶ୍ରାବଣ ଧାର
ଖାଇବାକୁ ନ ମିଳିବ ଦିବସ ସାର ।
ବସି ଗୀତ ଗାଉଥିବୁ ମୋ ଘରେ ସୁଖେ,
କଉତୁକେ ଧରିଥିବି ତୋତେ ମୁଁ ବୁକେ ।

ଚଢ଼େଇ—ଡେଣା ପିଟି ଖାଉଛି ମୁଁ ଇଚ୍ଛାରେ ଚରି,
ଉପାସ ବାଧିବ ନାହିଁ ବନ୍ଧନ ପରି ।
ଗୀତଗାଇ ପୋଷା ହେବା ନୁହେଁ ମୋ କାମ
ପ୍ରଭୁ ମନ ଯୋଗାଇବା ବଡ଼ ବିଷମ ।

ସତ୍ୟବାଦୀ ଗୋଷ୍ଠୀର ପ୍ରତ୍ୟେକ କର୍ମୀ ଏହି ଜାତୀୟତାମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇଥିଲେ । ସେମାନଙ୍କର ଗୁରୁ ପଣ୍ଡିତ ଗୋପବନ୍ଧୁ କାନେକାନେ କହି ବୁଲୁଥିଲେ—

"ପୂର୍ବ ପୁରୁଷର ପବିତ୍ର ଶ୍ମଶାନ,
ଦେଶର ଜାତିର ଗଉରବ ଗାନ ।
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ,
ଉଦ୍ଧରିବା ପାଇଁ କଲେ ତନୁକ୍ଷୟ ।
ମାନବ ଜନମ ହୁଅଇ ସଫଳ,
ଏ ମହାଦୀକ୍ଷା କି ବୁଝିବ ଉତ୍କଳ ।"

---

୪୯ —ଆତ୍ମଜୀବନ—ନୀଳକଣ୍ଠ ଦାସ—ପୃ-୫-୧୪୧ ।

ଓଡ଼ିଆ ଜାତି ଏକାଠି ନ ହେଲେ ତାହାର ଭବିଷ୍ୟତ ଅନ୍ଧକାରମୟ । ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ସ୍ତରରେ ଓଡ଼ିଆଜାତିକୁ ଏହି ସ୍ଥାଣୁତ୍ୱରୁ ମୁକ୍ତିଲାଭ କରିବାକୁ ହେବ। ପଣ୍ଡିତ ଗୋଦାବରୀଶ ଅତ୍ୟନ୍ତ ବିକଳ ହୋଇ ସେଥିପାଇଁ କହିଥିଲେ—

"ବଡ଼ ସ୍ଥାନମାନ ଆମ ଘର ଦଶା
ଶୁଣିଲେ ଫାଟଇ ବୁକୁ,
ଚଉଖଣ୍ଡ ହୋଇ ଓଡ଼ିଶା ଦେଶ ଲୋ
ପଡ଼ି ହୁଏ ଦୁକୁ ଦୁକୁ ।" (ଆଲେଖିକା)

ଏଇ ପରିପ୍ରେକ୍ଷୀରେ ନୀଳକଣ୍ଠଙ୍କର ଖାରବେଳ ଏବଂ କୋଣାର୍କ ଆଲୋଚ୍ୟ । ଏଇ ଭାବଧାରାର ଅନୁରୋଧରେ ଆର୍ଯ୍ୟଜୀବନ ଓ ସଂସ୍କୃତିମୂଳକ ସମସ୍ତ ପ୍ରବନ୍ଧ ଓ ମୁଖବନ୍ଧ ମଧ୍ୟ ଅବତାରଣା କରାଯାଇପାରେ । ନୀଳକଣ୍ଠଙ୍କର ସେହି ଜାତୀୟତାର ମୋହ ପ୍ରକାଶିତ ହୋଇଛି ସେ ଯେତେବେଳେ କହିଛନ୍ତି—

"ଭାରତେ ସେ ଯୁଦ୍ଧନ ଫେରିବ କାହିଁ,
ବୃଦ୍ଧ ପରେଶ ଯେବେ ମୋହିଲେ ମହୀ ।
ଖଡ଼ଗେ ହସୁଥିଲା ଅହିଂସା ଧାର,
ଇନ୍ଦ୍ରିୟ ଜିଣି ଜନେ ହୋଇଲେ ବୀର ।" (ଖାରବେଳ)

'କୋଣାର୍କ' କାବ୍ୟରେ ସେ ଇତିହାସର ସ୍ମୃତି ପ୍ରକ୍ଷାଳନ କରିଛନ୍ତି । କବି ଆଜି ପରାଧୀନ ଓଡ଼ିଶାକୁ ଦେଖି ବିଶ୍ୱାସ କରିବ ଯେ ଦିନେ ଏହି ରାଜ୍ୟରେ ଗୌଡ଼ଦେଶର ରାଜା ଶରଣ ପଶିଥିଲେ । କେତେ ପ୍ରବଳ ଦିଗ୍‌ବିଜୟୀ ଶତ୍ରୁ ଏଠାରେ ପରାଭବ ସ୍ୱୀକାରପୂର୍ବକ ଆତ୍ମଗୋପନ କରିଥିଲେ । ପ୍ରାଚୀନ ଉତ୍କଳର ଗୌରବାବହ ଐତିହ୍ୟକୁ ସ୍ମରଣ କରାଇ ଦେଇ କବି ଲେଖିଛନ୍ତି—

"କେବେ ବା ବୋଇତ ଲଗିବ ବଙ୍ଗସାଗର କୂଳେ,
ଓଡ଼ିଆ ନାବିକ ରସିବେ ତାମ୍ରଲିପ୍ତି ମଣ୍ଡଳେ ।
ତାମ୍ରଲିପ୍ତି ଗ୍ରୁଡ଼ ଉଠିବ ତରୀ ସିଂହଳ ତଟେ,
ଉତ୍କଳ କମଳା ହସିବେ ପୁଣ୍ୟ କୈବଲ୍ୟ ମୁକୁଟେ ।
ବାଣିଜ୍ୟ-ବିଜୟ-ଉନ୍ମାଦେ ପୁଣି କୋଣାର୍କେ ଫେରି,
ସ୍ୱାଧୀନ-ବାଳାସେ ରସିବ ଦେଖି ଏପୂର ଶିରୀ ।"

(କୋଣାର୍କ)

୧୯୨୦ ଖ୍ରୀଷ୍ଟାବ୍ଦରେ ଓଡ଼ିଆଭାଷାର ସେବା କରିବାପାଇଁ ନୀଳକଣ୍ଠ ବିଶିଷ୍ଟ ଶିକ୍ଷାବିତ୍ ଆଶୁତୋଷ ମୁଖାର୍ଜୀଙ୍କ ଆହ୍ୱାନକ୍ରମେ କଲିକତା ବିଶ୍ୱବିଦ୍ୟାଳୟରେ

ଅଧ୍ୟାପକଭାବେ ଦାୟିତ୍ୱ ଗ୍ରହଣକଲେ । ମାତ୍ର ଅଳ୍ପକାଳ ପରେ ଅସହଯୋଗ ଆନ୍ଦୋଳନର ଆହ୍ୱାନ ଦେଶବାସୀଙ୍କୁ ଚହଲାଇ ଦେଲା । ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ନୀଳକଣ୍ଠ କଲିକତା ପରିତ୍ୟାଗ କରି ସମ୍ବଲପୁରରେ ଅସହଯୋଗର ବାର୍ତ୍ତା ପ୍ରଚାର କଲେ । ସେଠାରେ ତାଙ୍କରି ନେତୃତ୍ୱରେ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା ହେଲା ଏବଂ "ସେବା" ନାମରେ ଏକ ସାପ୍ତାହିକ ପତ୍ରିକା ମଧ୍ୟ ପ୍ରକାଶ ଲାଭ କଲା । ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲାବେଳେ ସେ କିପରି ପଛକୁ ଚାହିଁ ନଥିଲେ, ପାରିବାରିକ ସଂପର୍କକୁ ଭୁଲିଯାଇଥିଲେ ତାହାର ବର୍ଣ୍ଣିଲ ଇତିହାସ ଲେଖିଛନ୍ତି ସୁଯୋଗ୍ୟ ପୁତ୍ର ବିକ୍ରମ ଦାସ "ମୋ ନନାଙ୍କ ଦେଶ" ପୁସ୍ତକରେ । (୫୦)

ନୀଳକଣ୍ଠ ଗୋପବନ୍ଧୁଙ୍କ ସହିତ ନିଜକୁ ଛନ୍ଦି ଦେଇଥିଲେ । ଦେଶପାଇଁ ନିରବଚ୍ଛିନ୍ନ ଭାବରେ ତାଙ୍କର ସାଧନା ଆରମ୍ଭ ହୋଇଗଲା । ସେ ସମ୍ବଲପୁରରେ ଜାତୀୟତାର ମନ୍ତ୍ର ପ୍ରଚାର କରିବାପାଇଁ ଓଡ଼ିଆ ମିଶା ହିନ୍ଦୀରେ ଯେଉଁ ଗୀତଟି

---

୫୦ । "ଦେଶ ପାଇଁ ସମସ୍ତ ସ୍ୱାର୍ଥତ୍ୟାଗରେ ବ୍ରତୀ ହେଲାବେଳେ ନିଜକୁ ନିଜର ଧନ ସମ୍ପତ୍ତି, ପିଲାପିଲି ସବୁକୁ ସେ ଯଜ୍ଞରେ ଆହୁତି ଦେବାକୁ ହୁଏ । ନିଆଁକୁ ଡେଇଁଲାବେଳେ ଆଉ ପଛକୁ ଚାହିଁ ହୁଏନାହିଁ । ତେଣୁ ଆମେ ସବୁ ହୋଇ ପଡ଼ିଥିଲୁ ସେ ସ୍ୱାଧୀନତା—ଯଜ୍ଞର ସମିଧ, ଆମ ଭିତରୁ କିଏ ଜଳିଗଲା କି ଆମପରି କିଏ ଭୁଲରେ ନ ଜଳି ବର୍ତ୍ତିଗଲା । × × × ମୋ ଉପରେ ଦୁଇଟି ଭଉଣୀ ଜନ୍ମ ହୋଇଥିଲେ । ନନା ଦେଶକାର୍ଯ୍ୟରେ ବ୍ୟସ୍ତ ଥିଲାବେଳେ ୧୯୨୧ ରୁ ୨୪ ଭିତରେ ଖାଦ୍ୟ ଓ ଚିକିତ୍ସା ଅଭାବରେ ଦୁଇଟିଯାକ ଅଳ୍ପ ବୟସରେ ଆରପୁରକୁ ଚାଲି ଯାଇଥିଲେ ।

ନନା ସମ୍ବଲପୁରରେ କଂଗ୍ରେସ ଆନ୍ଦୋଳନ, ଜାତୀୟସ୍କୁଲ ଓ 'ସେବା' ପତ୍ରିକା ପରିଚାଳନା କରୁଥିଲା ବେଳେ ଦିନେ ଗୋଟିଏ ସଭାରେ ବକ୍ତୃତା ଦେବା ସମୟରେ ତାଙ୍କ ବଡ ଝିଅଟିର ମୃତ୍ୟୁସମ୍ବାଦ ଶୁଣିଲେ । ଶୁଣିବା ପରେ ସେଥିପ୍ରତି ଗୁରୁତ୍ୱ ଦେଇ ନଥିଲେ, ତାଙ୍କର ଭାଷଣ ପୂର୍ବପରି ଚାଲିଥିଲା ।

ରାଜନୈତିକ ବନ୍ଦୀ ଭାବରେ ପୁରୀରୁ ହଜାରୀବାଗ ଜେଲକୁ (୧୯୨୩) ନିଆହେଲାବେଳେ ସତ୍ୟବାଦୀ ଷ୍ଟେସନରେ ଦ୍ୱିତୀୟ କନ୍ୟାର ମୃତ୍ୟୁ ସମ୍ବାଦ ପାଇଥିଲେ । ସେଥିରେ ମଧ୍ୟ ବିଚଳିତ ନ ହୋଇ 'ହଉ' ବୋଲି କହି ଷ୍ଟେସନକୁ ଦେଖା କରି ଆସିଥିବା ବିପୁଳ ଜନତାଠାରୁ ବିଦାୟ ନେଇ ସଂଗ୍ରାମ ଚାଲୁରଖ ବୋଲି ଜନତାକୁ ଉଦ୍‌ବୋଧନ ଦେବାପରେ ଗାଡ଼ି ଛାଡ଼ି ଦେଇଥିଲା ।" (ମୋ ନନାଙ୍କ ଦେଶ—୧୯୮୬—ପୃ ୧୮-୧୯)

ଲେଖିଥିଲେ ତାହା ସେକାଳରେ ଚହଳ ପକାଇ ଦେଇଥିଲା । ସେଥିରୁ ଦୁଇଟି ପଦ ସେ ଆତ୍ମଜୀବନୀରେ ସ୍ମରଣ କରିଛନ୍ତି—

"ସ୍ୱରାଜ ଭାଷ୍ୟା ଅଲବତ୍ତ ହୋଗା
ଗ୍ରେଡ଼କେ ଆଓ ଗୋଲାମୀ
ଭାରତ ଲଡ଼କା ଗୋଲାମ ହୋକେ
କାହେ କରେ ବଦ୍‌ନାମୀ ।
ସ୍କୁଲ, କଚେରୀ, କାଉନ୍‌ସିଲ୍‌କୋ
ଇସ୍ତାଦ୍ ରଖ୍‌ଖୋ ବାବୁଜୀ
ମାଷ୍ଟା ଏ ସବ୍ ଗୋଲାମୀକା
ଇସ୍‌ମେ ନଇ ଭୁଲେଙ୍ଗା ।"

୧୯୨୪ ଖ୍ରୀଷ୍ଟାବ୍ଦରେ ନୀଳକଣ୍ଠ କେନ୍ଦ୍ର ଆସେମ୍ବ୍ଲିକୁ ନିର୍ବାଚିତ ହେଲେ । ସେତେବେଳେ କେନ୍ଦ୍ର ଆସେମ୍ବ୍ଲିରେ ବହୁ ଧୁରନ୍ଧର ଶାସକ ଏବଂ ବୁଦ୍ଧିଜୀବୀ ସଭ୍ୟ ହେଉଥିଲେ । ସେମାନଙ୍କ ସହିତ ପାଣ୍ଡିତ୍ୟ ଏବଂ ବାଗ୍ମୀତାରେ ସମକକ୍ଷ ହୋଇ ପଣ୍ଡିତ ନୀଳକଣ୍ଠ ଜଣେ ଅତ୍ୟନ୍ତ ପ୍ରଭାବଶାଳୀ ଓ ସ୍ୱନାମଧନ୍ୟ ପାର୍ଲିଆମେଣ୍ଟେରିଆନ୍ ହୋଇ ପାରିଥିଲେ । ଏଥିପାଇଁ ପଣ୍ଡିତ ଗୋପବନ୍ଧୁ ମଧ୍ୟ ତାଙ୍କର ଅନୁଜପ୍ରତିମ ନୀଳକଣ୍ଠଙ୍କର କୃତିତ୍ୱ ସ୍ମରଣ କରି ଅତ୍ୟନ୍ତ ଗର୍ବ କରୁଥିଲେ । ଏହି ସମ୍ପର୍କରେ ଶ୍ରୀ ବନମ ଦାସ ତାଙ୍କ ଲିଖିତ "ମୋ ନନାଙ୍କ ଦେଶ" ପୁସ୍ତକରେ ଏକ ଘଟଣାର ଉଲ୍ଲେଖ କରିଛନ୍ତି—

ସେ ଦିନ ମୁରାରୀ ତ୍ରିପାଠୀ ଓ ଫକୀରପାଣ୍ଡେ ଉତ୍ତର ଭାରତରେ ବସୁଥିବା ଜାତୀୟ କଂଗ୍ରେସର ଅଧିବେଶନକୁ ପ୍ରତିନିଧି ଭାବରେ ଯିବାପାଇଁ ସଜବାଜ ହେଉଥାନ୍ତି । ଗୋପବନ୍ଧୁ ସେମାନଙ୍କୁ ପଚାରିଲେ, 'ହଇରେ ସେଠାରେ ତୁମେ କେଉଁଠାରୁ ଆସିଚ ବୋଲି ପଚାରିଲେ ତୁମେ ତୁମର କି ପରିଚୟ ଦେବ । ସେମାନେ କହିଲେ 'ଆମେ କହିବୁ ଆମେ ସେହି ସ୍ଥାନରୁ ଆସିଛୁ, ଯେଉଁଠାରେ ଜଗନ୍ନାଥ ଅଛନ୍ତି, ମହୋଦଧି ଅଛି ଏବଂ କୋଣାର୍କ ମନ୍ଦିରର ଚାରୁକଳା ରହିଛି !"

ଗୋପବନ୍ଧୁ କହିଲେ, 'ଆରେ ସେ ପୁରୁଣା କଥାଗୁଡ଼ାକ କହି କିଛି ଲାଭ ନାହିଁ । ଏବର କଥା କଣ କହିବ କହ ।' ସେମାନେ ସମସ୍ତେ ନୀରବ ରହିବାରୁ ଗୋପବନ୍ଧୁ କହିଲେ, "ଆରେ କହିବ, ଆମେ ସେଇ ସ୍ଥାନରୁ ଆସିଛୁ ଯେଉଁଠି ନୀଳକଣ୍ଠ ଦାସଙ୍କ ପରି ଜଣେ ମହାନ୍ ପଣ୍ଡିତ ଅଛନ୍ତି, ତେବେ ତୁମକୁ ସମସ୍ତେ ଠିକ୍ କରି ଚହ୍ନିବେ ।" (୫୧)

---

୫୧ । ମୋ ନନାଙ୍କ ଦେଶ—୧୯୮୩—ପୃ ୨୪୩

ଓଡ଼ିଆମାନେ କିପରି ସ୍ୱତନ୍ତ୍ର ପ୍ରଦେଶ ଲାଭ କରିବେ ଏ ବିଷୟରେ ବହୁ ବାଦ, ପ୍ରତିବାଦ ଏବଂ ଦାବୀପତ୍ର ଉପସ୍ଥାପିତ ହୋଇ ଆସୁଥିଲା । ସମ୍ବଲପୁର, ବାଲେଶ୍ୱର, କଟକ ଏବଂ ଗଞ୍ଜାମର ଓଡ଼ିଆ ନେତାମାନେ ଭିନ୍ନଭିନ୍ନ ସମୟରେ ଇଂରେଜ ସରକାରଙ୍କ ପାଖରେ ଗୁହାରି କରି ସଫଳ କାମ ହୋଇପାରି ନଥିଲେ । ୧୯୨୭ ଖ୍ରୀଷ୍ଟାବ୍ଦ ଫେବୃଆରୀ ମାସ ଆଠ ତାରିଖରେ କେନ୍ଦ୍ର ଆସେମ୍ବ୍ଲିରେ ପଣ୍ଡିତ ନୀଳକଣ୍ଠ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପାଇଁ ଯୁକ୍ତିକରି ଗୋଟିଏ ଟାଣୁଆ ବକ୍ତୃତା ଦେଇଥିଲେ । ସେଥିରେ କେନ୍ଦ୍ରସରକାର ମଧ୍ୟ ବିଚଳିତ ହୋଇ ପଡ଼ିଥିଲେ । ବକ୍ତୃତାର ଗୋଟିଏ ଅଂଶରେ ସେ କହିଥିଲେ—

"I may here inform the House that the Oriyas have been under several administrations in several tracts, and practically in each of the tracts an Intermediary Ruling Race with vested interests has been realed, and the Bengal government puts it clearly that the Census Supervisors and Enumerators are afraid to record people as Oriya-speaking because they fear if they put it like that the tract will be transferrd to Orissa. It is there in the letter which was written to the Bengal government and came to the government of India in 1922. Actually the superintendent of Census at a meeting of Enumerators and supervisors heard it remarked by-one of them that they were not willing to record people as Oriya speaking even though they had evidence to that effect." (୫୨)

୧୯୩୧ ଖ୍ରୀଷ୍ଟାବ୍ଦ ନଭେମ୍ବର ପନ୍ଦର ତାରିଖରେ ପ୍ରାଦେଶିକ ଉତ୍କଳ କଂଗ୍ରେସ କମିଟି ଗୋଟିଏ ପ୍ରସ୍ତାବ ଗ୍ରହଣ କରି ନିର୍ଦ୍ଦେଶ ଦେଲେ ଯେ ପଣ୍ଡିତ ନୀଳକଣ୍ଠ ଓଡ଼ିଶା ପାଇଁ ଗଠିତ ସୀମାକମିଶନ ଆଗରେ ଉପଯୁକ୍ତ ସାକ୍ଷ୍ୟ ପ୍ରମାଣ ଦେବେ । ଏଥିପାଇଁ ପଣ୍ଡିତ ନୀଳକଣ୍ଠ ବହୁ ଶ୍ରମ ସ୍ୱୀକାର କରି ଓଡ଼ିଶାର ଦାବୀର ଯଥାର୍ଥତା ପ୍ରତିପାଦନପୂର୍ବକ ବଳିଷ୍ଠ ଯୁକ୍ତି ସମ୍ବଳିତ ଏକ "ମେମୋରାଣ୍ଡମ୍"

୫୨ । Speeches & Remarks of Pandit Nilakantha Das Vol. I 1959—P. 146-147

୧୯୩୧ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସର ଶେଷଭାଗରେ ପ୍ରସ୍ତୁତ କଲେ । ୧୯୩୨ ଜାନୁୟାରୀ ୧୦ ତାରିଖ ଦିନ ପଣ୍ଡିତ ନୀଳକଣ୍ଠଙ୍କର ସୀମାକମିଶନ ଆଗରେ ସାକ୍ଷ୍ୟ ଦେବାପାଇଁ ସ୍ଥିର ହୋଇଥିଲା । ଏହି ଉଦ୍ଦେଶ୍ୟରେ ନୀଳକଣ୍ଠ ଜାମସେଦପୁର ଅଭିମୁଖେ ଯାତ୍ରା କଲେ । ମାତ୍ର ଆଠ ତାରିଖ ଦିନ କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷ ତାର ଯୋଗେ ନୀଳକଣ୍ଠଙ୍କୁ ଜଣାଇଦେଲେ ଯେ ସେ ସାକ୍ଷ ଦେଇ ପାରିବେ ନାହିଁ, କାରଣ କଂଗ୍ରେସ ସୀମାକମିଶନକୁ ବର୍ଜନ କରିଛନ୍ତି । ଶୃଙ୍ଖଳିତ ସୈନିକ ହିସାବରେ ନୀଳକଣ୍ଠ ସାକ୍ଷ୍ୟ ଦେଇ ନ ପାରି ନିଜର ସ୍ମାରକପତ୍ରଟି ସୀମା ନିର୍ଦ୍ଧାରଣ କମିଟିକୁ ଦେଇ ଆସିଥିଲେ । ୧୯୨୭ ସାଲ୍ ପର୍ଯ୍ୟନ୍ତ ଓଡ଼ିଶାର ନେତୃବୃନ୍ଦ କେବଳ ବିଚ୍ଛିନ୍ନ ଅଞ୍ଚଳର ଏକୀକରଣ ପାଇଁ ଦାବୀ କରି ସନ୍ତୁଷ୍ଟ ରହିଥିଲେ । ସେମାନେ ବିହାର ସଙ୍ଗେ କି ବଙ୍ଗଳା ସହିତ ରହିବେ, ଏ ସମ୍ପର୍କରେ ମଧ୍ୟ ଭିନ୍ନ ମତ ରହିଥିଲା । ପଣ୍ଡିତ ନୀଳକଣ୍ଠ ଅତ୍ୟନ୍ତ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରି ସ୍ୱତନ୍ତ୍ର ପ୍ରଦେଶ ଗଠନ ଦାବୀକୁ ସମର୍ଥନ କରିଥିଲେ । ସୀମାନିର୍ଦ୍ଧାରଣ କମିଶନ ଆଗରେ ଯେଉଁ ସ୍ମାରକପତ୍ର ଦିଆଯାଇଥିଲା ତାର ଉପସଂହାରରେ ନୀଳକଣ୍ଠ ଓଡ଼ିଶାର ଗୌରବ ପ୍ରଖ୍ୟାପନ ପୂର୍ବକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଉପଯୋଗିତା ପାଇଁ ଶାସକ ଗୋଷ୍ଠୀର ସୁବିଗ୍ଭର ହେଉ ବୋଲି କାମନା କରି ଲେଖିଥିଲେ—

"Orissa for about six long centuries was something like an Imperial Power of an extensive character before it fell on account of the shrewd machinations of the Moghul Emperor Akbar the great. I have already referred to the fact that for long centuries she had her powerful army and navy, and not only held her own against her powerful neighbours viz. Gour ( the present East and North Bengal ), Bahamini (The North Easternportion of the present Nizam's Dominion and thereabouts) and the kingdom of Vijayanagram (The great Hindu kingdom towards the South of the Krishna River), but on various occasions entered into the very hearts of these Kingdoms. In the words of Sir William Hunter "the stundy peasant militia of Orissa carried their successful arms into very heart of Bengal (Then East and North Bengal for the South and West of Bengal was always

included in Orissa and so has remained mainly Hindu even now) even during the palmy days of the Moghul Empire." It has already been referred to in another connection that, the late Mr. Rakhaldas Banerji in his 'History of Orissa' finds data to prove that Orissa had in ancient times an over-sea Empire in Burma, Further India, and Pacific Islands, through which the Orissan art and culture, travelled to the New world, and formed the basis of the colossal architectural monuments of the ancient Peru, Mexico and Maya lands. Not only this, Orissa peasant was throughout happy, contented and progressive; and besides there was surplus money in the State. Art and literature flourished, as they did perhaps in few other places or provinces of India, for the monumental public works and the works of art still found all over the land speak well for themselves.

This was Orissa, which has been reduced to the present state on account of long neglect both by Central and local governments. Her wailings have so long gone in vain. And if she is again allowed to stand on her own legs as a Province, it may well be hoped that in course of time she may again come to her glory and grandeur as a proud unit in the coming Indian Federation." (୫୩)

ସ୍ମାରକପତ୍ର ସହିତ ନୀଳକଣ୍ଠ ଗୋଟିଏ ବିବରଣୀ "(The Statement)" ମଧ୍ୟ ପ୍ରଦାନ କରିଥିଲେ । ସେଥିରେ ଓଡ଼ିଶାପ୍ରଦେଶ ପାଇଁ ବଳିଷ୍ଠ ଯୁକ୍ତି ପ୍ରଦାନ କରି କହିଥିଲେ ସ୍ୱତନ୍ତ୍ର ପ୍ରଦେଶ ଗଠିତ ନ ହେଲେ ଓଡ଼ିଆଜାତିର ଭବିଷ୍ୟତ ଅନ୍ଧକାରମୟ । "Oriyas demand a province of their own. It is a necessity. Why ? Because this is

୫୩ । Speeches and Remarks of Pandit Nilakantha Das —Vol. 1—1959—P. 155—156.

decidedly the only solution now of the life and death problem of the Oriyas. This problem is both economic and cultural." (୫୪)

୧୭୦ ବର୍ଷର ଇଂରେଜ ରାଜତ୍ୱକାଳରେ ଓଡ଼ିଆଜାତି ଢଳ ଢଳ ହୋଇ ଧ୍ୱଂସପଥରେ ଯାତ୍ରୀ ହୋଇଛି । ଚାରିଗୋଟି ପ୍ରଦେଶରେ ବିଚ୍ଛିନ୍ନ ହୋଇ ଓଡ଼ିଆମାନେ ଉଠେଇ ପାରୁନାହାନ୍ତି । ସେମାନେ ନାନାଭାବରେ ଶୋଷିତ, ଅବହେଳିତ ହୋଇଛନ୍ତି । ସେମାନଙ୍କର ଭାଷା ଓ ସଂସ୍କୃତିକୁ ହତ୍ୟା କରିବାପାଇଁ ଉଦ୍ୟମ ହୋଇଅଛି । ଦୀର୍ଘକାଳର ମୁସଲମାନ ରାଜତ୍ୱକାଳରେ ଏ ଦୁର୍ଦ୍ଦଶା ଓଡ଼ିଆମାନେ ଜାଣି ନଥିଲେ । ମଧୁବାବୁଙ୍କ ଭାଷାରେ ବଙ୍ଗଳା ବିହାର ପରି ବଡ଼ ଗଛର ଛାଇତଳେ ରହି ଓଡ଼ିଆମାନେ ବଢ଼ିପାରି ନାହାନ୍ତି । ସେମାନେ ସ୍ୱତନ୍ତ୍ର ପ୍ରଦେଶ ପାଇଲେ ବିନା ବାଧାରେ ନିଜ ଜାତିର ଉନ୍ନତି କରିବାକୁ ସୁବିଧା ଲାଭ କରିବେ । ନୀଳକଣ୍ଠ କମିଶନଙ୍କ ଆଗରେ ନିଜର ବିବରଣୀ ପେଶ୍ କରି ଏହିପରି ଦାବୀ କରିଥିଲେ—

"The fact is that the race is culturally and economically dying. We feel that our historic race, which was so useful to the synthetic culture and nationalism of India, is still to be useful and must have to be saved. Oriyas have a right to live as much as any other race in India--both culturally and economically. × × × × × × It is the duty of teh government as well as of the nations to see that the Oriyas live. The only course to such a way is that the Oriyas have a separate province of their own. For after all the experience of the past 170 years no-other radical remedy can be contemplated." (୫୫)

---

୫୪ । ଉତ୍କଳଗୌରବ ମଧୁସୂଦନ ସ୍ମାରକୀ—ପ୍ରଗତି ଉତ୍କଳ ସଂଘ, ରାଉରକେଲା —୧୯୭୯—ପୃ ୬୭

୫୫ । ଉତ୍କଳଗୌରବ ମଧୁସୂଦନ ସ୍ମାରକୀ—ପ୍ରଗତି ଉତ୍କଳ ସଂଘ, ରାଉରକେଲା ୧୯୭୯—ପୃ ୬୯

ଅନେକେ ସନ୍ଦେହ କରୁଥିଲେ ଯେ ସ୍ୱତନ୍ତ୍ର ଉତ୍କଳପ୍ରଦେଶଟିଏ ଗଠିତ ହେଲେ ତାହା ଅର୍ଥନୀତି ଦିଗରୁ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିବ । ହୁଏତ ତାହା ସ୍ୱାବଲମ୍ବୀ ହୋଇପାରିବ ନାହିଁ । ପଣ୍ଡିତ ନୀଳକଣ୍ଠଙ୍କର ଓଡ଼ିଆଭୂମି ଏବଂ ଓଡ଼ିଆହାତ ଉପରେ ଗଭୀର ବିଶ୍ୱାସ ଥିଲା । ସେ ତାଙ୍କର ସ୍ମାରକପତ୍ର ଏବଂ ବିବରଣୀ-ଚିଠାରେ ଏ ସମ୍ପର୍କରେ ହିସାବକିତାବ କରି ଓଡ଼ିଶାପ୍ରଦେଶର ଭବିଷ୍ୟତ ଅତ୍ୟନ୍ତ ଉଜ୍ଜ୍ୱଳ ବୋଲି ପ୍ରମାଣକରି ଦେଇଥିଲେ । ପରିଶେଷରେ ସେ ସୀମା-କମିଶନର ଇଂରେଜ ସଭ୍ୟମାନଙ୍କୁ ସ୍ମରଣ କରାଇ ଦେଇଥିଲେ ଏହିପରି—

"In my explanatory memorandum to this statement. I have dealt in somewhat detail with the prospective finance of the proposed Oriya Province. Here I can only say that Oriya lands are full of resources and Oriya hands is traditionally trained in skill and is easily adaptable to it. This is the best national wealth that the Oriyas possess and awaits being utilised (56)

ନୀଳକଣ୍ଠ ବହୁକାଳ ପର୍ଯ୍ୟନ୍ତ ଓଡ଼ିଶା କଂଗ୍ରେସର କର୍ଣ୍ଣଧାର ହୋଇଥିଲେ । କେନ୍ଦ୍ର ଆସେମ୍ବ୍ଲିରେ କଂଗ୍ରେସଦଳର ସମ୍ପାଦକ ହିସାବରେ ନିଜର ନିଷ୍ଠା ଓ ଯୋଗ୍ୟତାର ପରିଚୟ ଦେଇଥିଲେ । ଦେଶପାଇଁ ବହୁବାର କାରାବରଣ କରିଥିଲେ । ସେଥିରେ ତାଙ୍କର ପରିବାର ଓ ପିଲାମାନେ କିପରି ଅବହେଳିତ ଜୀବନଯାପନ କରୁଥିଲେ ତାର ସୂଚନା ଆଗରୁ ଦିଆଯାଇଛି । ୧୯୩୭ ସାଲରେ ସେ ଥିଲେ କଂଗ୍ରେସ ନିର୍ବାଚନର ସଂଗ୍ରାଳକ ଏବଂ ଓଡ଼ିଶାରେ ୩୭ଜଣ ପ୍ରାର୍ଥୀଙ୍କ ସ୍ଥାନରେ ସେ ୩୬ ଜଣଙ୍କୁ ଜୟଯୁକ୍ତ କରାଇ କଂଗ୍ରେସପାଇଁ ସଂଖ୍ୟାଗରିଷ୍ଠତା ହାସଲ କରିଥିଲେ । ତାଙ୍କର ଏହି ନିର୍ବାଚନ ଘଟଣା ସାରାଭାରତରେ କଂଗ୍ରେସ ପାଇଁ ଏକ ନୈତିକ ବିଜୟ ଆନୟନ କରିଥିଲା ।

ନୀଳକଣ୍ଠ ଥିଲେ ବିପ୍ଳବୀ ଚିନ୍ତାଧାରାରେ ଏବଂ କାର୍ଯ୍ୟରେ । ସେ ସ୍ଥାଣୁତ୍ୱ ସହିତ ସାଲିସ କରିପାରୁନଥିଲେ । ତେଣୁ ରାଜନୀତି, ସମାଜନୀତି ଏବଂ ଶିକ୍ଷାନୀତି ପ୍ରଭୃତିରେ ତାଙ୍କର ଏହି ପ୍ରଗତିଶୀଳ ମନୋଭାବ ବହୁ ପ୍ରତିକ୍ରିୟା ସୃଷ୍ଟି କରୁଥିଲା । ଶତ୍ରୁମାନେ ଏହି ବୈପ୍ଳବିକ ମନୋଭାବର କଦର୍ଥକରି ତାଙ୍କୁ ଜୀବନରେ ନାନା ଦୁଃଖ ଦେଇଛନ୍ତି, କଂଗ୍ରେସରୁ ବିତାଡ଼ିତ କରିଛନ୍ତି, ସାମାଜିକ

୫୬ । ଉତ୍କଳଗୌରବ ମଧୁସୂଦନ ସ୍ମାରକୀ—ପ୍ରଗତି ଉତ୍କଳ ସଙ୍ଘ, ରାଉରକେଲା ୧୯୬୯—ପୃ ୨୯

ଜୀବନରେ ବାଞ୍ଛନ୍ତି କରିଛନ୍ତି ଏବଂ ସେ ଯେପରି କୌଣସି ସାମାଜିକ ସ୍ୱୀକୃତି ଲାଭକରିନ ପାରିବେ, ରାଜନୈତିକ କ୍ଷମତାର ଅଧିକାରୀ ନ ହେବେ, ଏଥିପାଇଁ ହୀନ ଚକ୍ରାନ୍ତ କରି ମଧ୍ୟ ସଫଳ ହୋଇଛନ୍ତି । ତଥାପି ନୀଳକଣ୍ଠ ଥିଲେ ଏକ ଅନନ୍ୟସାଧାରଣ ବ୍ୟକ୍ତିତ୍ୱ । ତାଙ୍କର କଥା, ଲେଖା ଓ ଚରିତ୍ରରେ ଏହି ସ୍ୱାତନ୍ତ୍ର୍ୟ ସର୍ବଦା ବାରିହୋଇ ପଡ଼ୁଥିଲା । ସେ କିପରି ଦେଶପ୍ରାଣ ଥିଲେ ତାହା ଏକ ବ୍ୟକ୍ତିଗତ ଘଟଣାରୁ ଜଣାପଡ଼ିବ । ସତ୍ୟବାଦୀ ବନବିଦ୍ୟାଳୟରେ ସେ କେବଳ ପ୍ରଧାନ ଶିକ୍ଷକ ନ ଥିଲେ ସେ ଥିଲେ ଆଦର୍ଶ ଗୁରୁ । ଅଧ୍ୟାପନା ଦାୟିତ୍ୱ ସହିତ ଚରିତ୍ରବିକାଶ ଦିଗରେ ତାଙ୍କର ତୀକ୍ଷ୍ଣ ନଜର ରହିଥିଲା । ସେହି ଅନୁଷ୍ଠାନରେ ଚନ୍ଦ୍ରଶେଖର ମିଶ୍ର ତାଙ୍କର ଛାତ୍ର ଥିଲେ । ଚନ୍ଦ୍ରଶେଖର ଥିଲେ ଦରିଦ୍ର ଏବଂ ତାଙ୍କର ପରିବାରର ଏକମାତ୍ର ପୋଷକ କଲେରାରେ ଦେହାନ୍ତ ହୋଇଗଲା । ବାଳକ ଚନ୍ଦ୍ରଶେଖର ଭାଙ୍ଗିପଡ଼ିଲେ ହତାଶାରେ । ପ୍ରଧାନଶିକ୍ଷକ ନୀଳକଣ୍ଠ ରାତିସାରା ବସି ହଷ୍ଟେଲପ୍ରକୋଷ୍ଠରେ ବାଳକକୁ ବୁଝାଉଥିଲେ—

"ଇଶ୍ୱରଙ୍କର ଇଚ୍ଛାରେ ଯେତେବେଳେ ଯାହା ଘଟେ, ସେ ତାହା ସହିପାରେ ସେହି ଏକା ମନୁଷ୍ୟ । ପୁଣି ଦେଖ, ଜଗତରେ ସମସ୍ତେ ଯଦି ତୋର କେକେଇ ହୋଇଥାନ୍ତେ ତୁ କ'ଣ ସମସ୍ତଙ୍କ ପାଇଁ କାନ୍ଦନ୍ତୁ ? ମନୁଷ୍ୟ କାହାରି ମରଣରେ ବିବ୍ରତ ହୁଏ, କାରଣ ମୃତବ୍ୟକ୍ତିଠାରୁ ସେ ଆଉ ସାହାଯ୍ୟ ପାଇବ ନାହିଁ । ସ୍ତ୍ରୀ ପୁରୁଷ ପାଇଁ, ପୁତ୍ରକନ୍ୟା ପିତାଙ୍କ ପାଇଁ ଏବଂ ବନ୍ଧୁ ବନ୍ଧୁପାଇଁ ରୋଦନ କରେ କେବଳ ସ୍ୱାର୍ଥ ଯୋଗୁଁ; କିନ୍ତୁ ସର୍ବହରା, ବଜ୍ରହୃଦୟ ଲୋକ ନିଜ ପରିଶ୍ରମ ଓ ନିଜ ସମ୍ବଳ ଦେଇ ନିଜ ପରିବାର, ବନ୍ଧୁବାନ୍ଧବମାନଙ୍କର, ଆଶ୍ରିତ ବ୍ୟକ୍ତିବର୍ଗର ପୋଷକ ହୋଇପାରେ—ସେହି ଏକା ବଡ଼ । ଦେଖ ଆମ୍ଭେମାନେ କି ଦୁଃଖ-ଦୁର୍ଦ୍ଦଶା ଅଭାବଅନାଟନ ଭିତରେ ଗୁରୁ କାର୍ଯ୍ୟ କରୁଅଛୁଁ । ଘରପୋଡ଼ି, ଅର୍ଥାଭାବ ଇତ୍ୟାଦି ସମସ୍ତ ବିପଦକୁ ଭ୍ରୂକ୍ଷେପ କରୁନାହୁଁ । ଆଜି ତୁ ପିଲା ହୋଇ ମଧ୍ୟ, ତୋର ଶୂନ୍ୟ ସଂସାରର ତୁ ପୋଷକ ଓ ପାଳକ । ଏହା ଭଗବାନଙ୍କର ଅପୂର୍ବ ଦାନ । କାନ୍ଦନା, ଦୁଃଖ କରନା—ସିଂହବଳ ଦେଇ ସଂସାରରେ ଅବତୀର୍ଣ୍ଣ ହେବାର ସୁବିଧା ତୋତେ ଭଗବାନ ଦେଇଅଛନ୍ତି ।" (୫୭)

ଗଭୀର ଆତ୍ମବିଶ୍ୱାସ ଏବଂ ବୈପ୍ଳବିକ ମନୋବୃତ୍ତି ନିଷ୍ଠାର ସହିତ ଜାଗ୍ରତ ନ ହେଲେ ଜଣେ ଗୁରୁ ତାର ଶିଷ୍ୟକୁ ଏହିପରି ଭାବରେ ପ୍ରେରଣା ପ୍ରଦାନ କରିପାରିବ ନାହିଁ ।

---

୫୭ । ସତ୍ୟବାଦୀରେ ସାତବର୍ଷ—୨ୟ ମୁଦ୍ରଣ—୧୯୬୭—ପୃ ୩୩-୩୪

ନୀଳକଣ୍ଠଙ୍କର ଜାତୀୟତାର ସ୍ଲୋଗାନ କେବଳ ରାଜନୈତିକ ସ୍ୱାଧୀନତାରେ ସୀମିତ ନ ଥିଲା । ସେ ଜଗତର ସାମାଜିକ ପାଣିପାଗରେ ଯେଉଁ ପରିବର୍ତ୍ତନ ଲକ୍ଷ୍ୟ କରୁଥିଲେ, ତାହାର ପରୀକ୍ଷାନିରୀକ୍ଷା କରି ସ୍ୱାଗତଯୋଗ୍ୟ ପନ୍ଥାକୁ ଅନୁସରଣ କରିବାପାଇଁ ଆଦୌ ପଶ୍ଚାତ୍‌ପଦ ହେଉ ନଥିଲେ । ସେ ଇଚ୍ଛା କରୁଥିଲେ ଜାତୀୟଜୀବନରେ ତାର ପରୀକ୍ଷା ହେଉ ଏବଂ ସମାଜ ପରିବର୍ତ୍ତିତ ପନ୍ଥାରେ ଅଗ୍ରସର ହେଉ ।

୧୯୨୯ ଖ୍ରୀଷ୍ଟାବ୍ଦ ଫେବୃଆରୀ ଗୃରିତାରିଖ ଦିନ କେନ୍ଦ୍ର ଆସେମ୍ବ୍ଲିରେ ପଣ୍ଡିତ ନୀଳକଣ୍ଠ Public Safety Billକୁ ପ୍ରବଳ ବିରୋଧ କରୁଥାଆନ୍ତି । ଭାଷଣ ପ୍ରସଙ୍ଗରେ ସେ ଇଂରେଜ ଶାସକବର୍ଗଙ୍କୁ ଚେତାବନୀ ଶୁଣାଇ କହିଥିଲେ ଯେ ତୁମେ ଭାରତବର୍ଷକୁ ଚିରକାଳ ବାନ୍ଧି ରଖି ପାରିବ ନାହିଁ । ୧୯୧୭ ସାଲର ଅକ୍ଟୋବର ବିପ୍ଳବରେ ସୋଭିଏଟ ରୁଷରେ କମ୍ୟୁନିଷ୍ଟବାଦର ପ୍ରସାର ସମଗ୍ର ସାମ୍ରାଜ୍ୟବାଦୀ ଶିବିରରେ ଏକ କୋକୁଆଭୟ ସୃଷ୍ଟି କରିଥାଏ । ଏହି ପ୍ରତିକ୍ରିୟାଶୀଳ ଶକ୍ତିମାନେ କମ୍ୟୁନିଷ୍ଟ ବ୍ୟବସ୍ଥାକୁ ତଣ୍ଟିଚିପି ମାରିଦେବା ପାଇଁ ଉଦ୍ୟମ ଗୃଲୁ ରଖିଥାଆନ୍ତି । ଜଗତର ଇତିହାସରେ ପ୍ରତ୍ୟେକ ନୂତନ ମତବାଦ ଏହିପ୍ରକାର ପ୍ରତିକ୍ରିୟାର ସମ୍ମୁଖୀନ ହୋଇଥିବା ଜଣାଯାଏ । (୫୮) ତେବେ ଅତୀତରେ ଯେତେପ୍ରକାର ନୂତନ ମତବାଦ ଆସିଥିଲା, ଏହି କମ୍ୟୁନିଷ୍ଟ ମତବାଦ ସେସବୁ ଉପରେ ଜୟ-ଜୟକାର ଘୋଷଣା କରିବ ବୋଲି ନୀଳକଣ୍ଠ ଅନୁଭବ କରିପାରିଥିଲେ । କାରଣ ସେତେବେଳେ ଭାରତବର୍ଷରେ ସୁଦ୍ଧା କମ୍ୟୁନିଷ୍ଟଦଳର ଜନ୍ମ ହୋଇନାହିଁ । ଓଡ଼ିଶା କଥା ଅବା କିଏ ପଗ୍ୟରେ !! ଅଥଚ ଜଣେ ଦ୍ରଷ୍ଟା ପରି ନୀଳକଣ୍ଠ କହିଥିଲେ ଯେ କାଳେ କାଳେ ପ୍ରାଚୀନ ଧାରଣାକୁ ନୂଆ ଧାରଣା ଧକ୍‌କା ଦେଇଥାଏ । ନ୍ୟସ୍ତସ୍ୱାର୍ଥ-

---

୫୮ । "× × × I say communism is there It is a means and a terror I know, to the world's imperialism and capitalism which are trembling to fall at the very thought of it Communism is there, a new ideal of world civilization. It is drawing on the horizon it has already come up; and in ordinary course it must affect the destiny of all the previous new ideals of the world. What doubt is there about it ?"
(Speeches and Remarks of Pandit Nilakantha Das. Vol. I—1959—P. 2)

ଗୋଷ୍ଠୀ ସର୍ବଦା ପ୍ରତିରୋଧ କରି ଆସିଥାନ୍ତି । ଇତିହାସ ସର୍ବଦା ଏହି ନୂତନ ଧାରଣା ଓ ଆଦର୍ଶର ଜୟଗାନ କରି ଆସିଛି । ଇଂଲଣ୍ଡର ଟିଉଡ଼ର ରାଜବଂଶର ରକ୍ତପିପାସୁ ରାଣୀମେରୀ ପ୍ରୋଟେଷ୍ଟାଣ୍ଟମାନଙ୍କୁ ପୋଡ଼ି ଲୋପ କରିଦେବେ ବୋଲି ବସିଥିଲେ । ମାତ୍ର ପରିଶେଷରେ ପ୍ରୋଟେଷ୍ଟାଣ୍ଟଧର୍ମର ହିଁ ଜୟ ହୋଇଥିଲା । ଗାଲିଲିଓ ନୂତନ କଥା ପ୍ରଚାର କରିବାରୁ ଏହି ପ୍ରତିକ୍ରିୟା ଶକ୍ତି ହାତରେ କାରାଗାରରେ ଆବଦ୍ଧ ହେଲେ । ସେ ମୃତ୍ୟୁବରଣ କଲେ ସେହି ଅନ୍ଧକାର ପ୍ରକୋଷ୍ଠ ମଧ୍ୟରେ । ତଥାପି ତାଙ୍କର ଆଦର୍ଶର ମୃତ୍ୟୁ ହୋଇପାରିଲା ନାହିଁ । ତାହା କାଳ କାଳ ପାଇଁ ବଞ୍ଚି ରହିଲା ।

ନୀଳକଣ୍ଠ ପ୍ରଶ୍ନ କରିଥିଲେ—କମ୍ୟୁନିଷ୍ଟବାଦକୁ ଶକ୍ତିଶାଳୀ ସମ୍ରାଟ ଜାର ସାଇବେରିଆରେ ବନ୍ଦୀ କରିବାକୁ ଚେଷ୍ଟା କରିଥିଲେ । ପାରିଲେ କି ? କେତେ ବିପ୍ଳବୀ କମ୍ୟୁନିଷ୍ଟ ସହୀଦ୍ ହେଲେ, ଦେଶାନ୍ତର ଦଣ୍ଡ ଭୋଗିଲେ । ମାତ୍ର ପରିଶେଷରେ ସତ୍ୟ ଓ ଆଦର୍ଶର ହିଁ ଜୟ ହେଲା । ତେଣୁ ଇଂରେଜ ସରକାରଙ୍କୁ ସେ ଚେତାବନୀ ଶୁଣାଇ କହିଥିଲେ ଯେ, "ତୁମେ ମଧ୍ୟ ଭାରତବର୍ଷକୁ ଚିରକାଳ ବାନ୍ଧି ରଖିପାରିବ ନାହିଁ । କମ୍ୟୁନିଷ୍ଟ କୋକୁଆଭୟରୁ ତୁମେ ଭାରତୀୟମାନଙ୍କୁ ରକ୍ଷା କରିବ ବୋଲି ବାହାରେ ପ୍ରଚାର କରି ବୁଲୁଛ । ତୁମେ କଣ ଜାଣ ଭାରତୀୟ ସଂସ୍କୃତିର ମର୍ଯ୍ୟାଦା ଓ ମୂଲ୍ୟବୋଧ କେତେ ? ଭାରତୀୟ ସଂସ୍କୃତି କୌଣସି ନୂତନ ମତବାଦକୁ କେବେହେଲେ ଭୟ କରିନାହିଁ, ବରଂ ଯୁଗେ ଯୁଗେ ସ୍ୱାଗତ କରି ଆସିଛି । ଏହି ପବିତ୍ର ପ୍ରାଚୀନ ଭୂମିରେ କେତେ ମତବାଦ ଆବିର୍ଭୂତ ହୋଇ ସ୍ୱକୀୟ ମହିମାରେ ଉଦ୍‌ଭାସିତ ହୋଇଛି ଏବଂ ପରେ ଭାରତୀୟ ସଂସ୍କୃତିର ମହାସାଗର ମଧ୍ୟରେ ଅସ୍ମିତା ହଜାଇ ବସିଛି (୫୯) ବିପ୍ଳବ ନାମରେ କମ୍ୟୁନିଷ୍ଟ ମତବାଦର ଜୁଆ

59 "You cannot now make this Indian Empire a harem, a zenana of the British Imperialist, to be exploited in the dark. I say communism has come in. Let it come, and we are here to face it." P. 2. "You may supress the beautiful youth movement for you have power, but will communism be warded off ? will not the communist principle come Into India ? As it is a new idea, it will, as it is already doing, pervade the atmosphere of the world, and it must come to India as it has come to England or to anyother country." P. 3. (Speeches and Remarks of Pandit Nilakantha Das-Vol I–1959)

ଦେଇ ଇଂରେଜ ସାମ୍ରାଜ୍ୟବାଦୀଗଣ ଭାରତୀୟମାନଙ୍କର ରକ୍ଷାକର୍ତ୍ତା ହେବେ ବୋଲି ପ୍ରଚାର କରିଥିଲେ । ପ୍ରଗତିର ମାନ୍ତ୍ରିକ, ବୈପ୍ଳବିକ ମତବାଦର ପୂଜାରୀ ନୀଳକଣ୍ଠ ବଜ୍ରନିର୍ଘୋଷ ସ୍ୱରରେ କେନ୍ଦ୍ରଆସେମ୍ବ୍ଲିରେ ସାବ୍ୟସ୍ତ କରିଥିଲେ—ତୁମେ ଏହାକୁ ବିପ୍ଳବ ବୋଲି କହୁଛ । ମାତ୍ର ବିପ୍ଳବ କଣ ? ଦର୍ଶନର ଛାତ୍ର ହିସାବରେ ମୁଁ ବିପ୍ଳବର ଅର୍ଥ କିଛି ବୁଝେଁ ନାହିଁ । ପ୍ରଗତିର ଗତିପଥରେ ଯାହାକିଛି ନୂତନ ପ୍ରତିଭାତ ହୁଏ, ତାହା ବିବର୍ତ୍ତନର ଅନ୍ୟ ଏକ ରୂପ । ବିପ୍ଳବ ଧାରଣାଟି ଗୋଟିଏ ଅବୈଜ୍ଞାନିକ ଚିନ୍ତାଧାରା । ଗୋଟିଏ ଗଛର ଉଦାହରଣ ନିଅ । ତାର ଫୁଲ ହେଉଛି ଜଣେ ଉଦ୍ଭିଦତତ୍ତ୍ୱବିଦ୍‌ଙ୍କ ମତରେ ପତ୍ରର ଏକ ପ୍ରକାଶ । ସାଧାରଣ ମନୁଷ୍ୟ ପୁଷ୍ପର ପ୍ରସ୍ଫୁଟନକୁ ଗଛର ଜୀବନରେ ଏକ ବିପ୍ଳବ ମନେ କରିଥାଏ । ମାତ୍ର ବିଜ୍ଞାନୀ ଜାଣେ ଏହା ବୃକ୍ଷର ଏକ ବିବର୍ତ୍ତନ ମାତ୍ର । ତେଣୁ କମ୍ୟୁନିଷ୍ଟ ମତବାଦ ମାନବ-ସଂସ୍କୃତିର ବିବର୍ତ୍ତନର ଶେଷକଥା ନ ହୋଇପାରେ । (୬୦) ତେଣୁ ତାହାକୁ ଆମେ ସ୍ୱାଗତ କରିବୁ । ଭାଷଣପ୍ରସଙ୍ଗରେ ଇଂରେଜ ସାମ୍ରାଜ୍ୟବାଦୀଙ୍କର ଅସଲ ସ୍ୱରୂପ ଉଦ୍‌ଘାଟନ କରିଦେଇ ନୀଳକଣ୍ଠ କହିଲେ ଯେ ଆମ ସଂସ୍କୃତିର ମୂଳସତ୍ୟ ଉପଲବ୍ଧି ନକରି ତୁମେ ଆମ ସଂସ୍କୃତିର ରକ୍ଷକ ହେବାକୁ ସ୍ୱପ୍ନଦେଖିବା ବିଡ଼ମ୍ବନା ମାତ୍ର । ଆମ ସଂସ୍କୃତି ସମ୍ପର୍କରେ ନୀଳକଣ୍ଠ ବୁଝାଇବାକୁ ଯାଇ କହିଥିଲେ—

"Indian culture is always open to all sorts of ideas and movements and all sorts of thoughts. No ideas or ideals have ever been shut out of our doors. Even in the days of Brahminism we had our Charvaka philosophy which preached.—

---

୬୦ । "Who knows that this new ideal that is coming is not the best stage in the evolution of human culture—an indication of the purpose for which humanity exists ? Let it have a trial all over the world; let it have a trial in India. We are here to face it as I have told you." (Speeches and Remarks of Pandit Nilakantha Das-
Vol I-1959-P.3.)

"We cannot agree that people coming to preach certain new ideas in India should be shut out. This is unthinkable."

( I. B I. D.—P. 4)

ଯାବଜ୍ଜୀବେତ୍ ସୁଖଂ ଜୀବେତ୍ ଋଣଂ କୃତ୍ୱା ଘୃତଂ ପିବେତ୍
ଭସ୍ମୀଭୂତସ୍ୟଦେହସ୍ୟ ପୁନରାଗମନଂ କୁତଃ ।

'That is enjoy as long as you live; borrow money, drink ghee (with that money) (for) after your body is done to ashes' you are not coming again.' That was the Charvaka system of philosophy preached by Brihaspati. It was not only tolerated in India but was given as free a scope as anyother philosophy in the land. Culture was not damaged. The then existing order of things did not come down like a house of cards. Rather our culture was synthetically supplemented by this aspect of human life. You speak of prɛserving culture against ideas which are foreign to the Indian I do not understand how you can preserve culture by wording of aspect of culture from the shores of India. It is impossible". (୭୧)

ନୀଳକଣ୍ଠ ଥିଲେ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ସେନାପତି । ସେକାଳର ଭାରତୀୟ ନେତାମାନଙ୍କ ନିକଟରେ ତାଙ୍କର ଏକ ସମ୍ମାନିତ ସ୍ଥାନ ଥିଲା । ଓଡ଼ିଶାର ରାଜନୀତି ଓ ସାଂସ୍କୃତିକ କ୍ଷେତ୍ରରେ ସେ ଥିଲେ ଅଗ୍ରପୂଜ୍ୟ । ସେକାଳରେ କେନ୍ଦ୍ର-କେନ୍ଦ୍ର ଭାରତୀୟ ନେତା ବିଶ୍ୱାସ କରି ପାରୁନଥିଲେ ଯେ ପ୍ରବଳପ୍ରତାପୀ ଇଂରେଜ ସରକାରଙ୍କୁ ପରାସ୍ତ କରି ସ୍ୱାଧୀନତା ଅର୍ଜନ କରାଯାଇ ପାରିବ । ଏକ ବଣିକଜାତି ହିସାବରେ ବିଶାଳ ଭାରତକୁ ଶୋଷଣ କରିବାର ପ୍ରଲୋଭନ ସେମାନେ ଏଡ଼ିଦେବେ କାହିଁକି ? ତେଣୁ ଅନେକ ଚିନ୍ତା କରୁଥିଲେ, କୌଣସିପ୍ରକାରେ ଇଂରେଜ ସରକାରଙ୍କୁ ପ୍ରବନ୍ତାଇ "ଡୋମିନିଅନ ଷ୍ଟାଟସ" ହାସଲ କରିବାପାଇଁ । ପଣ୍ଡିତ ନୀଳକଣ୍ଠ ହତାଶାବାଦୀ ନଥିଲେ । ସ୍ୱାଧୀନତା ପରିବର୍ତ୍ତେ କୌଣସିପ୍ରକାର ସାଲିସ-ପ୍ରସ୍ତାବ ତାଙ୍କ ପାଇଁ ଗ୍ରହଣଯୋଗ୍ୟ ନଥିଲା । ପୂର୍ଣ୍ଣସ୍ୱାଧୀନତା ହାସଲ କରିବା ଥିଲା ତାଙ୍କର ଏକମାତ୍ର ଲକ୍ଷ୍ୟ । ଏଥିପାଇଁ ଯେକୌଣସି ତ୍ୟାଗ ସ୍ୱୀକାର କରିବାକୁ ସେ ପ୍ରସ୍ତୁତ ଥିଲେ । ଏ ସମ୍ପର୍କରେ କେନ୍ଦ୍ର ଆସେମ୍ବ୍ଲିରେ ୧୯୨୯ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ଷୋହଳ

---

୭୧—Speeches and Remarks of Pandit Nilakantha Das. Vol. I—1959—P. 3 4

ଛାଡ଼ଖଟରେ ତାଙ୍କ ପ୍ରଦତ୍ତ ଭାଷଣ ଆଲୋଚନା କରାଯାଇପାରେ । ସେହିପରି ସେ ଭାରତୀୟ ରେଲ୍‌ୱେଗୁଡ଼ିକର ଖର୍ଚ୍ଚ ଦାବୀ ଉପରେ ଭାଷଣ ଦେଉଥାନ୍ତି । ଜଣେ ଇଂରେଜ ରାଜନୀତିଜ୍ଞ କର୍ଣ୍ଣେଲ କ୍ରଫୋର୍ଡ଼ (Colonel Crawford) ଆଲୋଚନା ପ୍ରସଙ୍ଗରେ କହିଲେ ଯେ "ତୁମକୁ ଡୋମିନିଅନ ଷ୍ଟାଟସ୍ ମିଳିଲେ ଆଉ ସ୍ୱାଧୀନତା ଆନ୍ଦୋଳନ-ଅବ୍ୟାହତ ରଖିବ ନାହିଁତ ?"

ପଣ୍ଡିତ ନୀଳକଣ୍ଠ ଏହାର ଉତ୍ତରରେ କହିଲେ—ମୋର ବରେଣ୍ୟ ନେତାମାନେ ଭିକ୍ଷାଝୁଲି ଧରି ଇଂରେଜ ସରକାରଙ୍କୁ ହାତ ପତାଉ ନାହାନ୍ତି । ସେମାନେ ତାଙ୍କର କୋଟି କୋଟି ଦେଶବାସୀଙ୍କର ପ୍ରତିନିଧି ହିସାବରେ ହକ୍‌ଦାବୀ ଉପସ୍ଥାପିତ କରିଛନ୍ତି । ହୁଏତ ଆଲୋଚନାକାଳରେ ସମୟକ୍ରମେ କେତେକ ଉଦାରତା ପ୍ରକାଶ କରି ଥାଇପାରନ୍ତି । ମାତ୍ର ଏହାର ଅର୍ଥ ନୁହେ ଯେ ଆମେ ସ୍ୱାଧୀନତାର ବିନିମୟରେ କୌଣସି ସାଲିସ କରିବାକୁ ଯାଉଛୁ । (୭୨) ଭାରତ ଚିରକାଳ ବିଦେଶୀଙ୍କୁ ଉଦାରତା ପ୍ରକାଶ କରି ଆସିଛି । ଇଂରେଜସରକାରଙ୍କୁ ସାହାଯ୍ୟ କରିବାପାଇଁ ଏପରି କଥା ହୁଏତ ନେତାମାନେ କହିଛନ୍ତି । ଇଂରେଜ ସରକାରଙ୍କ ଆଡୁ ପ୍ରସ୍ତାବ ଆସିଲେ ତାର ବିଚାର କରାଯିବ । ଆମେ କେବେହେଲେ ଜାତିର ଅପମାନ କରି କୌଣସି କଥା ଗ୍ରହଣ କରିବୁ ନାହିଁ । ଆମେ ଏପରି ଅପମାନିତ ଅବସ୍ଥାରେ ବଞ୍ଚିବା ଅପେକ୍ଷା ମରଣକୁ ବରଂ ଶ୍ରେୟ ମନେ କରିବୁ ।

ସ୍ୱାଧୀନତା ଆସିଲାବେଳକୁ ସେ କଂଗ୍ରେସ-ରାଜନୀତିରୁ ଦୂରେଇ ଯାଇଥିଲେ । ଦ୍ୱିତୀୟ ମହାଯୁଦ୍ଧକାଳରେ ସ୍ୱନାମଧନ୍ୟ ବିପ୍ଳବୀ ସୁଭାଷଚନ୍ଦ୍ର ବୋଷଙ୍କ ସହିତ

୭୨ । "Therefore I say, a subject and dependent people we are, and ours is to strive for independence pure and simple at any cost and without considering consequences. If any party is interested in living with us amicably, it is their business to come forward with the offer of dominion status, or whatever you call it. Then will be the time for us to see it and sit in judgement over it, and dictate our own terms and conditions, if need be."

(Speeches & Remarks of Pandit Nilakantha Das Vol I—1959 – P. 45

ମିଳିତ ହୋଇ ଏକ ନୂଆ ସ୍ୱପ୍ନ ଦେଖୁଥିଲେ, ମିଳିତ ମନ୍ତ୍ରିମଣ୍ଡଳ ଜରିଆରେ ଦେଶବାସୀ ଶାସନଭାର ଗ୍ରହଣ କରିବେ ଏବଂ ସୁବାଷ ବୋଷଙ୍କ ବୈପ୍ଳବିକ ଅଭିଯାନକୁ ସ୍ୱାଗତ କରିବାପାଇଁ ଏ ଦେଶ ଭିତରେ ଏକ ପ୍ରବଳ ଶକ୍ତି ପ୍ରସ୍ତୁତ ହୋଇ ରହିଥିବ । ମାତ୍ର ଦୁର୍ଭାଗ୍ୟକ୍ରମେ ସୁବାଷବୋଷଙ୍କର ଅଭିଯାନ ବିଫଳ ହେଲା ଏବଂ ସେ ଦୁର୍ଘଟଣାରେ ପ୍ରାଣତ୍ୟାଗ କଲେ । ତାଙ୍କୁ ଯେଉଁମାନେ ଦେଶମଧ୍ୟରେ ସହଯୋଗ କରୁଥିଲେ ସେମାନେ କ୍ଷମତା-ରାଜନୀତିର ଅନୁରୋଧରେ ନିନ୍ଦିତ ହେଲେ । ପଣ୍ଡିତ ନୀଳକଣ୍ଠ କିନ୍ତୁ ଶେଷପର୍ଯ୍ୟନ୍ତ ତାଙ୍କର ସ୍ୱାଧୀନ ମତବାଦର ପ୍ରତିଷ୍ଠାରେ ଥିଲେ ଅଟଳ ଓ ଅବିଚଳିତ ।



# ମଣିଷଗଢ଼ା କାରଖାନା

ସେତେବେଳେ ପରାଧୀନ ଭାରତବର୍ଷରେ ଶିକ୍ଷାନୀତି ବିଦେଶୀ ସରକାରଙ୍କ ସଂପୂର୍ଣ୍ଣ ନିୟନ୍ତ୍ରଣାଧୀନ ଥାଏ । ଇଂରେଜ ସରକାରଙ୍କ ସରକାରୀଦପ୍ତରକୁ ଲୋକ ଯୋଗାଇବା ଥାଏ ଶିକ୍ଷାନୁଷ୍ଠାନମାନଙ୍କର ପ୍ରଧାନ କାର୍ଯ୍ୟ । ଏହାକୁ ସେକାଳରେ କୁହାଯାଉଥାଏ କରଣୀତିଆରି କାରଖାନା । ଯେଉଁମାନେ ଏଠାରେ ପାଠ ପଢ଼ୁଥିଲେ, ସେମାନେ ଇଂରେଜ ସରକାରଙ୍କର ଦପ୍ତରରେ ଚାକିରି କରି ନିଜକୁ ଧନ୍ୟ ମନେ କରୁଥିଲେ ଏବଂ ଇଂରେଜୀ ଶାସନ, ସଭ୍ୟତା ଓ ସଂସ୍କୃତିର ଥିଲେ ଅକୁଣ୍ଠ ସମର୍ଥକ । ଫଳରେ ମାକଲେ ସାହେବଙ୍କ ଶିକ୍ଷାନୀତି ସଂପୂର୍ଣ୍ଣ ସାର୍ଥକତା ଲାଭ କରିଥିଲା । ସେ କଳ୍ପନା କରିଥିଲେ—ଏ ଦେଶରେ ଇଂରେଜୀଶିକ୍ଷା ବିସ୍ତାର ଫଳରେ ଏପରି ଅନେକ କଳାସାହେବ ତିଆରି ହେବେ, ଯେଉଁମାନେ କି ଇଂରେଜୀ ସାମ୍ରାଜ୍ୟବାଦର ସ୍ତମ୍ଭ ସ୍ୱରୂପ କାର୍ଯ୍ୟ କରିବେ । ସତ୍ୟବାଦୀ ବନବିଦ୍ୟାଳୟରେ ଏହି ଶିକ୍ଷାନୀତି ବିରୁଦ୍ଧରେ ପ୍ରବଳ ଆନ୍ଦୋଳନ ଆରମ୍ଭ ହୋଇଥିଲା । ସେଠାର ତ୍ୟାଗପୂତ ଆଦର୍ଶପ୍ରାଣ ଶିକ୍ଷକଗଣ ଦେଶ ଓ ସମାଜର କଲ୍ୟାଣ ପାଇଁ ସର୍ବସ୍ୱ ତ୍ୟାଗ କରିଦେବାକୁ ଆଦୌ କୁଣ୍ଠିତ ହେଉ ନ ଥିଲେ । ଏହି ତ୍ୟାଗ-ପୂତ ଶିକ୍ଷକକୁଳର ସର୍ବମାନ୍ୟ ନେତାଥିଲେ ପଣ୍ଡିତ ନୀଳକଣ୍ଠ ଦାସ ଏବଂ ପ୍ରଧାନ ଶିକ୍ଷକ ଭାବରେ ସେ ବନବିଦ୍ୟାଳୟର ବଳିଷ୍ଠ ମୂଳଦୁଆ ପକାଇଥିଲେ । ପ୍ରାଚୀନ ଗୁରୁକୁଳ ଆଶ୍ରମର ଗୁରୁମାନଙ୍କ ପରି ଶିକ୍ଷକମାନେ ଜୀବନଯାପନ କରୁଥିଲେ । ସେମାନଙ୍କର ଐକାନ୍ତିକ ନିଷ୍ଠା ଏବଂ ବହୁପାଠିତା, ସଂସ୍କାରପ୍ରାଣତା ଏବଂ ତ୍ୟାଗ-ପୂତ ଜୀବନର ଆଦର୍ଶ ବହୁ ଇଉରୋପୀୟ ପ୍ରଶାସକ ଏବଂ ଶିକ୍ଷାବିତ୍‌ଙ୍କୁ ମଧ୍ୟ ଚମତ୍କୃତ କରି ଦେଉଥିଲା । ନୀଳକଣ୍ଠଙ୍କ ଶିକ୍ଷକ-ଜୀବନ ସଂପର୍କରେ ବହୁ ରୋମାଞ୍ଚକର କାହାଣୀ ଶୁଣିବାକୁ ମିଳିଥାଏ । "ଯଶୋବନ୍ତ ପୁରୁଷ" ଶୀର୍ଷକ ଏକ ଅଗ୍ରଲେଖାରେ ଶ୍ରୀ ଜଗନ୍ନାଥ ମହାପାତ୍ର ଲେଖିଥିଲେ—

—"ସକଳପ୍ରକାର ବିଳାସବ୍ୟସନପ୍ରତି ବୀତଶ୍ରଦ୍ଧ ହୋଇ କେବଳ ଜ୍ଞାନ ଅର୍ଜନ ପାଇଁ ରଙ୍କପରି ହେଉଥିଲେ ପଣ୍ଡିତପ୍ରବର ନୀଳକଣ୍ଠ ଦାସ । ଗୃହ-ଜୀବନରୁ ସେ ସେଥିଲାଗି ବ୍ୟାକୁଳ ଥିଲେ । × × × × × ସତ୍ୟବାଦୀ

ବନବିଦ୍ୟାଳୟର ଶିକ୍ଷକ ଥିଲାବେଳେ ବିରାଟ ଗ୍ରନ୍ଥାଗାରରେ ଯେତେ ସୁପାଠ୍ୟ, ଦୁରୂହ ଓ ଦୁର୍ଭେଦ୍ୟ ଗ୍ରନ୍ଥ ଥିଲା ସେଥିରୁ ଅଧିକାଂଶ ପଢ଼ିଥିଲେ କେବଳ ସେହି। × × × ଶୁଣାଯାଏ ଦିନେଦିନେ ସବୁ କାମ ସାରି ରାତିରେ ପଢ଼ୁପଢ଼ୁ ନିଶାର୍ଦ୍ଧ ହୋଇଯାଏ, କେବେ ନିଶା ଶେଷ ହୋଇଯାଏ, ପଢ଼ିବା ତାଙ୍କର ଏକ ସାଧାରଣ ନିଶା। ସେ ସେଥିରେ କେବେ ପରିତୃପ୍ତି ଲାଭ କରି ପାରନ୍ତି ନାହିଁ। ଯେତେବେଳେ ଯେଉଁ କର୍ମକ୍ଷେତ୍ରରେ ଥାନ୍ତି, ଜ୍ଞାନଅର୍ଜନ କରିବା ଦିଗରେ ସୁବିଧା ଖୋଜୁଥାନ୍ତି। ଏପରିକି ଅସହଯୋଗ ଆନ୍ଦୋଳନ ବେଳେ କାରାଗାର ଭିତରେ ରହି ଜ୍ଞାନଚର୍ଚ୍ଚାରୁ ବିରତ ହୋଇ ନ ଥିଲେ। ତାଙ୍କ ପରି ଜ୍ଞାନଗର୍ଭ ବ୍ୟକ୍ତି ଖାଲି ଓଡ଼ିଶାରେ ନୁହେଁ, ସମଗ୍ର ଭାରତବର୍ଷରେ ମଧ୍ୟ ବିରଳ। ଧର୍ମ, ଦର୍ଶନ, ଇତିହାସ, ରାଜନୀତି ପ୍ରଭୃତି ବିଭିନ୍ନ ଶାସ୍ତ୍ରରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା।

ବନବିଦ୍ୟାଳୟର ବକୁଳ-ଚୁରିଅନା-ନିକୁଞ୍ଜ ଭିତରେ ବସି ସରଳ, ସୁକୁମାର ଛାତ୍ରମାନଙ୍କୁ ଜ୍ଞାନଦାନ କରିବାରେ ସେ ନିଶ୍ଚିନ୍ତ ନ ଥିଲେ। ସେ ବୁଝିଥିଲେ—ଏ ଜାତିର ଶିକ୍ଷା ଅତି ଅନୁନ୍ନତ ଅବସ୍ଥାରେ ଅଛି। ବିଭିନ୍ନ ଉପାୟରେ ଲୋକଙ୍କ ଭିତରେ ଶିକ୍ଷାର ପ୍ରସାର କରିବା ପ୍ରତ୍ୟେକ ଶିକ୍ଷିତ ଲୋକଙ୍କର ଗୋଟିଏ ମୁଖ୍ୟ କର୍ତ୍ତବ୍ୟ। ଉପଯୁକ୍ତ ଶିକ୍ଷା ନ ପାଇଲେ ଆମ ଦେଶରେ ଜାତୀୟଜୀବନ ଗଠନ କରିବା ନିମନ୍ତେ ଅସମ୍ଭବ ହୋଇପଡ଼ିବ। ସେଥିପାଇଁ ସେ ନାନା ଉପାଦେୟ ପୁସ୍ତକ ଲେଖି ସଭା-ସମିତିରେ ସୁବକ୍ତା ରୂପେ ବହୁ ବିଷୟ ଆଲୋଚନା କରି ଜ୍ଞାନ ବିତରଣ କରୁଥିଲେ। ଶିକ୍ଷକ ଅବସ୍ଥାରେ ଛାତ୍ରମାନଙ୍କୁ ଧରି ନାନା ଦର୍ଶନୀୟ ସ୍ଥାନ ଭ୍ରମଣ ପାଇଁ ଯାଉଥିଲେ। ସେତେବେଳେ ସୁବିଧା ସୁଯୋଗ ଦେଖି ବାଟଘାଟରେ କଥାବାର୍ତ୍ତା ଓ ଗଳ୍ପ ଛଳରେ ଛାତ୍ରମାନଙ୍କୁ ଦେଶର ଐତିହାସିକ ଓ ପୌରାଣିକ କାହାଣୀମାନ ଶୁଣାଉଥିଲେ। ବିଶ୍ରାମ ସମୟରେ ମଧ୍ୟ ସେଇ କଥା। ସେ କୌଣସି ମୁହୂର୍ତ୍ତିକୁ ମଧ୍ୟ ବୃଥାରେ କଟାଉ ନଥିଲେ। ସମୁନ୍ନତ ଜାତୀୟଜୀବନ ଗଠନ କରିବା ଦିଗରେ ସେ ଜଣେ ସିଦ୍ଧହସ୍ତ ବ୍ୟକ୍ତି ଥିଲେ।" (୭୩) ନୀଳକଣ୍ଠଙ୍କ ବହୁପାଠିତା ସମ୍ପର୍କରେ ହିନ୍ଦସେବକସମାଜର ପ୍ରବୀଣ ସଭ୍ୟ ଶ୍ୟାମସୁନ୍ଦର ମିଶ୍ର ମଧ୍ୟ ସ୍ମୃତିଚାରଣ କରି ଥାଆନ୍ତି। ସେତେବେଳେ ନୀଳକଣ୍ଠ ଥାଆନ୍ତି ବନବିଦ୍ୟାଳୟର ପ୍ରଧାନଶିକ୍ଷକ। ଉକ୍ତ ବିଦ୍ୟାଳୟ ପାଟଣା ବିଶ୍ୱବିଦ୍ୟାଳୟର ମଞ୍ଜୁରୀ ପାଇବ କି ନାହିଁ, ଏହା ନିଷ୍ପତ୍ତି କରିବାଲାଗି ତତ୍କାଳୀନ ରେଭେନ୍ସାକଲେଜର ଅଧକ୍ଷ ଲେମ୍ବର୍ଟ ସାହେବ ପରିଦର୍ଶକ ଭାବରେ ଆସିଥାଆନ୍ତି। ନୀଳକଣ୍ଠ ତାଙ୍କୁ ସ୍କୁଲ ବୁଲାଇ ଦେଖାଇବା ସଙ୍ଗେସଙ୍ଗେ ତତ୍‌ସଂଲଗ୍ନ ଲାଇବ୍ରେରୀକୁ ମଧ୍ୟ ନେଇ ଯାଇଥିଲେ। ଅଧକ୍ଷ ନୀଳକଣ୍ଠ ଲାଇବ୍ରେରୀର ପ୍ରତ୍ୟେକ ବହିର ସାରମର୍ମ ସମ୍ପର୍କରେ ଟିପ୍ପଣୀ

---

୭୩। ନୀଳକଣ୍ଠ ସ୍ମାରକୀ—୧୯୮୦—ପୃ୯୦-୯୧

ପ୍ରଦାନ କରି ଅଧକ୍ଷମହାଶୟଙ୍କୁ ବିସ୍ମିତ କରି ଦେଇଥିଲେ । ନୀଳକଣ୍ଠଙ୍କର ତ୍ୟାଗ, ପାଣ୍ଡିତ୍ୟ ଏବଂ ନିରାଡ଼ମ୍ବର ଜୀବନଯାପନପ୍ରଣାଳୀ ଇଂରେଜ ଶିକ୍ଷାବିତ୍‌ଙ୍କୁ ଅତ୍ୟନ୍ତ ବିସ୍ମିତ କରି ଦେଇଥିଲା । ସେ ଆଶ୍ଚର୍ଯ୍ୟ ହୋଇ କହିଥିଲେ, ଏପରି ସାଧନା କଣ ତୁମରି ଉତ୍ତରାଧିକାରୀମାନେ କରି ଦେଖାଇ ପାରିବେ । (୭୪) ନୀଳକଣ୍ଠ ଥିଲେ ଆଦର୍ଶ ଶିକ୍ଷକ । ତାଙ୍କର ଶାସନ ଥିଲା ଅତ୍ୟନ୍ତ କଠୋର । ଶ୍ରେଣୀଗୃହରେ ବିଦ୍ୟାଭ୍ୟାସଜନିତ ଆଲୋଚନା ବ୍ୟତୀତ ଆଉ କିଛି ଚର୍ଚ୍ଚା ହେଉ ନ ଥିଲା । ପ୍ରସଙ୍ଗକ୍ରମେ ବହୁ ଉଦ୍‌ବୋଧନମୂଳକ କଥାସବୁ କହି ସେ ଛାତ୍ରମାନଙ୍କୁ ଅନୁପ୍ରାଣିତ କରି ଦେଉଥିଲେ ।

ଆଦର୍ଶ ବନବିଦ୍ୟାଳୟ ସମ୍ପର୍କରେ ପଣ୍ଡିତ ଗୋପବନ୍ଧୁ ଦାସ ୧୯୧୩ ମସିହାରେ ଗୋଟିଏ କ୍ଷୁଦ୍ର ବିଜ୍ଞାପନ ପ୍ରକାଶ କରିଥିଲେ । ଏହା ମୁକୁରପ୍ରେସରେ ମୁଦ୍ରିତ ହୋଇଥିଲା । ଏହି ଅଗ୍ରଲେଖାର ଶୀର୍ଷକ ଥିଲା—"The Satyabadi School—Its aim and character." ଏଥିରେ ସ୍କୁଲର ତ୍ୟାଗୀ କର୍ମବୀରମାନଙ୍କ ସମ୍ପର୍କରେ ପ୍ରଥମରୁ ବର୍ଣ୍ଣନା କରାଯାଇଥିଲା । ତାପରେ ସେ ଲେଖିଥିଲେ—

"The School receives no aid either from the government on from the District Board. Self-help and Self-sacrifice are its guiding principle. The sprit of the workers has been well recognised by the public as well as the authorities. The Star of Utkal says—

"We are extremely glad to hear that the Satyabadi Higher class English School is making steady progress year after year. The authorities of the School are composed of young men who know how much they have to sacrifice for the improvement of their country and their nation. We know from reliable source that some of the members pay from their pockets from one-fourth to one-eighth of their income every month. **Babu Nilakantha Das an M. A is headmastering the School without any remuneration.** Such noble effect reminds us of the self-sacrificing

---

୭୪ । ନୀଳକଣ୍ଠ ସ୍ମାରକୀ—୧୯୮୦—ପୃ ୨୬

professors of the Furgusson College, Poona where Hon'ble Mr. Gokhale one day apprenticed as a school-master."

Pandit Ramaballava mishra, M. A. B. L., the District magistrate of Puri who pleased to visit the School on the 24th April, 1912 shortly after the school was destroyed by fire, observes :—

'I was pleased to notice the spirit of self-help among the executive of the school. The classes are now being held under the shade of the trees near the school house and the work of teaching is going on as if nothing has happened. **The institution is a refreshing example of self-help and self-sacrifice on the part of the superintendent (Babu Nilakantha Das) and his assistants and fully deserves support and encouragement."**

Mr J. Maclean B. A. (Oxon , Inspector of Schools in his recent visit to the School remarks :—

'The School has suffered a series of misfortunes during the past year. On the 22nd March the furniture, roof and other parts of the building were destroyed by fire. The walls that remained standing were razed to the ground by the cyclone of the 31st october. The School is now held under the trees of the compound. The institution is an unaided one. Over Rs. 2000/- has been collected for a new building which, it is intended, should be completed before April. The zeal of the promoters and teachers of the School is highly commendable."

ସତ୍ୟବାଦୀରେ ଅନୁଷ୍ଠିତ ପୁରୀଜିଲ୍ଲା ଶିକ୍ଷାସମ୍ମିଳନୀରେ ଭକ୍ତକବି ମଧୁସୂଦନ ରାଓ ସଭାପତି ଅଭିଭାଷଣରେ କହିଥିଲେ—

"Some sacrificing and patriotic young men have set up a School here (at Satyabadi). I bow down my head before that institution, which I consider to be a noble example of self-sacrifice and burning faith and I hope it w ll stand as a temple of learning for the advancement and edification of our people."

ଗୋପବନ୍ଧୁ ଆଶା ପ୍ରକାଶ କରିଥିଲେ ଏହି ବନବିଦ୍ୟାଳୟ ସୁଦୃଢ଼ ହୋଇଗଲେ ଏଥିରୁ ଉତ୍ତୀର୍ଣ୍ଣ ଛାତ୍ରମାନେ ସତ୍ୟବାଦୀ ସ୍କୁଲ ଆଦର୍ଶରେ ଅନ୍ୟତ୍ର ଅନୁଷ୍ଠାନ ପ୍ରତିଷ୍ଠା କରି ଶିକ୍ଷା ବିସ୍ତାରରେ ସାହାଯ୍ୟ କରିବେ । ଧନ୍ଦାଭିତ୍ତିକ ଶିକ୍ଷାର ପ୍ରଚଳନ ପାଇଁ ମଧ୍ୟ ସେଠାରେ ଚିନ୍ତା କରାଯାଉଥିଲା । ବନବିଦ୍ୟାଳୟର ଶିକ୍ଷାବ୍ୟବସ୍ଥା ଥିଲା ଅତ୍ୟନ୍ତ ଆଦର୍ଶସ୍ଥାନୀୟ । ଏଠାରେ କୌଣସିପ୍ରକାର ଭେଦଭାବକୁ ପ୍ରଶ୍ରୟ ଦିଆଯାଇ ନ ଥିଲା । ଏଥିରେ ଘୋଷଣା କରାଯାଇଥିଲା—

"The School is open to all classes of students without any distinction of caste, creed, colour or race. For the promoters sincerely hold that education in its true sense is not a matter of provincial, sectarian or racial interest, it is a necessity of man who is endowed with immense possibilities for infinite progress." ତରୁଣ ଶିକ୍ଷାବ୍ରତୀ କର୍ମୀଗଣ ଅପୂର୍ବ ତ୍ୟାଗ ସ୍ୱୀକାର କରି ବନବିଦ୍ୟାଳୟରେ ଶିକ୍ଷାର ବିସ୍ତାରରେ ଲାଗିପଡ଼ିଛନ୍ତି ବୋଲି ଗୋପବନ୍ଧୁ ଆଶା ପ୍ରକାଶ କରିଥିଲେ ।

ବନବିଦ୍ୟାଳୟରେ ବାସ୍ତବିକ ମନୁଷ୍ୟ ଗଢ଼ା ହେଉଥିଲେ । ଏହାର ପ୍ରାଣପ୍ରତିଷ୍ଠାତା ଉତ୍କଳମଣି ଗୋପବନ୍ଧୁ ଅତ୍ୟନ୍ତ ଆବେଗର ସହିତ ସତ୍ୟବାଦୀରେ ଅନୁଷ୍ଠିତ ଜିଲ୍ଲାର ଶିକ୍ଷାସମ୍ମେଳନର ଅଭ୍ୟର୍ଥନା ସମିତି ସଭାପତି ରୂପେ ଯେଉଁ ଭାଷଣ ପ୍ରଦାନ କରିଥିଲେ ତାହା ଅତ୍ୟନ୍ତ ତାତ୍ପର୍ଯ୍ୟ ପରିପୂର୍ଣ୍ଣ । ସେ କହିଥିଲେ—"ଶିକ୍ଷା ଏହି କଥାଟି ସହଜ ଓ ସରଳ ଏବଂ ସର୍ବଦା ଶୁଣାଯିବାରେ ଅତି ସାଧାରଣ ପରି ବୋଧହୁଏ । କିନ୍ତୁ ବସ୍ତୁତଃ ଏହାଠାରୁ ବଳି ମାନବ ଚିନ୍ତା ପକ୍ଷରେ ଗୁରୁତର ବିଷୟ କିଛି ନାହିଁ । ସମସ୍ତ ସଭ୍ୟ ଜାତିର ଅସାଧାରଣ ମନୀଷୀଗଣ ଏଥିର ଉନ୍ନତି ଓ ଆଲୋଚନାରେ ଜୀବନ ଦେଇଅଛନ୍ତି । ଦେଶହିତୈଷୀ ମନୀଷୀମାନେ ଏହାକୁ ସମସ୍ତ କଲ୍ୟାଣର ନିଦାନ ବୋଲି ଜାଣି ଏଥିର ଉନ୍ନତି ଓ ପ୍ରସାର ନିମନ୍ତେ ବିହିତ ବ୍ୟବସ୍ଥା କରିଆସନ୍ତି । × × × ଉତ୍କଳର ଅନ୍ୟାନ୍ୟ ଜିଲ୍ଲାମାନଙ୍କ ଅପେକ୍ଷା

ପୁରୀର କୌଣସି ବିଶେଷତ୍ୱ ଥାଉ ବା ନଥାଉ, ଏହା ସମସ୍ତ ଭାରତରେ ଅଦ୍ୟାପି ସାମ୍ୟମୈତ୍ରୀର କେନ୍ଦ୍ରସ୍ଥଳରୂପେ ବିଦ୍ୟମାନ ରହି କୋଟିକୋଟି ନରନାରୀଙ୍କୁ ନୀରବ ଗମ୍ଭୀର ନାଦରେ ଏକତା ଆଡ଼କୁ ଆମନ୍ତ୍ରଣ କରୁଅଛି । ଯୁଗେ ଯୁଗେ କେତେ କେତେ ପାପୀ, ତାପୀ, ଜ୍ଞାନୀ, ପଣ୍ଡିତ, ସିଦ୍ଧିସାଧକ, ମହାପୁରୁଷମାନେ ଏହାର ପବିତ୍ର ଅଙ୍କରେ ଆଶ୍ରୟ ନେଇ ପରମ ଶାନ୍ତିଲାଭ କରିଅଛନ୍ତି । ଏହିଠାରେ ଓଡ଼ିଆ ମସ୍ତିଷ୍କ ଓ ଓଡ଼ିଆମାନଙ୍କ ସୁରୁଚିବୃତ୍ତିର ପରାକାଷ୍ଠା ପ୍ରକାଶ ପାଇଅଛି; ପ୍ରାଚୀନ ଉତ୍କଳୀୟ ନରପତିମାନେ ଧର୍ମର ଉନ୍ନତି ନିମନ୍ତେ, ଜ୍ଞାନଚର୍ଚ୍ଚା ନିମନ୍ତେ ଏବଂ ପରୋପକାର ନିମନ୍ତେ ବ୍ରହ୍ମୋତ୍ତର, ଦେବୋତ୍ତର ପ୍ରଭୃତି ଲକ୍ଷରାଜ ଦାନ କରି ରାଜୋଚିତ ଅସାଧାରଣ ସ୍ୱାର୍ଥତ୍ୟାଗର ଯେଉଁ ଉଜ୍ଜ୍ୱଳ ଉଦାହରଣ ରଖିଯାଇଅଛନ୍ତି ତାହା ଏ ଜିଲ୍ଲାରେ ଅଦ୍ୟାପି ବହୁଳ ପରିମାଣରେ ଦେଖାଯାଏ । ବିଦ୍ୟାଚର୍ଚ୍ଚା, ଶାସ୍ତ୍ରାଲୋଚନା ଓ ଜ୍ଞାନଗରିମାରେ ପୁନା, ବାରାଣସୀ, ନବଦ୍ୱୀପ ପ୍ରଭୃତି ପ୍ରତିଷ୍ଠିତ ସ୍ଥାନମାନଙ୍କ ସହିତ ପୁରୀ ବହୁକାଳରୁ ପ୍ରତିଯୋଗିତା କରି ଆସିଅଛି ଏବଂ ଆଜି କର୍ପୂର ଉଡ଼ିଯାଇ କେବଳ କନାଖଣ୍ଡ ପଡ଼ିଥିଲେ ସୁଦ୍ଧା ପୂର୍ବ ସୌରଭ-ସ୍ମୃତିରେ ସମ୍ମାନିତ ହେଉଅଛି । ସୁତରାଂ ଶିକ୍ଷାବିଷୟକ କୌଣସି ଜାତୀୟ ଆନ୍ଦୋଳନରେ ପୁରୀର ଯଥେଷ୍ଟ କର୍ତ୍ତବ୍ୟ ଅଛି । ପୁରୀ ଜିଲ୍ଲାରେ ସତ୍ୟବାଦୀ ଗୋଟିଏ ପ୍ରଧାନ କେନ୍ଦ୍ର ସ୍ଥାନ । × × × × × ସୁତରାଂ ଏ ସ୍ଥାନକୁ ଏ ଜିଲ୍ଲାର ଶିକ୍ଷା ବିଷୟକ ଆନ୍ଦୋଳନର ଗୋଟିଏ କେନ୍ଦ୍ର ସ୍ଥାନ କରାଯାଇପାରେ ।" (୭୫)

ଏହି ଶିକ୍ଷା-ଆନ୍ଦୋଳନରେ ପଣ୍ଡିତ ନୀଳକଣ୍ଠ ଥିଲେ ଗୋପବନ୍ଧୁଙ୍କର ଡାହାଣହାତ ସ୍ୱରୂପ । ତାଙ୍କର ଅପୂର୍ବନିଷ୍ଠା, ଚରିତ୍ରବଳ ଓ ଉଜ୍ଜ୍ୱଳ ଆତ୍ମତ୍ୟାଗ ସମଧର୍ମୀ ସହକର୍ମୀ ଏବଂ ବନବିଦ୍ୟାଳୟର ଛାତ୍ରମାନଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରୁଥିଲା । ବନବିଦ୍ୟାଳୟରେ ପିଲାମାନେ ବିଦ୍ୟା ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ନିଜର ଚରିତ୍ର ଗଠନ କରିବେ ଏବଂ ଆଧ୍ୟାତ୍ମିକ ଭାବଧାରାରେ ଆଲୋଡ଼ିତ ହେବେ, ଏହାହିଁ ଥିଲା ଶିକ୍ଷକମାନଙ୍କର ପ୍ରଧାନ ଲକ୍ଷ୍ୟ । ନୀଳକଣ୍ଠଙ୍କ ବିଚାରରେ ଆଧ୍ୟାତ୍ମିକତା କହିଲେ ତାହା ଧର୍ମୀୟଭାବର ସଙ୍କୀର୍ଣ୍ଣ ଗଣ୍ଡି ମଧ୍ୟରେ ଆବଦ୍ଧ ନଥିଲା । ଏହି ଭାଗବତ ପ୍ରୀତିଥିଲା ମାନବସେବା ଓ ବିଶ୍ୱପ୍ରୀତି । 'ନୀଳକଣ୍ଠଙ୍କ ଶିକ୍ଷା ଦର୍ଶନ' ପ୍ରବନ୍ଧରେ ବନବିଦ୍ୟାଳୟ ଛାତ୍ର ଚନ୍ଦ୍ରମଣି ଦାସ କୁଳସମ୍ମେଳନରେ ନୀଳକଣ୍ଠଙ୍କ ଉଦ୍‌ବୋଧନକୁ ଏହିପରି ସ୍ମରଣ କରିଅଛନ୍ତି । —"ବିଧାତାଙ୍କ କରୁଣାରେ ଆମ୍ଭେମାନେ ବୁଦ୍ଧି ଓ ବିଚାର ପାଇଅଛୁ । ତାଙ୍କର ଅନନ୍ତ ଦୟାରେ ବଞ୍ଚି ଅଛୁ । ସେହି ଦୟାରେ ଜଗତ ଅଛି, ଚଳୁଅଛି । ବିଧାତା ସମସ୍ତଙ୍କୁ ଦୟା କରନ୍ତି, ସ୍ନେହ କରନ୍ତି । ଯେଉଁଠାରେ ଦୟା, ସ୍ନେହ, ସତ୍ୟ, ପ୍ରୀତି ଆମ୍ଭେ ଦେଖୁଁ, ତାହା ସେହି ବିଧାତାଙ୍କଠାରୁ

---

୭୫ । ସମାଜ-୮।୧୦।୧୯୨୫ (ଶିକ୍ଷା ଜାତୀୟଚରିତ୍ର ଗଠନର ଭିତ୍ତି)

ଆସିଅଛୁ । ସେଥିପାଇଁ ଆମ୍ଭେ ବିଧାତାଙ୍କୁ କହୁ ବିଶ୍ୱପିତା, ବିଶ୍ୱନିୟନ୍ତା, ବିଶ୍ୱବନ୍ଧୁ ଓ ବିଶ୍ୱରାଟ । ସେହି ଅନନ୍ତ, କରୁଣାମୟ, ପ୍ରୀତିମୟ ବିଧାତା ହିଁ ଶ୍ରେଷ୍ଠ ଆମ୍ଭର ଆଦର୍ଶ । ବିଧାତାଙ୍କ ପ୍ରେମ ଦେଖି ମୁଗ୍ଧ ହୁଅ ଏବଂ ଜୀବନରେ ସେହି ପ୍ରେମର ଯଥାସାଧ୍ୟ ଅନୁସରଣ କର । ମହାପୁରୁଷମାନେ ତାହାହିଁ କରନ୍ତି । ସେମାନେ ଅନନ୍ତ-ପ୍ରେମରେ ଜୀବନ ଫିଟାଇ ରଖିଥିଲେ । ବିଧାତାଙ୍କଠାରୁ ଯାହା ତୁମ୍ଭେ ପାଉଅଛ, ଜଗତ ପାଉଅଛୁ, ତୁମ ଜୀବନରେ ସେହି ଭାବ ବ୍ୟକ୍ତ କର । ପରପାଇଁ ଜୀବନ ଧାରଣ କର । ପରର ଦୁଃଖ ଅନୁଭବ କର । ତୁମର ଆତ୍ମା ପ୍ରସାରିତ ହେଉ । ଜଗତରେ ବିସ୍ତୀର୍ଣ୍ଣ ହେଉ ।" (୬୬) ବନବିଦ୍ୟାଳୟ ସହିତ ଯେଉଁମାନେ ସମ୍ପୃକ୍ତ ଥିଲେ ସେମାନେ ସମସ୍ତରରେ ଛାତ୍ରମାନଙ୍କ ପ୍ରାଣରେ ଏହି ମାନବସେବା, ବିଶ୍ୱମୈତ୍ରୀ ଭାବଧାରାକୁ ଖେଳାଇ ଦେବାକୁ ଉଦ୍ୟମ କରୁଥିଲେ । ସେହି କାରଣରୁ ଉତ୍କଳସମ୍ମିଳନୀ ଅଧିବେଶନଠାରୁ ରଥଯାତ୍ରା ପର୍ଯ୍ୟନ୍ତ ବିଭିନ୍ନ ଅନୁଷ୍ଠାନରେ ବନବିଦ୍ୟାଳୟର ଛାତ୍ର ଓ ଶିକ୍ଷକମାନଙ୍କର ସେବାକାର୍ଯ୍ୟ ଓଡ଼ିଆବାସୀଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିଲା । ଏହି ଭାବନା ଜନମାନସରେ ପ୍ରସାରିତ ହେଉ ଏବଂ ବନବିଦ୍ୟାଳୟ ପରି ଶିକ୍ଷାନୁଷ୍ଠାନ ସାରା ଦେଶରେ ଗଢ଼ିଉଠୁ ଏହାହିଁ ଥିଲା ଏହି ଶିକ୍ଷାଆନ୍ଦୋଳନର ପ୍ରଧାନ ଆଭିମୁଖ୍ୟ । ସତ୍ୟବାଦୀ ବନବିଦ୍ୟାଳୟରେ ୧୯୧୫ ସାଲରେ ପଣ୍ଡିତ ଗୋପବନ୍ଧୁ ସମବେତ ଛାତ୍ରମାନଙ୍କୁ "ଜନସେବାହିଁ ଈଶ୍ୱର ସେବା" ବୋଲି ଯେଉଁ ଅଭିଭାଷଣ ପ୍ରଦାନ କରିଥିଲେ ତାର କିୟଦଂଶ ଏଠାରେ ଉଦ୍ଧାର କରାଯାଇପାରେ । —"ପ୍ରିୟ ଛାତ୍ରଗଣ, ବୃଷ୍ଟିରକ୍ଷ, ମଙ୍ଗଳମୟ ବିଧାତାଙ୍କର ଅପାର କରୁଣାର ଏହି ବିଶ୍ୱରୂପ ଅଗ୍ରେ ହୃଦୟଙ୍ଗମ କରିପାରିଲେ, ତୁମେ ପ୍ରକୃତ ମନୁଷ୍ୟ ହେବ । ତାହା ନହେଲେ ତୁମ୍ଭେ ଜଡ଼ । ଏ ଜଡ଼ତ୍ୱ ଛାଡ଼ି ନିଜ ଭିତରକୁ ଚାହିଁ ସଂସାରକୁ ଦେଖି ଅଗ୍ରେ ସେହି ପ୍ରକୃତ ମନୁଷ୍ୟତା ଲଭିପାରିଲେ ତୁମ୍ଭର ଜୀବନ ଦୟାମୟ ହେବ । ତୁମ୍ଭଙ୍କୁ ଦୟା ଅଭ୍ୟାସରେ ଶିଖିବାକୁ ହେବ ନାହିଁ । ଦୟାମୟଙ୍କର ସେହି ଅନନ୍ତଦୟା ଫଳରେ ଆମ୍ଭେମାନେ ଜୀବନଧାରଣ କରିଅଛୁ । ସେହି କରୁଣାମୟଙ୍କ ବିଚିତ୍ର ବିଧାନରେ ଆମ୍ଭମାନଙ୍କୁ ଅନ୍ୟପ୍ରତି ଦୟା କରିବାକୁ ହେବ । ଯେଉଁ ପରମାତ୍ମା ଚତୁର୍ଦ୍ଦିଗରେ ନ୍ୟାୟ, ପ୍ରେମ ଓ କରୁଣା ରୂପରେ ଏ ସୃଷ୍ଟିକୁ ଆଚ୍ଛାଦନ କରି ରଖିଅଛନ୍ତି, ଆମ୍ଭଙ୍କୁ ଜୀବନ ଦାନ କରୁଅଛନ୍ତି, ଜୀବାତ୍ମାରେ ସେହି ପରମାତ୍ମାଙ୍କୁ ଅନୁଭବ କରିବାକୁ ହେବ । ଯେଉଁ ବିଶ୍ୱମୟ କରୁଣା ହେତୁରୁ ଆମ୍ଭର ଜୀବନ, ସେହି କରୁଣାମଧ୍ୟରୁ ବିଶ୍ୱମୟ ବିସ୍ତୀର୍ଣ୍ଣ କରିବାକୁ ହେବ । ନିଜର ଅଭାବାଦିକୁ ଚାହିଁ ପରପ୍ରତି କର୍ତ୍ତବ୍ୟ ଶିଖିବାକୁ ହେବ । ଯେ ଭିତରକୁ ଦେଖିଅଛୁ, ସେ ସଂସାରକୁ ଦେଖିଅଛୁ । ଆମ୍ଭେମାନେ ଅନ୍ୟର ଦୟାରେ ବଞ୍ଚିଅଛୁ, ଏବଂ

୬୬ । ନୀଳକଣ୍ଠଙ୍କ ଶିକ୍ଷାଦର୍ଶନ-ଚନ୍ଦ୍ରାମଣି ଦାସ—"ସମାଜ"—୫।୧୧।୧୯୬୮

ବାଧ୍ୟହୋଇ ଆମ୍ଭମାନଙ୍କୁ କେତେକ କର୍ତ୍ତବ୍ୟ ଅନ୍ୟପ୍ରତି କରିବାକୁ ହେବ । ଅତଏବ ଜାଣିକରି ସେହି କର୍ତ୍ତବ୍ୟକୁ ଅନୁଭବ କରି ନିଜ ଦୁଃଖକଷ୍ଟରେ ପରର ଦୁଃଖକଷ୍ଟ ତୁଳି ଯେ ଅନ୍ୟପ୍ରତି କର୍ତ୍ତବ୍ୟ ଶିଖିଅଛୁ, ସେହି ଏକା ପ୍ରକୃତ ମନୁଷ୍ୟ । ବିଶ୍ୱନିୟନ୍ତାଙ୍କର ମଙ୍ଗଳମୟ ସୃଷ୍ଟିରେ ସେହି ଏକା ପ୍ରକୃତ ଆତ୍ମଜ୍ଞାନ ପାଇଅଛୁ; ଏବଂ ସେହି ଆତ୍ମଜ୍ଞାନରେ ସେ ଯେଉଁ ବିଶ୍ୱବିଧାତାଙ୍କର କରୁଣାମୟ ମଙ୍ଗଳମୟ ମୂର୍ତ୍ତି ଦେଖିଅଛୁ, ସେଥିରେ ତାହାର ଜୀବନ-ମନ ଧନ୍ୟ ହୋଇଅଛୁ । ଏହିପରି ସଂସାରକୁ ଯେ ଦୟାକରି ଶିଖିଅଛୁ, ଯେ ଏହିପରି ଈଶ୍ୱରଙ୍କର ଦୟାର ମୂର୍ତ୍ତି ଚତୁର୍ଦ୍ଦିଗରେ ଦେଖି ସେହି ଦୟାଧର୍ମରେ ସେହି ଈଶ୍ୱର ଭାବରେ ପ୍ରାଣକୁ ପରିପ୍ଳାବିତ କରିଅଛୁ, ସେହି କେବଳ ପ୍ରକୃତ ଈଶ୍ୱର ସେବା କରି ଶିଖିଅଛୁ । ସେହି କେବଳ ବୁଝିଅଛୁ ଜନସେବାହିଁ ଈଶ୍ୱରସେବା, ଜୀବେଦୟାହିଁ ବିଧାତାଙ୍କର ପୂଜା ।" (୬୭)

ଜାତୀୟଆନ୍ଦୋଳନର ମହାସ୍ରୋତରେ ସତ୍ୟବାଦୀ ବନବିଦ୍ୟାଳୟ ବିଲୀନ ହୋଇଗଲେହେଁ ଓଡ଼ିଶାର ସାଂସ୍କୃତିକ ଆନ୍ଦୋଳନର ଇତିହାସରେ ତାହାର ଅବଦାନ ଅମରାକ୍ଷରେ ଲିପିବଦ୍ଧ ହୋଇ ରହିବ । ପଣ୍ଡିତ ନୀଳକଣ୍ଠଙ୍କ ସାଧନାର ତାହା ଥିଲା ଯଥାର୍ଥ ପ୍ରତିଫଳନ । ଯୁଗଧର୍ମର ପରିବ ନ ସ୍ରୋତରେ ନୀଳକଣ୍ଠଙ୍କ ପରି ତ୍ୟାଗୀ ଓ ଆଦର୍ଶପ୍ରାଣ ଶିକ୍ଷକ ହୁଏତ ଆଉ ଆସିବେ ନାହିଁ, କିନ୍ତୁ ଶିକ୍ଷା-ଆନ୍ଦୋଳନରେ ବନବିଦ୍ୟାଳୟର ଭୂମିକା ସବୁଦିନ ପାଇଁ ଓଡ଼ିଶାର ଜନମାନସରେ ଜୀବନ୍ତ ହୋଇ ରହିଥିବ ।

---

୬୭ । ଜନସେବାହିଁ ଈଶ୍ୱର ସେବା-ଗୋପବନ୍ଧୁ ଦାସ-'ସମାଜ'-୮।୧୦।୧୯୬୫

# ସାମ୍ବାଦିକତା ଓ ସାହିତ୍ୟ-ସେବା

ପରାଧୀନ ଭାରତବର୍ଷରେ ଜନନେତାମାନେ ସାମ୍ବାଦିକତାକୁ ଆଶ୍ରୟ କରି ସ୍ୱାଧୀନତା-ଆନ୍ଦୋଳନ ଏବଂ ନାନା ସଂସ୍କାରମୂଳକ କର୍ମପନ୍ଥା ଗ୍ରହଣ କରିଥିଲେ । ତେଣୁ ଦେଶର ବିଭିନ୍ନ ସ୍ଥାନରେ ବରେଣ୍ୟ ନେତୃବର୍ଗ ବହୁ ପତ୍ରିକା ପ୍ରକାଶ କରିଥିବା ଜଣାଯାଏ । ଊନବିଂଶ ଶତାବ୍ଦୀରେ ଯେତେପ୍ରକାର ଶିକ୍ଷାଗତ, ସାଂସ୍କୃତିକ, ସଂସ୍କାରମୂଳକ ଏବଂ ଧର୍ମଜନିତ ଆନ୍ଦୋଳନ ହୋଇଅଛି ତାହାର ଅନ୍ତରାଳରେ ମଧ୍ୟ ଏକାଧିକ ସାମୟିକ ପତ୍ରିକା ନେତୃତ୍ୱ ଗ୍ରହଣ କରିଥିଲେ । ପଣ୍ଡିତ ଗୋପବନ୍ଧୁ ଓଡ଼ିଶାରେ ଜାତୀୟତା-ଆନ୍ଦୋଳନର ପ୍ରଧାନସେନାପତି ଥିଲେ । ତାଙ୍କର ନେତୃତ୍ୱରେ ଶିକ୍ଷା ଓ ସମାଜସଂସ୍କାର ପାଇଁ ସତ୍ୟବାଦୀରେ ବକୁଳବନରେ ବନବିଦ୍ୟାଳୟ ପ୍ରତିଷ୍ଠା ହେଲା । ଏଠାରେ ଶିକ୍ଷାଦାନ ସଙ୍ଗେ ସଙ୍ଗେ ଚରିତ୍ରଗଠନ ଏବଂ ମାନସିକ ଉନ୍ନତିପାଇଁ ତ୍ୟାଗବୀର ଶିକ୍ଷକମାନେ ଅଧିକ ଧ୍ୟାନ ଦେଉଥିଲେ । ପଣ୍ଡିତ ଗୋପବନ୍ଧୁ ଏହି ଉଦ୍ଦେଶ୍ୟରେ ପ୍ରକାଶ କରିଥିଲେ, "ସତ୍ୟବାଦୀ" ମାସିକ ସାହିତ୍ୟ-ପତ୍ରିକା । ସେ କାଳରେ ବ୍ରଜସୁନ୍ଦର ଦାସଙ୍କ ସମ୍ପାଦିତ 'ମୁକୁର' ଏବଂ ବିଶ୍ୱନାଥ କରଙ୍କ ସମ୍ପାଦିତ "ଉତ୍କଳ ସାହିତ୍ୟ" ଦୁଇଟି ମୁଖ୍ୟ ସାହିତ୍ୟ-ପତ୍ରିକା ପ୍ରକାଶ ପାଉଥାଏ । "ସତ୍ୟବାଦୀ"ର ଏକ୍ଷେତ୍ରରେ ଏକ ସ୍ୱତନ୍ତ୍ର ଭୂମିକା ଥିଲା । ଓଡ଼ିଆ ସାହିତ୍ୟରେ ସେତେବେଳେ ଗଳ୍ପଉପନ୍ୟାସ ସୃଷ୍ଟି ହୋଇ ଲୋକପ୍ରିୟ ହୋଇ ସାରିଥିଲେହେଁ "ସତ୍ୟବାଦୀ" ଗଳ୍ପଉପନ୍ୟାସ ପ୍ରକାଶ ନ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲେ । ସତ୍ୟବାଦୀର ଲେଖକମାନେ ଓଡ଼ିଆ ଗଦ୍ୟ ଓ ଗବେଷଣା-ସାହିତ୍ୟର ଏକ ନୂତନ ଦିଗ୍‌ଦର୍ଶନ ଦେଇଥିଲେ । ଅବଶ୍ୟ ଗଳ୍ପଉପନ୍ୟାସ ପ୍ରକାଶିତ ନ ହେଲେ ପତ୍ରିକା ନୀରସ ବୋଧ ହେବ ଏବଂ ଅଧିକାଂଶ ତାହା ପାଠ କରିବାପାଇଁ ଆଗ୍ରହ ପ୍ରକାଶ କରିବେ ନାହିଁ । ପତ୍ରିକାର ଗ୍ରାହକସଂଖ୍ୟା ମଧ୍ୟ ଅଧିକ ନଥିଲା । ପତ୍ରିକା ପ୍ରକାଶରେ ଲାଭ ହେବାର, ଏପରିକି ସ୍ୱାବଲମ୍ବୀ ହେବାର ସମ୍ଭାବନା ଥିଲା ଅତ୍ୟନ୍ତ କମ୍ । ତାହା ସତ୍ତ୍ୱେ ପତ୍ରିକାର ଗୁରୁଗାମ୍ଭୀର୍ଯ୍ୟ ରକ୍ଷାକରିବା ପାଇଁ ୧୯୧୫ ଖ୍ରୀଷ୍ଟାବ୍ଦ ମାର୍ଚ୍ଚମାସରେ 'ସତ୍ୟବାଦୀ' ପ୍ରକାଶିତ ହେଲା । ଏହାର ସମ୍ପାଦକ ହେଲେ ଗୋପବନ୍ଧୁ ଦାସ । ଆଜିକାଲି ମଧ୍ୟ ସ୍କୁଲକଲେଜରୁ ପତ୍ରିକା ପ୍ରକାଶିତ ହୋଇଥାଏ । ମାତ୍ର 'ସତ୍ୟବାଦୀ' ସତ୍ୟବାଦୀ ବନବିଦ୍ୟାଳୟର ମୁଖପତ୍ର

ହେଲେହେଁ ସେପରି ତୁଳନା ଅସମୀଚୀନ ହେବ । କାରଣ ଏହି ପତ୍ରିକାର ଏକ ଆଦର୍ଶ ଓ ଆଭିମୁଖ୍ୟ ଥିଲା । ମାତ୍ର ଛଅବର୍ଷର ଜୀବନକାଳ ମଧ୍ୟରେ 'ସତ୍ୟବାଦୀ' ପତ୍ରିକାର ଭୂମିକା ଓଡ଼ିଆ ସାହିତ୍ୟରେ ଅନସ୍ୱୀକାର୍ଯ୍ୟ । ଷଷ୍ଠବର୍ଷ ସତ୍ୟବାଦୀରେ ଗଳ୍ପ ଓ ଉପନ୍ୟାସ ପ୍ରକାଶ କରିବେ ବୋଲି ସମ୍ପାଦକ ସମ୍ମତିପ୍ରଦାନ କରିଥିଲେ । ବୋଧହୁଏ ସେ ଭାବିଥିଲେ ଏହାଦ୍ୱାରା ପତ୍ରିକାର ଅଧିକ ପ୍ରସାର ହୋଇପାରିବ । ମାତ୍ର ଓଡ଼ିଆ ଉପନ୍ୟାସର ପିତା ଫକୀରମୋହନ ମଧ୍ୟ ଏହି ପ୍ରସ୍ତାବକୁ ସମର୍ଥନ କରିପାରି ନ ଥିଲେ । ତାଙ୍କର ଆଶଙ୍କା ହୋଇଥିଲା ଯେ ଗଳ୍ପଉପନ୍ୟାସ ପ୍ରକାଶିତ ହେଲେ ଏହାର ବିଶେଷତ୍ୱ ନଷ୍ଟ ହୋଇ ଯିବ ।

ମୋଟଉପରେ ଏହି ପତ୍ରିକାରେ ସତ୍ୟବାଦୀର ପଣ୍ଡିତ-ଶିକ୍ଷକମାନେ ନିୟମିତ ଲେଖାମାଳିକା କରୁଥିଲେ । ବିଶେଷତଃ ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ ଏବଂ ବାସୁଦେବଙ୍କ ପରି ଶିକ୍ଷକମାନଙ୍କ ଗୁରୁଗମ୍ଭୀର ଲେଖାରେ ସତ୍ୟବାଦୀର ପୃଷ୍ଠା ସମୃଦ୍ଧ ହେଉଥିଲା । ଶିକ୍ଷକମାନଙ୍କ ବ୍ୟତୀତ ଜଗବନ୍ଧୁ ସିଂହ, ଗୋପୀନାଥ ନନ୍ଦଶର୍ମା, ଫକୀରମୋହନ ସେନାପତି, ବିରୂପାକ୍ଷ କର, ରୁଦ୍ରନାରାୟଣ ଷଡ଼ଙ୍ଗୀ, ରତ୍ନାକର ପତି ପ୍ରଭୃତିଙ୍କର ଲେଖା ଏହାର କଳେବର ମଣ୍ଡନ କରୁଥିଲା । 'ସତ୍ୟବାଦୀ' ପତ୍ରିକାର ଆଭିମୁଖ୍ୟ ପ୍ରକାଶ କରି ପ୍ରଥମସଂଖ୍ୟାରେ ସମ୍ପାଦକ ଗୋପବନ୍ଧୁ ଘୋଷଣା କରିଥିଲେ—ଓଡ଼ିଆମାନଙ୍କ ଜାତୀୟଜୀବନ ଗଢ଼ିବାକୁ ହେଲେ ଓଡ଼ିଆଭାଷା ମୁଖରେ ବିଶ୍ୱଭାବରାଶିର ପ୍ରକାଶ କରାଇବାକୁ ହେବ । ଭିନ୍ନ ଭିନ୍ନ ଦେଶ ଓ ପ୍ରଦେଶମାନଙ୍କରେ ବିଭିନ୍ନ ସମୟରେ ମାନବଚିନ୍ତା ଯେ ସମସ୍ତ ସତ୍ୟ ଆବିଷ୍କାର କରିଅଛି, ମାନବପ୍ରତିଭା ଯେଉଁ ଶୋଭାପଟଳ ପରିସ୍ଫୁଟ କରିଅଛି, ମାନବପ୍ରଜ୍ଞା ଯେଉଁ ଆଲୋକ ପାଇଅଛି, ମାନବଜୀବନ ଯେଉଁ ଉଚ୍ଚ ଆଦର୍ଶ ଦେଖାଇଅଛି, ସେ ସବୁକୁ ଓଡ଼ିଆ ସାହିତ୍ୟର ସମ୍ପଦୀଭୂତ କରିବାକୁ ହେବ । ଏହି ସତ୍ୟ ଉପଲବ୍‌ଧି ଉଦ୍ଦେଶ୍ୟରେ ମାତୃଭୂମି, ମାତୃଭାଷା ଓ ମାତୃସାହିତ୍ୟର ପ୍ରକୃତ ପରିଚୟ ଲାଭ ନିମନ୍ତେ ସାହିତ୍ୟ-ସାଧକ ସୃଷ୍ଟି କରିବା ଥିଲା 'ସତ୍ୟବାଦୀ'ର ଐକାନ୍ତିକ କାମନା ।

ନୀଳକଣ୍ଠ ଛାତ୍ରଜୀବନରୁ ସାହିତ୍ୟସାଧନା ଆରମ୍ଭ କରିଥିଲେ । 'ମହାତ୍ମା ଚନ୍ଦ୍ରଶେଖର ସିଂହସାମନ୍ତ', ତାଙ୍କର ପ୍ରଥମ ପ୍ରକାଶିତ ଲେଖା । ୧୯୦୫ ଖ୍ରୀଷ୍ଟାବ୍ଦରେ ଏହି ପ୍ରବନ୍ଧଟି ପଠାଣିସାମନ୍ତଙ୍କ ଦଶାହ ଉପଲକ୍ଷେ ପୁରୀ ବ୍ରାହ୍ମଣ-ସମିତିରେ ପାଠ କରାଯାଇଥିଲା ଏବଂ ୧୯୦୭ ସାଲର ଉତ୍କଳ ସାହିତ୍ୟରେ ତାହା ପ୍ରକାଶିତ ହୋଇଥିଲା । ସେହିପରି ୧୯୦୮ ସାଲରେ ନୀଳକଣ୍ଠ "ରାଧାନାଥ ଓ ଉତ୍କଳ ସାହିତ୍ୟ" ପ୍ରବନ୍ଧ ଲେଖି ତାଙ୍କର ମୃତ୍ୟୁଶ୍ରାଦ୍ଧ ଉପଲକ୍ଷେ 'ସେଣ୍ଟ୍ରାଲ ୟଙ୍ଗ ଉତ୍କଳ ଆସୋସିଏନ"ର ଏକ ଅଧିବେଶନରେ ପାଠ କରିଥିଲେ । ପରେ ଏହି ଲେଖାଟି 'ମୁକୁର' ପତ୍ରିକାରେ ପ୍ରକାଶିତ ହୋଇଥିବା ଜଣାଯାଏ । ଅବଶ୍ୟ

ତରୁଣ ନୀଳକଣ୍ଠ ସ୍ୱଭାବତଃ କବି ଥିଲେ ଏବଂ ସେ ଏହି ବୟସରେ କିଛି କିଛି କବିତା ମଧ୍ୟ ରଚନା କରୁଥିଲେ । ତେବେ 'ସତ୍ୟବାଦୀ' ପତ୍ରିକାରେ ତାଙ୍କର ସାହିତ୍ୟସାଧନା ବାରି ହୋଇ ସେହି ସମୟରେ ସେ 'ଉତ୍କଳ ସାହିତ୍ୟ'ରେ ଉଗ୍ର ସଂସ୍କାରମୂଳକ ଲେଖା ପ୍ରକାଶକରି ଓଡ଼ିଶାର ବୁଦ୍ଧିଜୀବୀ ମହଲରେ ଗୃଞ୍ଜନ ସୃଷ୍ଟିକରି ପାରିଥିଲେ । ଆର୍ଯ୍ୟଜୀବନର ବୈଶିଷ୍ଟ୍ୟ ଏବଂ ଭାରତୀୟ ସଂସ୍କୃତି ସମ୍ପର୍କରେ ତାଙ୍କର ବହୁ ଲେଖା 'ସତ୍ୟବାଦୀ'ରେ ଧାରାବାହିକଭାବରେ ପ୍ରକାଶିତ ହେଉଥିଲା । ବିଶେଷତଃ ନୀଳକଣ୍ଠଙ୍କ ଓଡ଼ିଆ ସାହିତ୍ୟର ସମାଲୋଚନା ସମ୍ପର୍କୀୟ ପ୍ରବନ୍ଧଗୁଡ଼ିକରୁ ତାଙ୍କର ପ୍ରତିଭାର ପରିଚୟ ମିଳିଥାଏ । 'ସତ୍ୟବାଦୀ'ର ପ୍ରଥମବର୍ଷର ଚାରିଗୋଟି ସଂଖ୍ୟାରେ ଧାରାବାହିକଭାବରେ ନୀଳକଣ୍ଠ ଲେଖିଥିଲେ "ଫକୀରମୋହନ ଓ ଓଡ଼ିଆ ସାହିତ୍ୟ" ପ୍ରବନ୍ଧ । ଏପରି ମନନଶୀଳ ପ୍ରବନ୍ଧ ସେକାଳରେ ଖୁବ୍ କମ୍ ଦେଖିବାକୁ ମିଳିଥାଏ । ନୀଳକଣ୍ଠଙ୍କ 'ଲାବଣ୍ୟବତୀ' ପ୍ରବନ୍ଧ ସତ୍ୟବାଦୀର ପାଞ୍ଚଗୋଟି ସଂଖ୍ୟାରେ କ୍ରମଶଃ ପ୍ରକାଶିତ ହୋଇଥିଲା । ଉପେନ୍ଦ୍ରଭଞ୍ଜଙ୍କ ପ୍ରଦୀପ୍ତ କାବ୍ୟକ-ପ୍ରତିଭା ମୂଲ୍ୟାୟନରେ ଏହି ପ୍ରବନ୍ଧ ଅଦ୍ୱିତୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ନୀଳକଣ୍ଠଙ୍କ ଗଦ୍ୟଶୈଳୀ ଅନନୁକରଣୀୟ । ଶିକ୍ଷା, ଧର୍ମ, କଳା ଓ ଜାତୀୟତା-ବ୍ୟଞ୍ଜକ ପ୍ରବନ୍ଧଗୁଡ଼ିକରେ ନୀଳକଣ୍ଠଙ୍କ ମୌଳିକ ଚିନ୍ତା, ନିର୍ଭୀକତା ଏବଂ ସଂସ୍କୃତି-ସଚେତନତାର ପ୍ରୟାସ ଦେଖିବାକୁ ମିଳୁଥିଲା । ଗଦ୍ୟଲେଖା ସହିତ 'ସତ୍ୟବାଦୀ'ରେ ନୀଳକଣ୍ଠ ଅନେକ ସମୟରେ କାବ୍ୟ-କବିତା ମଧ୍ୟ ଲେଖୁଥିବାର ଜଣାଯାଏ । 'ଆତ୍ମବାଣୀ', 'ଚଷାପୁଅ ପ୍ରତି', 'ପ୍ରେମିକର ଉଚ୍ଛ୍ୱାସ', 'ପ୍ରାଣର ଧ୍ୱନି' ପ୍ରଭୃତି କବିତା ଏବଂ 'ପ୍ରଣୟିନୀ' କାବ୍ୟ 'ସତ୍ୟବାଦୀ' ପତ୍ରିକାରେ ନୀଳକଣ୍ଠ ପ୍ରକାଶ କରିଥିଲେ । ସେ ମୌଳିକ କବିତା ସହିତ ଅନେକ ସମୟରେ ବିଖ୍ୟାତ ଇଂରେଜ କବିଙ୍କର କବିତାର ଅନୁବାଦ ମଧ୍ୟ କରିଛନ୍ତି । 'ପ୍ରଣୟିନୀ' କାବ୍ୟ, 'ପ୍ରେମିକର ଉଚ୍ଛ୍ୱାସ', 'ପ୍ରାଣର ଧ୍ୱନି' ପ୍ରଭୃତି ଉଦାହରଣ ଛଳରେ ଗ୍ରହଣ କରାଯାଇପାରେ ।

ପଣ୍ଡିତ ଗୋପବନ୍ଧୁଙ୍କ ପ୍ରେରଣାରେ ବନବିଦ୍ୟାଳୟର ପଣ୍ଡିତ-ଶିକ୍ଷକଗଣ ନୀଳକଣ୍ଠଙ୍କ ନେତୃତ୍ୱରେ ଏକ ଜାତୀୟସାହିତ୍ୟର ପ୍ରାଣପ୍ରତିଷ୍ଠା ପାଇଁ ଅହରହ ଉଦ୍ୟମ ଚଳାଇଥିଲେ । ସେଥିପାଇଁ ସତ୍ୟବାଦୀ ବନବିଦ୍ୟାଳୟ ଅଥବା "ସତ୍ୟବାଦୀ" ପତ୍ରିକା ଅକାଳରେ ବିଲୟ ଭଜିଥିଲେ ମଧ୍ୟ ସତ୍ୟବାଦୀର କର୍ମୀଗଣ ଯେଉଁ ସାହିତ୍ୟ ରଚନା କରିଗଲେ ତାହାକୁ ଓଡ଼ିଆ ସାହିତ୍ୟର ଇତିହାସରେ "ସତ୍ୟବାଦୀ ଆନ୍ଦୋଳନ" ବୋଲି ନାମିତ କରାଯାଇଥାଏ । ଗୋପବନ୍ଧୁ ପ୍ରାଣର ବ୍ୟାକୁଳତାରେ ଏହି ଜାତୀୟସାହିତ୍ୟର ସୃଷ୍ଟିପାଇଁ ଆହ୍ୱାନ ଜଣାଇ ସେହିଦିନ ଏକ ଅଗ୍ରଲେଖାରେ ଲେଖିଥିଲେ—

"ଅନ୍ୟାନ୍ୟ ପ୍ରଦେଶର ସାହିତ୍ୟିକ ଆନ୍ଦୋଳନ ସଙ୍ଗେ ଉତ୍କଳସାହିତ୍ୟର ଆଧୁନିକ ଆଲୋଚନା ତୁଳନୀୟ କି ? ଏମନ୍ତ କି ପୂର୍ବେ ଓଡ଼ିଆ ସାହିତ୍ୟର ଯେପରି ପ୍ରଚାର ଓ ପର୍ଯ୍ୟାଲୋଚନା ଥିଲା ଆଜିକାଲି ତାହା ଅଛି କି ? ରାଜନବରଠାରୁ କୃଷକ କୁଟୀର ପର୍ଯ୍ୟନ୍ତ ଆଗେ ସର୍ବତ୍ର ଜାତୀୟସାହିତ୍ୟର ସ୍ରୋତ ବହୁଥିଲା । ଆଜିକାଲି ସାହିତ୍ୟ କେବଳ କେତେକ ଶିକ୍ଷିତଙ୍କ ମଧ୍ୟରେ ସୀମାବଦ୍ଧ । × × × × ଶିକ୍ଷିତମାନଙ୍କ ମଧ୍ୟରେ ସମସ୍ତଙ୍କର ପୁଣି ସାହିତ୍ୟପ୍ରତି ଆଦର ନଥାଏ । ସାହିତ୍ୟପ୍ରତି ଆଦର ଥିବା ବ୍ୟକ୍ତିଙ୍କ ମଧ୍ୟରୁ ଅତି ଅଳ୍ପ ଓଡ଼ିୟା ସାହିତ୍ୟଚର୍ଚ୍ଚା ଏବଂ ଉନ୍ନତିରେ ପ୍ରଯତ୍ନ କରିଥାନ୍ତି । × × × ବାସ୍ତବିକ ଆମ୍ଭମାନଙ୍କର ଆଧୁନିକ ଓଡ଼ିଆ ସାହିତ୍ୟସେବୀମାନଙ୍କ ମଧ୍ୟରୁ କେତେଜଣ ଓଡ଼ିଆଭାଷାର ପ୍ରକୃତ ଶକ୍ତି ଓ ସୌନ୍ଦର୍ଯ୍ୟ ବୁଝନ୍ତି ବା ବୁଝିବାକୁ ଚେଷ୍ଟା କରନ୍ତି । ଜଗନ୍ନାଥ, ବଳରାମ, ଉପେନ୍ଦ୍ର, ଅଭିମନ୍ୟୁ ପ୍ରଭୃତିଙ୍କ ରଚନା ସ୍ଥାନେ ସ୍ଥାନେ ଯେ ଗୋଟିଏ ଗୋଟିଏ ଶବ୍ଦ ବା ପଦ ଦେଖାଯାଏ ତଦ୍ୱାରା ଓଡ଼ିଆ ପ୍ରାଣର ଯେ କେତେ ଭାବ ବ୍ୟକ୍ତ ହୋଇଅଛି, ଓଡ଼ିଆ ପାଠକ ହୃଦୟ ସେଥିରେ ଯେ କିପରି ବିଗଳିତ ଏବଂ ବିମୋହିତ ହୋଇଯାଏ, ନବ୍ୟ ସାହିତ୍ୟିକମାନଙ୍କ ମଧ୍ୟରୁ ଅତି ଅଳ୍ପ ତାହା ଉପଲବ୍ଧି କରିବାର ଅବସର ପାଇଥାନ୍ତି । ନିଜେ କବି ରାଧାନାଥ କହିବାର ଶୁଣାଯାଇଅଛି, କେବଳ ଓଡ଼ିଆଭାଷା ଓ ଓଡ଼ିଆସାହିତ୍ୟ ଆଲୋଚନା କରିବା ଲାଗି ଜଣେ ଲୋକର ଜୀବନକାଳ ଯଥେଷ୍ଟ ନୁହେଁ । ଆମ୍ଭମାନଙ୍କ ସାହିତ୍ୟସମାଜର କେତେଜଣ ଓଡ଼ିଆଭାଷାର ଏ ବିପୁଳ ଶକ୍ତି ଓ ବୈଭବ ଉପଲବ୍ଧି କରନ୍ତି ? ଅଧିକାଂଶର କ୍ୱଚିତ ଇଂରେଜୀ ନ ହେଲେ ବଙ୍ଗଳା ଆଶ୍ରୟ । ଭାଷାନ୍ତରର ସାହାଯ୍ୟ ନିନ୍ଦନୀୟ ନୁହେଁ; ବରଂ ସର୍ବଥା ଗ୍ରହଣୀୟ ଏବଂ ସ୍ପୃହଣୀୟ । କିନ୍ତୁ ଯେଉଁ ମୂଳଦୁଆ ଉପରେ ନୂଆ ଘର ତୋଳିବାକୁ ହେବ, ତାହାର ଅବସ୍ଥା ପରୀକ୍ଷା କରିବା ଏକାନ୍ତ ପ୍ରୟୋଜନ; ଗଢ଼ିବା ଜିନିଷ ମଧ୍ୟରେ ଯେ ମସଲାର ଭାଗ ବେଶୀ ରହିବ ତାହାର ପ୍ରକୃତି ଭଲରୂପେ ଜାଣିବା ଆବଶ୍ୟକ, ପୁଣି ଯେଉଁମାନଙ୍କ ନିମନ୍ତେ ଗଢ଼ିବାକୁ ହେବ ସେମାନଙ୍କର ଆଶା, ଅଭିରୁଚିର ପୂର୍ବାପର ଗତିବିଧି ବୁଝିବା ଉଚିତ । ଏହା ନ କଲେ ଯେତେ ଶକ୍ତିଶାଳୀ ସାହିତ୍ୟିକ ହୁଅନ୍ତୁ ପଛକେ, ସେ କେବେ ଜାତୀୟସାହିତ୍ୟ ଗଢ଼ି ପାରିବେ ନାହିଁ । ଆମ୍ଭମାନଙ୍କର ଆଧୁନିକ ସାହିତ୍ୟ ତେତେ ଲୋକପ୍ରିୟ ନ ହୋଇ ପାରିବାର ଏହା ଅନ୍ୟତମ କାରଣ । (୬୮)

ପଣ୍ଡିତ ନୀଳକଣ୍ଠ ଓ ସତ୍ୟବାଦୀଦଳୀୟ ଲେଖକଗଣ ଏହି ଅଭିମୁଖ୍ୟର ଅନୁରୋଧରେ ଲେଖନୀଚାଳନା କରି ଏକ ସାଂସ୍କୃତିକ ବିପ୍ଳବର ନାୟକ ହୋଇଥିଲେ । ଆଦ୍ୟ ଲେଖକ ଜୀବନରେ ନୀଳକଣ୍ଠ ଥିଲେ ଗ୍ରନ୍ଥପ୍ରାଣ ଆଦର୍ଶ

୬୮ । ସତ୍ୟବାଦୀ—ତୃତୀୟ ଖଣ୍ଡ—ସପ୍ତମ ଓ ଅଷ୍ଟମ ସଂଖ୍ୟା—ପୃ ୨୦୬—୨୦୭

ଶିକ୍ଷକ । ତେଣୁ ତାଙ୍କର ପ୍ରତ୍ୟେକଟି ଲେଖା ସେହି ଗ୍ରନ୍ଥସମାଜର ଉଦ୍ଦେଶ୍ୟକୁ ଚରିତାର୍ଥ କରିବାପାଇଁ ଲେଖାଯାଇଥିଲା । "ଭକ୍ତିଗାଥା"ର ମୁଖବନ୍ଧରେ ନୀଳକଣ୍ଠ ଏହି ଅନୁଭୂତିକୁ ରୂପାୟିତ କରି ଲେଖିଛନ୍ତି "ମୁଁ ସତ୍ୟବାଦୀସ୍କୁଲ ଆରଂଭ କରିବାର ଅଳ୍ପଦିନ ପରେ ସଂଭବତଃ ୧୯୧୨ କିମ୍ବା ୧୯୧୩ ଖ୍ରୀଷ୍ଟାବ୍ଦ ସ୍କୁଲର ଶ୍ରୀପଞ୍ଚମୀ ଉତ୍ସବରେ ଛାତ୍ରମାନଙ୍କର ଆବୃତ୍ତି ନିମନ୍ତେ ଦରକାର ହେବାରୁ 'ଭକ୍ତର ଉଦ୍‌ବୋଧନ' ବୋଲି ଗୋଟିଏ କବିତା ଲେଖିଥିଲି । ତାହା କିଛିଦିନପରେ 'ଉତ୍କଳସାହିତ୍ୟ' ମାସିକପତ୍ରରେ ପ୍ରକାଶିତ ହୋଇଥିଲା ।

ତାହାପରେ ଭିନ୍ନଭିନ୍ନ ସମୟରେ 'ବିଶ୍ୱବାଣୀ' 'ଆତ୍ମବାଣୀ' ଓ 'କାହିଁଅଛ' ଶୀର୍ଷକ କବିତାମାନ 'ସତ୍ୟବାଦୀ' ମାସିକପତ୍ରରେ ପ୍ରକାଶ ପାଇଥିଲା । ଏହି ପୁସ୍ତକରେ ବାହାରିଥିବା ସଙ୍ଗୀତ ଦିଓଟି ମଧ୍ୟ ବିଭିନ୍ନ ଘଟଣା ଉପଲକ୍ଷରେ ରଚିତ ହୋଇଥିଲା । ସେ ଦିଓଟି ମଧ୍ୟ 'ସତ୍ୟବାଦୀ' ତଥା 'ପ୍ରଦୀପ' ମାସିକପତ୍ରରେ ପ୍ରକାଶ ପାଇଥିଲା ।

ଏସବୁ ଏକତ୍ର ପୁସ୍ତକାକାରରେ ଛପାଇବାକୁ କେହି ବନ୍ଧୁ ମୋତେ ଅନୁରୋଧ କରିବାରେ ମୁଁ ଦେଖିଲି 'ଗୀତା' ରେ 'ଆର୍ତ୍ତୋଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀ ଚ ଭରତର୍ଷଭ" ବୋଲି ଯେଉଁ ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀ ଓ ଜ୍ଞାନୀ ଏହି ଚାରି ପ୍ରକାର ଭକ୍ତଙ୍କର ବିଭାଗ ଅଛି, ସେହି ଅନୁକ୍ରମେ ଚାରି ପ୍ରକାର ଭକ୍ତର ବାଣୀ ଯେବେ ଏ ପୁସ୍ତକଟି ପୂର୍ଣ୍ଣ କରି ଯାଇପାରେ । ସେଥିପାଇଁ ପରେ ୧୯୧୮ କିମ୍ବା ୧୯୧୯ ଖ୍ରୀଷ୍ଟାବ୍ଦରେ 'ଭକ୍ତବାଣୀ' କବିତାଟି ଲେଖିଥିଲି । ତାହା କାହିଁରେ ପ୍ରକାଶିତ ହୋଇ ନଥିଲା । ଏବେ ଏହି ପୁସ୍ତକରେ 'ଭକ୍ତର ଉଦ୍‌ବୋଧନ' କୁ ଅର୍ଥାର୍ଥୀର ବାଣୀ ବା 'ଭକ୍ତବାଣୀ' 'କାହିଁଅଛ'କୁ 'ଜିଜ୍ଞାସୁର ବାଣୀ ବା ପ୍ରଶ୍ନବାଣୀ' ନାମ ଦେଇ ପ୍ରକାଶ କରାଗଲା ।

ସତ୍ୟବାଦୀସ୍କୁଲର ଦୈନିକ ଉପାସନା ପାଇଁ କେତେକ ବୈଦିକ ଓ ଶାସ୍ତ୍ରୀୟ ମଂତ୍ରସ୍ତୋତ୍ରମାନ ସଂଗ୍ରହ କରି ଅନୁବାଦ କରିଥିଲି । ସ୍ୱର୍ଗୀୟ ପଣ୍ଡିତ ଗୋପବନ୍ଧୁ ଦାସ ତାହା ଆମୂଳଚୂଳ ଦେଖି ମନୋନୀତ କରିଥିଲେ । ତାହା ପ୍ରଥମେ 'ଉତ୍କଳସାହିତ୍ୟ'ରେ ପ୍ରକାଶିତ ହୋଇ ପରେ 'ଉପାସନା' ନାମକ ଗୋଟିଏ କ୍ଷୁଦ୍ରପୁସ୍ତିକାରୂପେ ବାହାର କରି ଯାଇଥିଲା । ଏବେ ଅନେକେ ତାହାର ପୁନଃ ପ୍ରକାଶ ଲୋଡ଼ିବାରୁ ଏହି ପୁସ୍ତକର ଶେଷରେ ତାହା ଦିଆଯାଇ ସମସ୍ତ ପୁସ୍ତକଟିର ନାମ 'ଭକ୍ତିଗାଥା' ରଖାଯାଇଛି । " (୬୯)

---

୬୯ । ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମଖଣ୍ଡ—୧୯୬୩—ଭକ୍ତିଗାଥା—ମୁଖବନ୍ଧ

ନୀଳକଣ୍ଠ ଗ୍ରନ୍ଥଜୀବନରେ ଯଦିଓ କିଛି ପ୍ରବନ୍ଧ, ମୌଳିକ କବିତା ଓ କାବ୍ୟ ଅନୁବାଦ କରିଥିଲେ, ସତ୍ୟବାଦୀ ବିଦ୍ୟାଳୟର ପ୍ରଧାନଶିକ୍ଷକ ଦାୟିତ୍ୱ ଗ୍ରହଣ କଲାପରେ କର୍ମଜଞ୍ଜାଳରେ ସାହିତ୍ୟଚର୍ଚ୍ଚା ଖୁବ୍ ନିଷ୍ଠାର ସହିତ ହେଉଥିଲେହେଁ ଲେଖାଲେଖି କରିବାପାଇଁ ସେ ସମୟ ପାଉ ନଥିଲେ । ତଥାପି 'ସତ୍ୟବାଦୀ' ମାସିକପତ୍ର ପାଇଁ ତାଙ୍କୁ ଲେଖିବାକୁ ହେଉଥିଲା । ଏଥିରେ 'ଆର୍ଯ୍ୟଜୀବନ' 'ପ୍ରଣୟିନୀ' ଏବଂ ବହୁ ଉଚ୍ଚକୋଟୀର ଆଲୋଚନା ପ୍ରକାଶିତ ହୋଇଥିଲା । ସେ ବି. ଏ. ଶ୍ରେଣୀର ଗ୍ରନ୍ଥଥିବା ସମୟରେ ଇଂରେଜକବି ଟେନିସନଙ୍କର "The Princess" କାବ୍ୟ ପଢିବାର ସୁଯୋଗ ପାଇଥିଲେ । ସେ ପୁସ୍ତକଟିରେ ଇଂରେଜୀ ସାହିତ୍ୟର ଭିକ୍ଟୋରିଆ ଯୁଗର ନାରୀଜାଗରଣ ସମ୍ପର୍କରେ ଅନେକକଥା ଉଲ୍ଲେଖ କରାଯାଇଛି । ତରୁଣ ସଂସ୍କାର-ପ୍ରାଣ ନୀଳକଣ୍ଠଙ୍କୁ ଏହି ସଂସ୍କାର-ଭାବନାଟି ଅଧିକ ଛୁଇଁ ପାରିଲା । ସେ ମଧ୍ୟ ଅନୁଭବ କରୁଥିଲେ ଯେ ଭାରତୀୟ ନାରୀସମାଜରେ ଆନ୍ଦୋଳନ ଆବଶ୍ୟକ । ସେମାନେ ସଚେତନ ନହେଲେ ଏ ସମାଜର ଭବିଷ୍ୟତ ଅନ୍ଧକାରମୟ । ତେଣୁ ସେହି ପ୍ରେରଣାର ଅନୁରୋଧରେ ନୀଳକଣ୍ଠ 'The Princess' କାବ୍ୟକୁ 'ପ୍ରଣୟିନୀ' ନାମଦେଇ ଅନୁବାଦ କରିଦେଲେ । ସେ ଇଂରେଜୀ ବାତାବରଣକୁ ବାଦଦେଇ କାବ୍ୟର ମୂଳକଥାକୁ ଭାରତୀୟ ରୂପ ଦେବାକୁ ଚେଷ୍ଟା କରିଛନ୍ତି । ପ୍ରଣୟିନୀର ପ୍ରଥମ-ସର୍ଗ ପ୍ରକାଶିତ ହୋଇଥିଲା ସତ୍ୟବାଦୀ ମାସିକପତ୍ରର ପଞ୍ଚମଖଣ୍ଡ, ତୃତୀୟ ଓ ଚତୁର୍ଥ ସଂଖ୍ୟାରେ । ଅବଶ୍ୟ ଏହାପରେ ଧାରାବାହିକ ଏ ପତ୍ରିକାରେ ଆତ୍ମପ୍ରକାଶ କରିଥିବା ଜଣାଯାଏ । ନୀଳକଣ୍ଠ ଶିଶୁସାହିତ୍ୟର ଅଭାବ ଉପଲବ୍ଧି କରି ଓଡ଼ିଆରେ ପିଲାମାନଙ୍କପାଇଁ ଲେଖିଥିଲେ ପିଲାଙ୍କ ଭାଗବତ, ପିଲାଙ୍କ ରାମାୟଣ ଏବଂ ପିଲାଙ୍କ ମହାଭାରତ । ସେତେବେଳେ ବଙ୍ଗଳାଭାଷାରେ ଛେଲେଦେର ମହାଭାରତ, ଛେଲେଦେର ରାମାୟଣ, ଛେଲେଦେର ଭାଗବତ ପ୍ରକାଶିତ ହୋଇ ସାରିଥାଏ । ଇଂରେଜୀରେ ମଧ୍ୟ ଏ ସବୁର ଭାଷାନ୍ତର ହୋଇଥାଏ । ନୀଳକଣ୍ଠ ପିଲାଙ୍କ ପାଇଁ ଲେଖିଲାବେଳେ ଏହି ଗ୍ରନ୍ଥଗୁଡ଼ିକର ସାହାଯ୍ୟ ନେଇଥିବା ସ୍ୱାଭାବିକ । ତେବେ ତାଙ୍କର ଏଥିରେ ମୌଳିକ ଦୃଷ୍ଟିଭଙ୍ଗୀର ଯେ ପରିଚୟ ରହିଛି ଏଥିରେ ସନ୍ଦେହର ଅବକାଶ ନାହିଁ । ଖାଣ୍ଟି ଓଡ଼ିଆଭାଷାରେ ଶିଶୁମନୋରଞ୍ଜନ ପାଇଁ ସେ ପ୍ରଥମେ ଏହି ପ୍ରସିଦ୍ଧ ଗ୍ରନ୍ଥଗୁଡ଼ିକର ଗଦ୍ୟଭାଷ ପ୍ରକାଶ କରିଦେଲେ । ଏହି ସମ୍ପର୍କରେ ଲେଖକଙ୍କର ବକ୍ତବ୍ୟ ଉଲ୍ଲେଖନୀୟ । —"ବଙ୍ଗଳା ପୁସ୍ତକର ଅନେକ ବର୍ଣ୍ଣନା ପିଲାମାନଙ୍କପାଇଁ ବୃଥା ଓ ଅଯଥା ବୋଧହେଲା ଏବଂ ରୁଚି-ବିରୁଦ୍ଧ କଥା ନ ଦେବାର ଯତ୍ନରେ ବଙ୍ଗଳାଗ୍ରନ୍ଥକାର ଅନେକ ବିଷୟ ଏକାବେଳକେ ଭିନ୍ନରୂପରେ ପ୍ରକାଶ କରିଛନ୍ତି । ପୁଣି ଇଂରେଜୀ ଗ୍ରନ୍ଥରେ ଅନେକ ଉପଦେଶ ଓ ଉପଦେଶର ବ୍ୟାଖ୍ୟା ଅଛି । ତାହା ପିଲାମାନଙ୍କ ପକ୍ଷରେ ଆଦୌ ଉପଯୋଗୀ ବୋଧହେଲା ନାହିଁ । ପିଲାମାନଙ୍କୁ ଇତିହାସପୁରାଣାଦି କଥା କହିଲା

ବେଳେ କୌଣସିପ୍ରକାର ସାକ୍ଷାତ ଉପଦେଶ ଦ୍ୱାରା ତାଙ୍କ ମନକୁ କୌଣସି ଆଡ଼େ ଟାଣି ଭର୍ତ୍ତିକରିବା ମୋଟେ ଉଚିତ ନୁହେଁ । ଆଉରି ମଧ୍ୟ ଇଂରେଜୀ ଗ୍ରନ୍ଥକାର ମୂଳର ଅନୁକରଣ କରିବାକୁ ଯାଇ ବେଳେବେଳେ ଶିଶୁର ଆକାଂକ୍ଷା ଓ ରୁଚି ପ୍ରତି କମ ଲକ୍ଷ୍ୟ ରଖି ନାହାନ୍ତି । ମୁଁ ଏ ପୁସ୍ତକରେ ଏ ଦୁଇଟିର ମଧ୍ୟ-ପନ୍ଥା ଗ୍ରହଣ କରିଅଛି । ମୁଁ ଦଶବର୍ଷରୁ ଅଧିକକାଳ ଶିଶୁମାନଙ୍କର ଶିକ୍ଷକ ଥାଇ, ଶିଶୁ-ମାନଙ୍କ ପାଇଁ ଯେପରି ଏସବୁ ବିଷୟ ଲେଖାହେବା ଉଚିତ ବୋଲି ବୁଝିଛି, ସେହିପରି ଲେଖିବାକୁ ଚେଷ୍ଟା କରିଛି ।" (୭୦)

ଏହି ବକ୍ତବ୍ୟରୁ ଶିଶୁସାହିତ୍ୟ ରଚନାରେ ନୀଳକଣ୍ଠଙ୍କର ଆନ୍ତରିକତା ଓ ସାଧନା ଲକ୍ଷ୍ୟ କରିଯାଇପାରେ । 'କୋଣାର୍କେ', କାବ୍ୟ ପଣ୍ଡିତ ନୀଳକଣ୍ଠଙ୍କର ମୌଳିକ କାବ୍ୟସୃଷ୍ଟି । ମନେହୁଏ, 'କୋଣାର୍କେ' କାବ୍ୟପାଇଁ ପଣ୍ଡିତ ନୀଳକଣ୍ଠ ଓଡ଼ିଆସାହିତ୍ୟରେ ଅମରତ୍ୱ ଲାଭ କରିଅଛନ୍ତି । ଏହାର ସୃଷ୍ଟିସମ୍ଭାର ଅତୁଳନୀୟ କୋଣାର୍କେ' କାବ୍ୟପରେ କଳିଙ୍ଗବୀର ଖାରବେଳଙ୍କୁ ନାୟକ କରି ସେ ଲେଖିଲେ "ଖାରବେଳ" କାବ୍ୟ । ପୁନଶ୍ଚ ୧୯୨୩ ସାଲରେ ଅସହଯୋଗ ଆନ୍ଦୋଳନରେ ଅଂଶଗ୍ରହଣ କରି ତାଙ୍କୁ କାରାବରଣ କରିବାକୁ ପଡ଼ିଲା । ହଜାରିବାଗ ଜେଲରେ ଟେନିସନଙ୍କ "ଇନକ୍ ଆର୍ଡ଼େନ୍" କାବ୍ୟ ଆଶ୍ରୟରେ ଓଡ଼ିଆରେ ଲେଖିଲେ "ଦାସନାୟକ" ।

୧୯୨୦ ଖ୍ରୀଷ୍ଟାବ୍ଦର ଶେଷଭାଗରେ ପଣ୍ଡିତନୀଳକଣ୍ଠଙ୍କୁ କଲିକତା ବିଶ୍ୱବିଦ୍ୟାଳୟର ସ୍ୱନାମଧନ୍ୟ କୁଳପତି ଆଶୁତୋଷ ମୁଖର୍ଜୀଙ୍କ ନିମନ୍ତ୍ରଣକ୍ରମେ କଲିକତା ବିଶ୍ୱବିଦ୍ୟାଳୟ ଓଡ଼ିଆ ସ୍ନାତକୋତ୍ତର ଶ୍ରେଣୀର ଅଧ୍ୟାପକ ଭାବରେ ଯୋଗ ଦେବାକୁ ପଡ଼ିଥିଲା । ମାତ୍ର ଏହି ପଦରେ ସେ ଅଧିକକାଳ ରହିପାରିଲେ ନାହିଁ । ୧୯୨୧ ଖ୍ରୀଷ୍ଟାବ୍ଦର ପ୍ରଥମଭାଗରେ ଜାତୀୟ କଂଗ୍ରେସର ଆହ୍ୱାନ କ୍ରମେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଗଲା । ଗୋପବନ୍ଧୁଙ୍କ ପ୍ରେରଣାରେ ନୀଳକଣ୍ଠ ସମ୍ବଲପୁର ଜିଲ୍ଲାରେ ଅସହଯୋଗ ଆନ୍ଦୋଳନର ନେତୃତ୍ୱ ଗ୍ରହଣ କଲେ । ପିଲାମାନେ ଶୋଭାଯାତ୍ରା କରି ଗଲାବେଳେ ଜାତୀୟସଙ୍ଗୀତ ବୋଲିବୋଲି ଯାଉଥାନ୍ତି । ନୀଳକଣ୍ଠ ସେତେବେଳେ ପିଲାଙ୍କ ଗାଇବାପାଇଁ ଅନେକ ଗୀତ ଲେଖିଥିଲେ । ସେତେବେଳେ ସମ୍ବଲପୁରରୁ 'ଉତ୍କଳସେବକ' ଏବଂ 'ସାଧନା' ନାମରେ ଦୁଇଟି ସାପ୍ତାହିକ ପତ୍ରିକା ପ୍ରକାଶିତ ହେଉଥାଏ । ଏମାନେ ଜାତୀୟଆନ୍ଦୋଳନର ସମର୍ଥକ ଥାଆନ୍ତି । ତଥାପି ନୀଳକଣ୍ଠ ସମ୍ବଲପୁରର ସହକର୍ମୀମାନଙ୍କ ପରାମର୍ଶରେ 'ସେବା' ନାମକ ଏକ ସାପ୍ତାହିକ ପତ୍ରିକା ସମ୍ପାଦନା କରିଥିଲେ । ପରବର୍ତ୍ତୀ କାଳରେ

୭୦ । ନୀଳକଣ୍ଠ ଗ୍ରନ୍ଥାବଳୀ—ଦ୍ୱିତୀୟଖଣ୍ଡ—୧୯୭୫-ପିଲାଙ୍କ ମହାଭାରତ-ମୁଖବନ୍ଧ

ତାଙ୍କର ଉଦ୍ୟମରେ 'ଲୋକମତ' ମଧ୍ୟ ପ୍ରକାଶିତ ହୋଇଥିଲା । ଏହି ପତ୍ରିକାର ସମ୍ପାଦକ ଥିଲେ ଚନ୍ଦ୍ରମଣି ମିଶ୍ର । କିନ୍ତୁ ନୀଳକଣ୍ଠ ଏହି ପତ୍ରିକାର ମୂଳପିଣ୍ଡ ଥିଲେ କହିଲେ ଚଳେ । ୧୯୩୮ ସାଲଠାରୁ ୧୯୪୧ ସାଲ ପର୍ଯ୍ୟନ୍ତ 'ଲୋକମତ' ହିଁ ନୀଳକଣ୍ଠଙ୍କ ଭାବଧାରାର ବାହକ ଥିଲା ବୋଲି ଜଣାଯାଇଛି । ସେତେବେଳେ ନାନା କାରଣରୁ ତାଙ୍କର କଂଗ୍ରେସ ଅନୁଷ୍ଠାନ ସହିତ ବିରୋଧ ସୃଷ୍ଟି ହୋଇଥିଲା । ତାଙ୍କର ଭାବଧାରାକୁ ଲୋକଙ୍କ ପାଖରେ ପହଞ୍ଚାଇ ଦେବାପାଇଁ ସେ 'ଲୋକମତ' ଜରିଆରେ ଉଦ୍ୟମ କରିଥିଲେ । ଦ୍ଵିତୀୟ ମହାଯୁଦ୍ଧ କାଳରେ ସୁବାସବୋଷଙ୍କ ସମର୍ଥକ ଥାଇ ନୀଳକଣ୍ଠ ଓଡ଼ିଶାରେ ମିଳିତମନ୍ତ୍ରିମଣ୍ଡଳର ନିୟାମକ ହେଲେ । ଏହି ସରକାରଙ୍କ ନୀତିକୁ ବ୍ୟାଖ୍ୟାନ କରିବାପାଇଁ ନୀଳକଣ୍ଠ ପ୍ରକାଶ କଲେ ଦୈନିକ 'ନବଭାରତ' । ସେ ଏହାର ମାଧ୍ୟମରେ ବଳିଷ୍ଠ ଲୋକମତ ଗଠନ କରିବାପାଇଁ ବଦ୍ଧପରିକର ଥିଲେ । ସମ୍ପାଦନାକାର୍ଯ୍ୟରେ ତାଙ୍କର ନିଷ୍ଠା ଲକ୍ଷ୍ୟ କରିବାର କଥା । ସେତେବେଳେ ସେ କେନ୍ଦ୍ର ଆସେମ୍ବ୍ଲିର ସଭ୍ୟଥାଇ ସୁଦ୍ଧା ଦୈନିକ ନବଭାରତର ସମ୍ପାଦନା ପ୍ରତି ତାଙ୍କର ତୀକ୍ଷ୍ଣଦୃଷ୍ଟି ଥିଲା । ଏ ସମ୍ପର୍କରେ ପଣ୍ଡିତ ନୀଳକଣ୍ଠଙ୍କର ସହକାରୀ ଥିବା ଶ୍ରୀରାମଚନ୍ଦ୍ର ଦାସଙ୍କର ( ପରେ ସ୍ଵନାମଧନ୍ୟ ଅଧ୍ୟାପକ ) ବକ୍ତବ୍ୟ ହେଲା—"ଆଉଥରେ ନୀଳକଣ୍ଠ ଅଳ୍ପଦିନପାଇଁ କଟକ ଆସି ପ୍ରମାଣ ପାଇଲେ ଯେ କେତେଜଣ କଂଗ୍ରେସୀଲୋକ ଓଡ଼ିଶାରେ ଧ୍ଵଂସଲୀଳାର ପକ୍ଷପାତିତା କରୁଛନ୍ତି । ରାତି ଦିନଟା ବେଳେ ନିଦରୁ ଉଠି ମୋତେ ଡାକପକାଇଲେ ଏବଂ କହିଲେ "ମୋର ଗୋଟିଏ ଭାବନା ଆସିଛି । କାଗଜ ଧରି ଲେଖି ବସ ।" ସେତେବେଳେ ପୁରୀର ଓକିଲ ଜଗବନ୍ଧୁ ସିଂହ ଓଡ଼ିଶା କଂଗ୍ରେସର ଡ଼ିକ୍ଟେଟର ଥାଆନ୍ତି । ଅଗ୍ରଲେଖାର ଶିରୋନାମା ହେଲା "ଜଗବନ୍ଧୁ ସିଂହେ ଉତ୍ତର ଦିଅନ୍ତୁ ।" ରାତିର ଏପରି ଅଶ୍ଵାଭାବିକ ମୁହୂର୍ତ୍ତରେ ତାଙ୍କର ସାମ୍ବାଦିକତା ପ୍ରତି ଯେଉଁ ନିଷ୍ଠା ପ୍ରକାଶ ପାଉଥିଲା, ତାହା କ୍ଵଚିତ ଦୃଷ୍ଟିଗୋଚର ହୁଏ ।" (୭୧)

ଗୋପବନ୍ଧୁ ଯେଉଁ ସାପ୍ତାହିକ 'ସମାଜ'ର ପ୍ରତିଷ୍ଠା କରିଗଲେ ତାଙ୍କର ମୃତ୍ୟୁପରେ ନୀଳକଣ୍ଠ କିଛିକାଳ ପାଇଁ ତାହାର ସମ୍ପାଦକ ଦାୟିତ୍ଵ ଗ୍ରହଣ କରିଥିଲେ । ମାତ୍ର ସେ ଅଧିକକାଳ ଏହି ପଦରେ ରହିପାରି ନଥିଲେ । "କହିଦିଏଁ—ସେହିଠାରୁ ଗୋପବନ୍ଧୁବାବୁଙ୍କ ମଲାଉତ୍ତାରୁ କେତେଦିନ ମୁଁ ସମାଜର ସମ୍ପାଦକ ରୂପେ ସମାଜପ୍ରେସରୁ ଅତି ରୁଢ଼ଭାବରେ ବାହାର କରି ଦିଆ ହୋଇଥିଲି" ବୋଲି ନୀଳକଣ୍ଠ ତାଙ୍କର ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । "ନବଭାରତପ୍ରେସ ମୋ ଜୀବନରେ ଗୋଟିଏ ପ୍ରଧାନ ଘଟଣା" ବୋଲି ପଣ୍ଡିତ ନୀଳକଣ୍ଠ

---

୭୧ । ପଣ୍ଡିତ ନୀଳକଣ୍ଠଙ୍କ ସାମ୍ବାଦିକତା-ଡଃ ଶ୍ରୀରାମଚନ୍ଦ୍ର ଦାସ-ସମାଜ—୫।୧୧।୧୯୬୮

ଆତ୍ମଚରିତରେ ଲେଖିଛନ୍ତି । ସୁସାହିତ୍ୟିକ ବିକ୍ରମଦେବ (ପରେ ଜୟପୁର ମହାରାଜା) ଏହି ପ୍ରତିଷ୍ଠା ପାଇଁ ନୀଳକଣ୍ଠଙ୍କୁ ଅର୍ଥସାହାଯ୍ୟ କରିଥିଲେ । ଏହିଠାରୁ ୧୯୩୩ ସାଲରେ "ନବଭାରତ" ମାସିକ ସାହିତ୍ୟ-ପତ୍ର ପ୍ରକାଶିତ ହୋଇ ୧୯୪୭ ସାଲ ପର୍ଯ୍ୟନ୍ତ ଚାଲୁଥିଲା ବୋଲି ଆତ୍ମଚରିତରେ କୁହାଯାଇଛି । "ନବଭାରତ" କେବଳ ମାମୁଲି ସାହିତ୍ୟ-ମାସିକ ଥିଲା ବୋଲି କହିବା ଉଚିତ ହେବ ନାହିଁ । ଏହାଥିଲା ଏକ ପବିତ୍ର ସାରସ୍ୱତ ଅନୁଷ୍ଠାନ ଏବଂ "ନବଭାରତ" ସମ୍ପାଦନାରେ ପଣ୍ଡିତ ନୀଳକଣ୍ଠଙ୍କ ବ୍ୟକ୍ତିତ୍ୱ ବାରି ହୋଇ ପଡୁଥିଲା । କାହିଁକି "ନବଭାରତ" ଜନ୍ମ ଗ୍ରହଣ କଲା ସେ ସମ୍ପର୍କରେ ନୀଳକଣ୍ଠ ଏକ ଚମତ୍କାର କଥା କହିଅଛନ୍ତି । —"ସତ୍ୟବାଦୀ ସ୍କୁଲରୁ 'ସତ୍ୟବାଦୀ' ମାସିକ-ପତ୍ରିକା ବାହାରିଥିଲା । ସେଥିରେ ସମସ୍ତ ସମାଲୋଚନା ଓ କେତେକ ଦୀର୍ଘଦୀର୍ଘ ପ୍ରବନ୍ଧ ମୁଁ ଲେଖିଥିଲି । ଅନେକ ବିଷୟରେ ମଧ୍ୟେମଧ୍ୟେ କାଗଜର ସ୍ତମ୍ଭ ପୂରଣ କରିବାପାଇଁ କବିତା ଲେଖୁଥିଲି । ଏହି ମାସିକପତ୍ରରୁ ମୋର କେତେଗୁଡ଼ିଏ ପ୍ରବନ୍ଧ ପରେ ସଂକଳନ ହୋଇ ସମ୍ବଲପୁରରେ ଥିଲାବେଳେ "ଆର୍ଯ୍ୟଜୀବନ" ଗ୍ରନ୍ଥଟି ଲେଖିଥିଲି; କିନ୍ତୁ ବିଶେଷରେ ଯେଉଁଦିନ ଗୋପବନ୍ଧୁବାବୁଙ୍କ ସଙ୍ଗେ ମହାଭାରତ ବିଷୟକ କଥାବାର୍ତ୍ତାରେ ମହାଭାରତରେ କୃଷ୍ଣଙ୍କ କଥା ନଥିଲେ ଚଳିଥାନ୍ତା ବୋଲି କହିଲି ଓ ତା' ପରେ ଗୋପବନ୍ଧୁବାବୁ ଟିକିଏ ବିସ୍ମିତ ହୋଇ ରହିଯାଇ ମତେ କହିଲେ—'ଏପରି କଥା ଆଉ କହିବ ନାଇଁ, ଏଥିରେ ପାପ ହେବ'—ସେହିଦିନଠାରୁ ମୋର ଭକ୍ତିଧର୍ମପ୍ରତି ଆସ୍ଥା ଟିକିଏ କମିଗଲା । ମୁଁ ମନେ ମନେ ଭାବିଲି, କୌଣସିମତେ ଜଗତରେ ଆତ୍ମା ଅନାତ୍ମାଧର୍ମ ପ୍ରଚାର ପାଇଲେ ବ୍ୟକ୍ତିବିଶେଷଙ୍କ ଦ୍ୱାରା ପ୍ରଚାରିତ ଧର୍ମ ଅର୍ଥାତ୍-ଖ୍ରୀଷ୍ଟଧର୍ମ, ବୁଦ୍ଧଧର୍ମ, କୃଷ୍ଣଧର୍ମ ଆଦିରେ ଯଥାର୍ଥ ପ୍ରତିକାର ହୁଅନ୍ତା; କାରଣ ସେଇଦିନ ମୁଁ ଭାବିଲି—କୃଷ୍ଣ, ବୁଦ୍ଧ, ଖ୍ରୀଷ୍ଟ ପ୍ରଭୃତିଙ୍କ ନାମରେ ଧର୍ମ ଠିଆ କଲେ ସେ ଧର୍ମ ସମସ୍ତ ମାନବର ଧର୍ମ କଦାପି ହୋଇ ପାରିବ ନାହିଁ । ସେଥିରେ ଯେଉଁ ଭେଦ ଅଛି, ସେହି ଭେଦହିଁ ସର୍ବଦା ବିକାଶରେ ଫୁଟିବ । ଏହାହିଁ ଭାବି ସେହି ଦିନଠାରୁ ମନେ କଲି ମୁଁ ନିଜେ ଗୋଟିଏ ମାସିକପତ୍ର କାଢ଼ିଲେ ଭଲ ହୁଅନ୍ତା । × × × ସେହି ପତ୍ରଟି ମାସିକ "ନବଭାରତ" । (୭୨)

"ନବଭାରତ" ମାସିକ ଥିଲା ନୀଳକଣ୍ଠଙ୍କ ପାଇଁ ଏକ ମିସନ । ସେ ଏହାର ମାଧ୍ୟମରେ ତାଙ୍କର ବଳିଷ୍ଠ ଓ ବୈପ୍ଳବିକ ଚିନ୍ତାଧାରାକୁ ବୁଦ୍ଧିଜୀବୀମାନଙ୍କ ନିକଟରେ ପହଞ୍ଚାଇ ଦେଉଥିଲେ । ପାରମ୍ପରିକ ଅନ୍ଧବିଶ୍ୱାସ ଓ ବଦ୍ଧମୂଳ ଧାରଣା ବିରୁଦ୍ଧରେ ସେ ଅଜସ୍ର ପ୍ରତିବାଦ କରିଛନ୍ତି ନବଭାରତର ସମ୍ପାଦକୀୟରେ ଏବଂ ବିଭିନ୍ନ ଚିନ୍ତାତ୍ମକ ଲେଖାରେ । ତାଙ୍କର ଜୀବଦ୍ଦଶାରେ "ନବଭାରତ" ମାସିକ ବନ୍ଦ

୭୨ । ନୀଳକଣ୍ଠ ଗ୍ରନ୍ଥାବଳୀ-ଆତ୍ମଜୀବନୀ-ପୃ ୧୦୯

ହୋଇଗଲା । ଏଥିପାଇଁ ତାଙ୍କର ଦୁଃଖର ସୀମା ନଥିଲା । ସେ ନିଜେ ଲେଖିଛନ୍ତି— "ନାନା ଅଭାବ ଅସୁବିଧାରେ ମାସିକ 'ନବଭାରତ' ଶେଷକୁ ବନ୍ଦ ହୋଇଗଲା । ଗଛଟିଏ ଲଗେଇ ବଢ଼େଇବା କେତେ କଷ୍ଟର କଥା । ବଢ଼ିଲା ଗଛରେ କ୍ରେଟ ବସିଲେ ଭାରି କଷ୍ଟ ଲାଗେ । ଭେଣ୍ଡିଆପୁଅ ମରିଗଲେ ଯେତେ କଷ୍ଟ, ତା' ଠାରୁ କୌଣସି ଗୁଣରେ ଏ କଷ୍ଟ କମ୍ ନୁହେଁ । ମୁଁ ଏବେ ବୁଝୁଛି ସାହିତ୍ୟପ୍ରତି ପ୍ରୀତି ଓ ନିଷ୍ଠା ନଥିବା ଲୋକଙ୍କୁ ମୁଁ ଗୁରୁଦାୟିତ୍ୱ ଦେଇଥିଲି । ସରସ ସାହିତ୍ୟିକତା ଅଭାବରୁ ଦାୟିତ୍ୱର ଭାର ଗ୍ରହଣ କରୁଥିବା ବହୁ ଲୋକଙ୍କ ହାତରେ ପତ୍ରପତ୍ରିକାର ଜନ୍ମମୃତ୍ୟୁ ମୁଁ ଏବେ ଦେଖି ଦୁଃଖରେ ଦୀର୍ଘଶ୍ୱାସ ପକାଉଛି ।" (୭୩)

ବାସ୍ତବିକ 'ନବଭାରତ' ଥିଲା ବହୁବର୍ଷଧରି ଓଡ଼ିଶାର ସାରସ୍ୱତ ସାଧନାର ପ୍ରାଣକେନ୍ଦ୍ର । ସାଧକ ନୀଳକଣ୍ଠ ନବଭାରତ ପ୍ରେସ୍‌ରେ ଅଧିଷ୍ଠାନ କରି ସାହିତ୍ୟ, ଶିକ୍ଷା ଓ ସାଂସ୍କୃତିକ କ୍ଷେତ୍ରରେ ଯେଉଁ ନେତୃତ୍ୱ ପ୍ରଦାନ କରିଥିଲେ ତାହାର ତୁଳନା ନାହିଁ । (୭୪)

---

୭୩ । ନୀଳକଣ୍ଠ ଗ୍ରନ୍ଥାବଳୀ-ଆତ୍ମଜୀବନୀ—ପୃ୧୧୦

୭୪ । "ଦୁଇ ଦଶନ୍ଧି ଧରି ସେ ଅନୁଷ୍ଠାନଟି ଗୋଟିଏ ପ୍ରଧାନ ଶିକ୍ଷାକେନ୍ଦ୍ର ରୂପେ କାର୍ଯ୍ୟ କରୁଥିଲା । ସତ୍ୟବାଦୀ ବିହାର ପରି ସେଥିରେ ମଧ୍ୟ ମଣିଷଗଢ଼ା ଚାଲିଥିଲା । ବର୍ତ୍ତମାନ ଯୁଗର ବହୁ ବଡ଼ବଡ଼ ପଣ୍ଡିତ, ଗବେଷକ ଓ ଦେଶସେବୀ ସେଠାରୁ ପ୍ରେରଣା ପାଇଛନ୍ତି । ଓଡ଼ିଶାର ବହୁ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ସେଇଠାରେ ନନାଙ୍କ ପାଖରେ ବସି ସାହିତ୍ୟସାଧନା କରିଥିଲେ ।

ଦେଶର ରାଜନୈତିକ ସ୍ୱାଧୀନତା ସଙ୍ଗେ ସଙ୍ଗେ ଭାରତୀୟ ସଂସ୍କୃତିର ପୁନରୁଦ୍ଧାର ଓ ପ୍ରଚାରର ପ୍ରୟୋଜନୀୟତା ପାଇଁ ସେ ବ୍ୟଗ୍ରତା ପ୍ରକାଶ କରୁଥିଲେ । × × × × ସେହି ପ୍ରେସ ଅନୁଷ୍ଠାନରେ ଗଦା ଗଦା ବହି ଭିତରେ ନନା ନିଜକୁ ବୁଡ଼ାଇ ରଖି ଓଡ଼ିଶାର ଜଗନ୍ନାଥସଂସ୍କୃତିର ବିଶେଷତ୍ୱ ଖୋଜି ଖୋଜି ବାହାର କରିଥିଲେ । ସାହିତ୍ୟ ଓ ସଂସ୍କୃତି, ଭାଷା ଓ ସାହିତ୍ୟ, ଓଡ଼ିଆ ସାହିତ୍ୟର କ୍ରମପରିଣାମ ପ୍ରଭୃତି ନାନା ଚିନ୍ତାଶୀଳ ପୁସ୍ତକ ଓ ଲେଖା ରଚନା କରି ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ସମୃଦ୍ଧ କରିଥିଲେ ।

ବହୁ ବିଶିଷ୍ଟ ସାହିତ୍ୟିକଙ୍କ ଆଲୋଚନା ସଭା-ସେଠାରେ ବସୁଥିଲା । ସେହି ଘରେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାର ବିଚାର, 'ଓଡ଼ିଶା ସାହିତ୍ୟ ଏକାଡ଼େମୀ'ର ପ୍ରଗତିମୂଳକ ଯୋଜନା ପ୍ରଭୃତି ଆରମ୍ଭ ହୋଇଥିଲା । ଏପରି ଗୋଟିଏ ଦିନ ନ ଥିଲା ଯେଉଁଦିନ ପ୍ରେସଟି ସାହିତ୍ୟିକ, ସମାଜସେବୀ ଓ ରାଜନୈତିକ ଅତିଥିଙ୍କ ଦ୍ୱାରା ପୂର୍ଣ୍ଣ ରହି ନ ଥିଲା ।"

("ମୋ ନନାଙ୍କ ଦେଶ—ଡ. ବିକ୍ରମ ଦାସ—୧୯୮୩—ପୃ୨୬୧-୨୬୨)

ବାସ୍ତବିକ ଏ ଯୁଗରେ ନୀଳକଣ୍ଠଙ୍କପରି ଜଣେ ନିଷ୍ଠାପର ସାମ୍ବାଦିକ ଓ ସଂପାଦକ ବିରଳ । ସାହିତ୍ୟପତ୍ର ସମ୍ପାଦନାରେ ସେ ଯେଉଁ ପରମ୍ପରା ଓ ନେତୃତ୍ୱ ସୃଷ୍ଟି କରିଥିଲେ ତାହା ଥିଲା ଦେଶ ଓ ସମାଜ ପକ୍ଷରେ ଅତ୍ୟନ୍ତ ମୂଲ୍ୟବାନ । ଚଳିତ ଶତାବ୍ଦୀରେ ବିଶ୍ୱନାଥ କରଙ୍କ ପରେ ସଂପାଦକ ଭାବରେ ପଣ୍ଡିତ ନୀଳକଣ୍ଠ ହିଁ ଅଧିକ ସ୍ମରଣୀୟ ହୋଇ ରହିବେ ।



# ଶିଶୁରାଇଜର ବିଶ୍ୱକର୍ମା

ଓଡ଼ିଶାରେ ବହୁକାଳ ପର୍ଯ୍ୟନ୍ତ ଶିଶୁସାହିତ୍ୟ କହିଲେ କେବଳ ପାଠ୍ୟ-ପୁସ୍ତକକୁ ବୁଝାଉଥିଲା । ଶିଶୁ ଉପଯୋଗୀ ସ୍ୱତନ୍ତ୍ର ଲେଖା ଯେ ଲେଖାହେବା ଉଚିତ, ଏହି ବିଷୟରେ ବିଶେଷ ଧ୍ୟାନ ଦିଆଯାଇ ପାରି ନଥିଲା । ଫଳରେ ଶିଶୁମାନଙ୍କ ମନଛୁଇଁଲା ଭଲ ସାହିତ୍ୟ ଓଡ଼ିଆ ସାହିତ୍ୟରେ ବିଶେଷ ପ୍ରକାଶିତ ହୋଇ ନ ଥିଲା ।

ଆଦର୍ଶ ଶିକ୍ଷକ ନୀଳକଣ୍ଠ ଏ କ୍ଷେତ୍ରରେ ଥିଲେ ଜଣେ ବିଶିଷ୍ଟ ସାଧକ । ସେ କିପରି ଶିକ୍ଷାଦାନକୁ ଅତ୍ୟନ୍ତ ଆନ୍ତରିକ ଭାବରେ ଜୀବନର ବ୍ରତ ରୂପରେ ଗ୍ରହଣ କରିଥିଲେ ତାହା ପୂର୍ବରୁ ଆଲୋଚିତ ହୋଇଯାଇଅଛି । ଏହି ସମ୍ପର୍କରେ ବହୁ ଉଦାହରଣ ଦିଆଯାଇପାରେ । (୭୫) ନୀଳକଣ୍ଠ କୋମଳମତି ଛାତ୍ରମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବାପାଇଁ କେବଳ ଶ୍ରେଣୀଗୃହରେ ନୁହେଁ, ସ୍କୁଲ ବାହାରେ ମଧ୍ୟ ସାଧନା ଅବ୍ୟାହତ ରଖିଥିଲେ । ସେମାନଙ୍କର ମାନସିକ ବିକାଶ ପାଇଁ ତାଙ୍କର ସର୍ବଦା ସତର୍କ ଦୃଷ୍ଟି ରହିଥିଲା ।

---

୭୫ । "ସେ ଅତ୍ୟନ୍ତ ଗମ୍ଭୀର, ପିଲାମାନେ କିପରି ପାଠ ଗିଳିପକାଇ ଶୁଣିବା ମାତ୍ରେ ଶିଖିବେ, ଶିଖିବାପରେ ମନେ ରଖିବେ, ମନେରଖି ହିଠାତ୍ ପ୍ରାଞ୍ଜଳ ଭାବରେ ଭାବବ୍ୟକ୍ତ କରିବେ, ଏଥିଲାଗି ଭାରି ତତ୍ପର ଥିବାରୁ ବେଳେ ବେଳେ ଅତ୍ୟନ୍ତ ଅସହିଷ୍ଣୁ ହୋଇ ପଡ଼ନ୍ତି । ପ୍ରତ୍ୟେକ ବିଷୟରେ ତାଙ୍କର ଜ୍ଞାନ ଥିଲା । ପଢ଼ାଇବାକୁ ଗଲାବେଳଠାରୁ କ୍ଲାସ ଛାଡ଼ିବାଯାଏ ବହିର ପାଠ ଛଡ଼ା ଅନ୍ୟକିଛି କାର୍ଯ୍ୟ ହୁଏ ନାହିଁ—ବାଜେ ଗଳ୍ପ ପଡ଼େ ନାହିଁ । ମାତ୍ର ଉଦାହରଣ ଛଳରେ ମହାଜନମାନଙ୍କର ଜୀବନଚରିତ ଓ ଉଦ୍‌ବୋଧନମୂଳକ କଥାସବୁ କହୁଥିବାରୁ ଆମ୍ଭେମାନେ ସେହି ସେହି ଜୀବନଚରିତ ଏବଂ ସେହି ସେହି ଉପଦେଶମୂଳକ ପୁସ୍ତକମାନ ପଢ଼ିବାରେ ଆଗ୍ରହାନ୍ୱିତ ହୋଇଥାଉଁ ।"

= ସତ୍ୟବାଦୀରେ ସାତବର୍ଷ—୨ୟ ମୁଦ୍ରଣ—୧୯୬୭-ପୃ୭୮

ନୀଳକଣ୍ଠ ଅନୁଭବ କରିଥିଲେ ଯେ ଏ ଦେଶର ଆଧ୍ୟାତ୍ମିକ ଭାବନା ଏବଂ ସାଂସ୍କୃତିକ ବଗିଚାକୁ ଜାଣିବାକୁ ହେଲେ ଶ୍ରେଷ୍ଠପିଲା ବୟସରୁ ପ୍ରତ୍ୟେକେ ରାମାୟଣ, ମହାଭାରତ ଓ ଭାଗବତ ପାଠକରିବା ଉଚିତ । ମାତ୍ର ସେପରି ସୁଯୋଗ ଆମର ପିଲାମାନଙ୍କର ନଥିଲା । ବଡ଼ମାନେ ତାଳପତ୍ର ଖେଦାରୁ, ଭାଗବତଗାଦିରେ ପୁରାଣ ପଣ୍ଡାଙ୍କଠାରୁ ପୁରାଣ ଶୁଣି ଆସିଥିଲେ । ଅବଶ୍ୟ ସେତେବେଳକୁ ଆମର ପୁରାଣଗୁଡିକ ଛପାବନ୍ଧ ଆକାରରେ ମିଳୁଥାଏ । ମାତ୍ର ଅଧିକାଂଶ ଲୋକ ନିରକ୍ଷର ହୋଇଥିବାରୁ ଛପାବନ୍ଧ ପାଠକରି ପୁରାଣର କାହାଣୀ ଜାଣିବା ସମ୍ଭବ ହେଉ ନଥାଏ । ପୂର୍ବର ଭାଗବତଘର ବିସ୍ମୃତି ଗର୍ଭରେ ଲୋପ ହୋଇଯାଇ ଥାଏ । ଏହି ପରିପ୍ରେକ୍ଷୀରେ ଆଗାମୀ ସମାଜର ଭବିଷ୍ୟତ ଏ ଜାତିର ଶ୍ରେଷ୍ଠପିଲାମାନଙ୍କୁ ଗଠନ କରିବାକୁ ହେବ । ନୀଳକଣ୍ଠ, ଲେଖନୀ ଧାରଣ କଲେ ଏବଂ ଲେଖିଲେ 'ପିଲାଙ୍କ ଭାଗବତ', 'ପିଲାଙ୍କ ରାମାୟଣ' ଏବଂ ପିଲାଙ୍କ 'ମହାଭାରତ' । ପିଲାମାନଙ୍କ ଉଦ୍ଦେଶ୍ୟରେ ବର୍ତ୍ତମାନ ବହୁ ପୁସ୍ତକ ଲେଖାଗଲାଣି । ରାମାୟଣ, ମହାଭାରତ, ହରିବଂଶ ପରି ପୁରାଣ ଗୁଡ଼ିକର ପିଲାଙ୍କ ସଂସ୍କରଣ ବହୁଭାବରେ ବଜାରରେ ମିଳୁଅଛି । ମାତ୍ର ନୀଳକଣ୍ଠଙ୍କ ରଚନାର ସ୍ୱାତନ୍ତ୍ର୍ୟ ଏ କ୍ଷେତ୍ରରେ ବାରି ହୋଇପଡ଼େ ।

ନୀଳକଣ୍ଠ ଏଥିପାଇଁ ଏକପ୍ରକାର ଗବେଷଣା କରିଥିଲେ କହିଲେ ଚଳେ । ସେ ଅନ୍ୟଭାଷାର ଶିଶୁସାହିତ୍ୟର ଆଶ୍ରୟ ଗ୍ରହଣ କରିଥିଲେ ଏବଂ ତହିଁରେ ସେ ଅନ୍ଧାନୁସରଣ କରି ନଥିଲେ । ପିଲାମାନଙ୍କର ମନକୁ ଚହଲିବାପାଇଁ ତାଙ୍କର ଯୋଗ୍ୟତା ଥିଲା ଅପରିସୀମ । କେଉଁ ଭାଷାରେ କେଉଁ କଥାଟି କପରି କହିଦେଲେ ପିଲାଙ୍କ ମନକୁ ଛୁଇଁଯିବ, ତାହା ନୀଳକଣ୍ଠଙ୍କୁ ଭଲଭାବରେ ଜଣାଥିଲା । ତେଣୁ ରାମାୟଣ, ମହାଭାରତ ଏବଂ ଭାଗବତ ରଚନାକାଳରେ ସେ ବଙ୍ଗଳାସାହିତ୍ୟ ଏବଂ ଇଂରେଜୀସାହିତ୍ୟରେ ଲିଖିତ ଗ୍ରନ୍ଥଗୁଡ଼ିକର ସାହାଯ୍ୟ ଗ୍ରହଣ କରିଥିଲେହେଁ ତାଙ୍କର ନିଜସ୍ୱ ଦୃଷ୍ଟିଭଙ୍ଗୀରେ ସ୍ୱାତନ୍ତ୍ର୍ୟ ବାରି ହୋଇ ପଡ଼ୁଥିଲା । 'ମହାଭାରତ'ର ମୁଖବନ୍ଧରେ ନୀଳକଣ୍ଠ ଏ ବିଷୟରେ ସୂଚନା ପ୍ରଦାନ କରିଯାଇଛନ୍ତି । (୭୬)

---

(୭୬) । "ମୁଁ ପିଲାମାନଙ୍କ ପାଇଁ ଏ ପୁସ୍ତକଟି ଲେଖିଛି । ମହାଭାରତ ପୁସ୍ତକ ପିଲାଙ୍କପାଇଁ ଲେଖିବା ବଡ଼ ସହଜ କଥା ନୁହେ । ମୁଁ ଏହି ପୁସ୍ତକ ଲେଖିବା ଲାଗି ପିଲାଙ୍କପାଇଁ ଲେଖା ହୋଇଥିବା ଅନେକ ମହାଭାରତ ଖୋଜି ଦେଖିଥିଲି; କିନ୍ତୁ ଦେଖିଲି, ଅଧିକାଂଶ ପୁସ୍ତକ ମୂଳଗ୍ରନ୍ଥ ଛାଡ଼ି ଇଚ୍ଛା ଅନୁସାରେ ଲେଖା ହୋଇଅଛି । ବଙ୍ଗଳାର 'ଛେଲେଦେର ମହାଭାରତ' ଓ ଇଂରେଜୀରେ "The story of the great war" ଏହି ଦୁଇଖଣ୍ଡି ପୁସ୍ତକ ମୂଳଗ୍ରନ୍ଥ ଧରି ଲେଖା ହୋଇଥିବାର ଦେଖି ସେହି ଦୁଇଗ୍ରନ୍ଥକୁ ଆଦର୍ଶ

ନିମ୍ନରେ ନୀଳକଣ୍ଠଙ୍କର ପରିବେଷଣ ଶୈଳୀର କେତୋଟି ନମୁନା ଦିଆଗଲା—

## କାଳୀୟଦଳନ

"କୃଷ୍ଣ ଦେଖିଲେ, କାଳିନ୍ଦୀର ସେଇ ଜାଗାରେ କାଳୀୟ ବୋଲି ଗୋଟାଏ କାଳସର୍ପ ଥାଏ । ସେ ସାପର ବିଷ ଭାରି ଟାଣ । ଏପରି କି ଚଢ଼େଇମାନେ ଉପରେ ଉଡ଼ି ଗଲାବେଳେ ସେ ବିଷ ଜାଳାରେ ମରି, ପାଣି ଭିତରେ ପଡ଼ି ଯାଆନ୍ତି । କୂଳ ଗଛମାନଙ୍କରେ, ସେ ବିଷପାଣିଫେଣ ଯାଇ ବାଜିବାରୁ ଗଛସବୁ ମରି ଛିଡ଼ା ହୋଇଥାଏ । ଆଉ ଜୀବଜନ୍ତୁ କଥା କହିବା କାହିଁକି ? ଯେ ସେଠାକୁ ଯାଏ, ସେ ଆଉ ବଂଚି ଫେରି ଆସେ ନାହିଁ ।" —(ପିଲାଙ୍କ ଭାଗବତ)

## କୈକେଇ ଓ ମନ୍ଥରା

"କୈକେୟୀ ଏକଥା ଶୁଣି ଭାରି ଖୁସିରେ ଶେଯରୁ ଉଠି କହିଲେ, 'ମନ୍ଥରା, ତତେ କଣ ବଧାଇ ଦେବି ? ରାମ ସିଂହାସନରେ ବସିବାଠାରୁ ବଳି ଭାଗ୍ୟ ମୋର ଆଉ କଣ ହବ ? ଏହା କହି ଆପଣାର ଗୋଟିଏ ଅଳଙ୍କାର କାଢ଼ି ମନ୍ଥରାକୁ ବଧାଇ ଦବାକୁ ବାହାରିଲେ; କହିଲେ 'ରାମ ଜ୍ୟେଷ୍ଠପୁତ୍ର, କୁଳଶ୍ରେଷ୍ଠ ସେ ରାଜା ନ ହୋଇ ଆଉ କିଏ ହବ ? ରାମ ପରି ଆଉ କିଏ ରାଜା ହୋଇ ପାରିବ ?

---

ଧରି ମୁଁ ଏ ପୁସ୍ତକ ଲେଖିଛି । ତେଣୁ ଏହି ଗ୍ରନ୍ଥକାରମାନଙ୍କ ଠାରେ ମୁଁ କୃତଜ୍ଞ ।

ବଙ୍ଗଳା ପୁସ୍ତକର ଅନେକ ବର୍ଣ୍ଣନା ପିଲାମାନଙ୍କ ପାଇଁ ବୃଥା ଓ ଅଯଥା ବୋଧ ହେଲା ଏବଂ ରୁଚିବିରୁଦ୍ଧ କଥା ନ ଦେବାର ଯତ୍ନରେ ବଙ୍ଗଳା ଗ୍ରନ୍ଥକାର ଅନେକ ବିଷୟ ଏକାବେଳକେ ଭିନ୍ନରୂପରେ ପ୍ରକାଶ କରିଛନ୍ତି । ପୁଣି ଇଂରେଜି ଗ୍ରନ୍ଥରେ ଅନେକ ଉପଦେଶ ଓ ଉପଦେଶର ବାଖ୍ୟା ଅଛି । ତାହା ପିଲାମାନଙ୍କ ପକ୍ଷରେ ଆଦୌ ଉପଯୋଗୀ ବୋଧ ହେଲା ନାହିଁ । ପିଲାମାନଙ୍କୁ ଇତିହାସ ପୁରାଣାଦି କଥା କହିଲାବେଳେ କୌଣସିପ୍ରକାର ସାକ୍ଷାତ ଉପଦେଶ ଦ୍ୱାରା ତାଙ୍କ ମନକୁ କୌଣସି ଆଡ଼େ ଟାଣି ଭର୍ତ୍ତି କରିବା ମୋଟେ ଉଚିତ ନୁହେଁ । ଆହୁରି ମଧ୍ୟ ଇଂରେଜି ଗ୍ରନ୍ଥକାର ମୂଳର ଅନୁକରଣ କରିବାକୁ ଯାଇ ବେଳେବେଳେ ଶିଶୁର ଆକାଙ୍‌କ୍ଷା ଓ ରୁଚି ପ୍ରତି ଜମା ଲକ୍ଷ୍ୟ ରଖି ନାହାନ୍ତି । ମୁଁ ଏ ପୁସ୍ତକରେ ଏ ଦୁଇଟିର ପନ୍ଥା ଗ୍ରହଣ କରିଅଛି । ମୁଁ ଦଶବର୍ଷରୁ ଅଧିକକାଳ ଶିଶୁମାନଙ୍କର ଶିକ୍ଷକ ଥାଇ, ଶିଶୁମାନଙ୍କ ପାଇଁ ଯେପରି ଏ ସବୁ ଲେଖା ହେବା ଉଚିତ ବୋଲି ବୁଝିଛି, ସେହିପରି ଲେଖିବାକୁ ଚେଷ୍ଟା କରିଛି ।"

ନୀଳକଣ୍ଠ ଗ୍ରନ୍ଥାବଳୀ-୬ଷ୍ଠ ଖଣ୍ଡ—୧୯୬୫—ପିଲାଙ୍କ ମହାଭାରତ (ବକ୍ତବ୍ୟ)

ମନ୍ଥରା ଅଲଙ୍କାରଟି ଫୋପାଡ଼ି ଦେଇ ବିରକ୍ତ ହୋଇ କହିଲା, 'ଆଲୋ, କେଡ଼େ କାବାଡ଼ି ହେଲୁ ଲୋ ତୁ କୈକେୟୀ ଶତ୍ରୁର ସୁଖ ଦେଖି ତତେ ଖୁସି ଲାଗୁଚି ! ଆଲୋ ଏବେତ କୌଶଲ୍ୟା ରାଜମାତା । ତା ପୁଅ ତ ଆଜି ଯୁବରାଜ ହେଲା; କାଲି ରାଜା ହବ । କୌଶଲ୍ୟାକୁ ତ ତୁ ଖାତର କରୁ ନଥିଲୁ । ସେ ଏବେ ଶିଖାଇବ ଯେ ! ପୋଇଲି ପରି କୌଶଲ୍ୟା ପାଖେ ହାତଯୋଡ଼ି ଠିଆ ନ ହେଲେ, ତୋ ଧନ ସରିବ ନାଇ । ତୋ ପୁଅକୁ ତ ରାମ ଆଉ ରାଜ୍ୟରେ ରଖିବ ନାଇ, ତଡ଼ିଦବ; ନ ହେଲେ ମାରିଦେବ । ଭରତକୁ ତ ରାମର ଡର । ଲକ୍ଷ୍ମଣ ତ ରାମର, ଭରତକୁ ମାରିଦେଲେ ଶତ୍ରୁଘ୍ନ ଆଉ କଣ କରିବ ? ଏ କଥା ଜାଣି ପାରୁନାହୁଁ । ତତେ ଏଥିରେ ଆନନ୍ଦ ଲାଗୁଚି ।" (ପିଲାଙ୍କ ରାମାୟଣ)

## ଧର୍ମବକ କଥା

ଯୁଧିଷ୍ଠିର କହିଲେ, ଆପଣ କଣ ପଚାରୁଛନ୍ତି କହନ୍ତୁ । ଯେତେ ପାରିବ, ଉତ୍ତର ଦେବାକୁ ଚେଷ୍ଟା କରିବ ।

ଯକ୍ଷ ଅନେକ ପ୍ରଶ୍ନ ପଚାରିଲା । ଯୁଧିଷ୍ଠିର ସବୁଗୁଡ଼ିକର ଉତ୍ତର ଦେଲେ । ସେଥିରୁ ଗୋଟିଏଦିଓଟି ମାନ୍ଦ କୁହାଯାଉଚି ।

ଯକ୍ଷ ପଚାରିଲା, 'ପୃଥିବୀଠାରୁ ଭାରି କିଏ ? ସ୍ୱର୍ଗଠାରୁ ଉଚ୍ଚ କିଏ ? ପବନଠାରୁ ବେଗରେ ଯାଏ କିଏ ? ଘାସଠାରୁ ସଂଖ୍ୟା ବେଶୀ କାହାର ?

ଯୁଧିଷ୍ଠିର କହିଲେ, 'ମାତା ପୃଥିବୀଠାରୁ ଭାରି, ପିତା ସ୍ୱର୍ଗଠାରୁ ଉଚ୍ଚ; ମନ ପବନଠାରୁ ବେଗରେ ଯାଏ, ଚିନ୍ତାର ସଂଖ୍ୟା ଘାସଠାରୁ ବେଶି ।'

ଯକ୍ଷ ପଚାରିଲା 'କିଏ ଶୋଇଲେ ଆଖି ବୁଜେ ନାଇ ? କିଏ ଜନ୍ମହୋଇ ହଲ୍ ଚଲ୍ ହଏ ନାଇ ? କାହାର ହୃଦୟ ନାଇ ? କିଏ ଆପଣା ବେଗରେ ବଢ଼ି ହୁଏ ?

ଯୁଧିଷ୍ଠିର କହିଲେ, ମାଛ ଶୋଇଲେ ଆଖି ବୁଜେ ନାଇ, ଡ଼ିମ୍ବ ଜନ୍ମ ହୋଇ ହଲ୍‌ଚଲ୍ ହୁଏ ନାଇ, ପଥରର ହୃଦୟ ନାଇ ନଦୀ ନିଜ ବେଗ ଦ୍ୱାରା ବଢ଼ି ହୁଏ ।'

ଯକ୍ଷ ପଚାରିଲା, 'ସଂବାଦ କଣ ? ପନ୍ଥା କଣ ? ସୁଖୀ କିଏ ?

ଯୁଧିଷ୍ଠିର କହିଲେ, 'ସମୟ ଯେପରିକି ପାଚକ (ରାନ୍ଧୁଣିଆ), ସେପରିକି ପ୍ରାଣୀମାନଙ୍କୁ ଯେନ ବ୍ୟଂଜନ (ତିଅଣ) ରାନ୍ଧୁଅଛି, ଏହାହିଁ ସମ୍ବାଦ । ପ୍ରତିଦିନ ପ୍ରାଣୀ ମରୁଅଛନ୍ତି, ତଥାପି ଯେ ଲୋକେ ଚିରଦିନ ବଂଚିବେ ବୋଲି ବିଚାରନ୍ତି, ଏହାହିଁ ଆଶ୍ଚର୍ଯ୍ୟ । ମହାପୁରୁଷମାନେ (ଶ୍ରେଷ୍ଠ ଲୋକେ) ଯେଉଁ ବାଟେ ଯାନ୍ତି, ତାହାହିଁ ସେହି ସୁଖି (ପିଲାଙ୍କ ମହାଭାରତ) ପନ୍ଥା । ଯାହାର ଋଣ ନାଇ, ଆଉ ଯେ ଆପଣା ଘରେ ରହି ନିତି ସନ୍ଧ୍ୟାବେଳକୁ ମୁଠିଏ ଶାଗଭାତ ଖାଇବାକୁ ପାଏ,

ଏତ ଗଲା ନୀଳକଣ୍ଠଙ୍କର ପୁରାଣକଥା ପିଲାମାନଙ୍କ ପାଇଁ । ସେ ତାଙ୍କ ଉଦ୍ଦେଶ୍ୟରେ କେତେ କବିତା ମଧ୍ୟ ଲେଖିଛନ୍ତି । ତାଙ୍କ ପୂର୍ବରୁ ଭକ୍ତକବି ମଧୁସୂଦନ, ପଲ୍ଲୀକବି ନନ୍ଦକିଶୋର ପିଲାଙ୍କ ପାଇଁ ବହୁତ ଗୀତ ଲେଖିଥିଲେ । ମାତ୍ର ଏ କ୍ଷେତ୍ରରେ ନୀଳକଣ୍ଠଙ୍କ କୃତିତ୍ୱ ମଧ୍ୟ ସୁସ୍ପଷ୍ଟ ।

ନୀଳକଣ୍ଠ ଲେଖିଛନ୍ତି ଅଳ୍ପ । ମାତ୍ର ତାରି ମଧ୍ୟରେ ସେ ପିଲାଙ୍କର ବ୍ୟକ୍ତିତ୍ୱ ଗଢିବା ପାଇଁ ଯତ୍ନ କରିଛନ୍ତି । ପିଲାମାନଙ୍କ ମନରେ ନୂଆ ଧାରଣା, ବିଶ୍ୱାସ ଓ ପ୍ରେରଣା ଜାତ ହେଉ ବୋଲି ଭରସା ରଖିଛନ୍ତି । ଉଦାହରଣ ସ୍ୱରୂପ ଲେଖକଙ୍କର 'ପିଲା ଓ ଚଢ଼େଇ', କବିତାଟି ଗ୍ରହଣ କରାଯାଇପାରେ ।

ପିଲାଟିଏ କେଡ଼େ କୌତୁକରେ ବୁଲୁଥାଏ । ମନ ହଉଥାଏ ଟିକି ଚଢ଼େଇକୁ ଧରି ଖେଳନ୍ତାକି । ସେ ତାକୁ ଆଦର କରି ଡାକିଲା ପାଖରେ ବସିବାପାଇଁ । ଚଢ଼େଇ ପାଇଁ ସେ ସୁନାର ପଞ୍ଜୁରୀ ରଖିଛି । ବେଣ୍ଟପୋଖରୀରୁ ପାଣି ଓ ନଡ଼ିଆରସ ରଖିଛି ଖାଇବାକୁ ଦେବବୋଲି ।

ତାକୁ ପ୍ରଲୋଭନ ଦେଖାଇ ମଧ୍ୟ ପିଲାଟି କହୁଛି ଯେ ଉଡ଼ିଉଡ଼ି ଡେଣାକୁ ବାଧିବଣି । କେବେ କମିତି ଅସାବଧାନ ହେଲେ ଛଞ୍ଚାଣ ମାଡ଼ି ବସିବ । ବର୍ଷା କାଳରେ କାହିଁକି କଲବଲ ହେବୁ । ସୁନାପଞ୍ଜୁରୀରେ ମଉଜରେ ଖାଇପିଇ କାହିଁକି ରହୁନୁ ନାହିଁ ।

ଚଢେଇଟି ପିଲାକୁ ବୁଝାଇ କହୁଛି, ବନସ୍ତରେ ଡାଳକୁ ଡାଳ ଉଡ଼ିବାରେ ଯେଉଁ ଆନନ୍ଦ, ତାହା ସୁନାପଞ୍ଜୁରୀରେ ମିଳିବ କି ? ଗଛରେ କେତେ ପାଚିଲା ଫଳ ଖାଇବାପାଇଁ ଥୁଆ ହୋଇଛି । ପିଇବାକୁ ରହୁଛି ଝରଣାର ପାଣି । ଗଛର ପତ୍ରଗହଳରେ ସେ ଆନନ୍ଦରେ ବିଶ୍ରାମ ନେଇ ପାରୁଛି । ତା ଛଡ଼ା ଜୀବନର ବଡ଼ କଥା ହେଉଛି ସ୍ୱାଧୀନତା । ସଂସାରଯାକର ସମ୍ପତ୍ତି ଠୁଳ କଲେ ମଧ୍ୟ ତାହା ସ୍ୱାଧୀନତା ସହିତ ସମତୁଲ ହେବ ନାହିଁ । ଯେ ପରାଧୀନ ତାର ସବୁବେଳେ ଦୁଃଖ । ପରର ମନଧରି ଚଳିବା ଛଡ଼ା ତାର ଅନ୍ୟ ଗତି ନାହିଁ । ପରର ଅଧୀନ ହୋଇ ତାରି ମନଖୁସୀ କରିବାପାଇଁ ସେ କେବଳ କାମକରି ଚାଲିଥାଏ । ଏପରି ଜୀବନକୁ ଧିକ୍ । ନୀଳକଣ୍ଠ ଚଢ଼େଇମୁହଁରେ କୁହାଇଛନ୍ତି—

"ଡେଣା ପିଟି ଖାଉଛୁ ମୁଁ ଇଚ୍ଛାରେ ଚରି
ଉପାସ ବାଧିବ ନାହିଁ ବନ୍ଧନ ପରି ;
ଗୀତଗାଇ ପୋଷା ହେବା ନୁହେଁ ମୋ କାମ,
ପ୍ରଭୁ ମନ ଯୋଗାଇବା ବଡ଼ ବିଷମ । (୭୭)

---

୭୭ । ପିଲା ଓ ଚଢ଼େଇ-ନୀଳକଣ୍ଠ ଗ୍ରନ୍ଥାବଳୀ-ପ୍ରଥମ ଖଣ୍ଡ—ପୃ ୫୧୪

ନୀଳକଣ୍ଠ ପଲ୍ଲୀଗାଁରେ ବଢ଼ିଥିଲେ । ପଲ୍ଲୀ କୋଳରେ ପିଲାମାନଙ୍କୁ ମଣିଷ କରିଥିଲେ । ପଲ୍ଲୀଜୀବନର ନିତ୍ୟଦିନର ଚିତ୍ର ତାଙ୍କର ପିଲାଙ୍କପାଇଁ କବିତାରେ ପ୍ରତିଫଳିତ । "ଆ ମୋ ପାଠ" କବିତାରେ କବି ଗାଈବାଛୁରିଙ୍କର ଚିତ୍ର ପ୍ରଦାନ କରିଛନ୍ତି । ଗାଈଦୁଧରେ ସବୁ ପିଲାଙ୍କର ମନଥାଏ । ଦୁଧ ଦୁହାଁହବାର ଦୃଶ୍ୟ ସେମାନଙ୍କୁ ଆକର୍ଷଣ କରେ । ମାକୁ ମୁଣ୍ଡରେ ଢିହ ମାରି ମାରି କୁନି ବାଛୁରି ଦୁଧ ପିଉଥାଏ । କେତେ କଉତୁକରେ ଶ୍ରେଷ୍ଠ ପିଲାମାନେ କୁନିବାଛୁରି ସହିତ ଲାଗି ରହି ମଜା କରୁଥାନ୍ତି ।

ସେଇ ପାଠଗାଈ କଅଁଳ ଘାସ ଖାଇ ଗୁହାଳରେ ପଶିଲେ କୁନି ବାଛୁରି ଦୁଧ ପିଇବ ବୋଲି ଅନାଇ ବସିଛି ପରା !

"କୁନି ବାଛୁରି    କରୁଛୁ ଅଳି
ଖାଇବ ଦୁଧ    ମୁଣ୍ଡିଆ ମାରି
ଟେକଦେବ ସେ    ଟିକି ଲାଙ୍ଗୁଡ଼
ମାରିବ ମୂହିଁ    ଚରକୁ ଚର
ଦେଖିବ ମୁଁ ତା ନାଟ ।" (୭୮)

ଆମ ଦେଶର ଅଧିକାଂଶ ଲୋକ ଗାଁରେ । କୃଷି ଆମର ପ୍ରଧାନ ବେଉସା । ଚଷାପୁଅ ଖରାବରଷା, ଜାଡ଼ ନମାନି ଅନବରତ ବିଲରେ ଲାଗିଥାଏ । ସେ ଧାନ ଅମଳ କରେ, କେତେରକମର ପରିବା ଫଳାଏ । ସେଇ ଫସଲ ଉପରେ ତାର ନିର୍ଭର । ବାହାଘର, ବ୍ରତଘର, ମହାଜନଦେଣା, ଖଜଣା, ସେବାବରତନ, ବନ୍ଧୁବେଭାର, ପିଲାଙ୍କର ଲୁଗାପଟା ସବୁ ଖର୍ଚ୍ଚ ସେଇ ଫସଲ ଅମଳରୁ । ଚଷା ସୁଖରେ ରହିଲେ ରାଜ୍ୟର ଲୋକେ ସୁଖରେ ରହିବେ । ଚାଷୀ ଦୁଃଖ ପାଇଲେ ସମାଜର ଦୁର୍ଗତି ବଢ଼ିଯିବ ।

କବି ଲେଖିଛନ୍ତି—

"ଏ ସୁଖ ଭିତରେ ତାକୁ ଦିଅ ନାହିଁ ଶୋଚନା,
ପ୍ରଭୁ କୃପା କଲେ ତାର ନ ରହିବ ଭାବନା ।
ଚଷାର ପରମ ଭାଗ୍ୟ, ନିତି ଲାଗିଥାଏ ସେ,
ଉପୁଜାଏ ଧାନ ସେଥି, ନିଏ କେତେ କିଏ ସେ ।
ତାହାର ବଣ୍ଟାରେ ଭୁଞ୍ଜେ ସୁଖଶାନ୍ତି ଏ ମହୀ,
ତାହାର କରମ ଫଳେ ରାଜ୍ୟଲକ୍ଷ୍ମୀ ହସଇ ।" (୭୯)

---

୭୮ । ଆ ମୋ ପାଠ-ନୀଳକଣ୍ଠ ଗ୍ରନ୍ଥାବଳୀ ପ୍ରଥମ ଖଣ୍ଡ—ପୃ ୫୧୫

୭୯ । ଚଷାର ଭାଗ୍ୟ—ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମ ଖଣ୍ଡ—ପୃ ୫୧୫

କାହାଘରେ ଅବା ହଟିଆ ପରି ପିଲା ନାହାଁନ୍ତି ଯେଉଁମାନେ ବାପା ମା'ଙ୍କ ପାଖରେ ଗେହ୍ଲେଇ ହେବାପାଇଁ ସୁଖପା'ନ୍ତି । ବାପା ଖାଇ ବସିଲାବେଳେ ତାକୁ ନିଶ୍ଚୟ ଖୋଜିବେ ଏବଂ ପାଖରେ ନ ବସାଇଲେ ସେ କେବେହେଲେ ଖାଇବେ ନାହିଁ । ମାତ୍ର ବାପା ଆଉଟିକିଏ ଖୋଜି ଲୋଡ଼ିଲେ ହଟିଆର ସୁଖ । ତେଣୁ ସେ ଛଳନାକରି ଲୁଚି ବସେ । ବାପା ମଧ୍ୟ ତରକି ଯାଇ ହଟିଆ ଶୋଇ ପଡ଼ିଛି ତ ଥାଉ କହିଲା ବେଳକୁ ଆଉ କଣ ହଟିଆ ସମ୍ଭାଳେ । ସେ ଅସମ୍ଭାଳ ହୋଇ ଉଠିଆସେ ବାପାଙ୍କ କୋଳରେ ବସି ଖାଇବାପାଇଁ ।

"ଦୁଲକନ୍ଦି ଏବେ ହଟିଆ ଉଠି
ମା'ଥା ପଛଆଡ଼େ ଠିଆ,
ତାଳି ମାରି ମାରି ଉଠିଲା ହସି
ବୋଇଲା 'ଶୁଅନ୍ତି କିଆଁ ?"
ହସି ହସି ଯାଇ ବାପାଙ୍କ କୋଡ଼େ
ଖାଇବାକୁ ଗଲା ବସି,
'କେଉଁଠି ଥିଲା କି ପୁଅଟି ମୋର ?'
ବାପା ପଚାରିଲେ ହସି ।" (୮୦)

ଶିଶୁର ମନସ୍ତତ୍ତ୍ୱ ପ୍ରକାଶ କରାଯାଇଛି ଶିଶୁମାନଙ୍କର ମୁହଁର ଭାଷାରେ । ପିଲାମାନେ ଏଇ ଗୀତ ପଢ଼ିଲାବେଳେ ମନେ କରିବେ, ସତେ ଯେପରି ସେମାନେ ଏଇ କଥା ଗୁଡ଼ିକ କହି ନିଇଘ ଘରଭିତରେ ଲୀଳାଖେଳା କରୁଛନ୍ତି ।

'ଜୟଭାରତ' ପରି କବିତାରେ ଶିଶୁମନରେ ଭାରତବର୍ଷର ଗୌରବମୟ ଚିତ୍ର ଆଙ୍କି ଦେଇଛନ୍ତି କବି । ଶେଷରେ ମହାତ୍ମାଗାନ୍ଧୀଙ୍କର ସ୍ମୃତି ମନେପକାଇ ଜାତୀୟଭାବନାରେ ଉଦ୍‌ବୁଧ କରିଛନ୍ତି । ସେଇମିତି "ଆମ ଜାତୀୟ ପତାକା" କବିତାରେ ପିଲାମାନଙ୍କ ମନରେ ସେଇ ସ୍ୱାଧୀନତାର ମନ୍ତ୍ର ସଞ୍ଚାର କରି କବି ଗାଇଛନ୍ତି—

"ଏ ବାନା ମହିମା ପବନେ ଖେଳୁଥାଉ ସତତ
ସ୍ୱାଧୀନଭାରତ ସନ୍ତକ ଦେଖୁଥାଉ ଜଗତ ।
ଭାରତର ଶିଶୁ-ଯୁବକ-ବାଳ-ବୃଦ୍ଧ ସକଳେ
ଜୁହାର ହେଉଛୁଁ, ପତାକା, ଖେଳ ତୁହି ସମୀରେ ।
ବରାବର କରୁଥାଆ ତୁ କରୁଅଛୁ ଯେପରି

୮୦ । ହଟିଆ ଲୁଚିବା କଥା—ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମ ଖଣ୍ଡ ପୃ ୫୧୦

ଦେଶ ବିଦେଶରେ ଭାରତଦେଶ ମହତ ଜାଣି ।
ତୁହିରେ ଜାତିର ଜୀବନ ଆମ ପ୍ରାଣ ଦେବତା,
ତୋହର ଲୁହିରେ ଖେଳୁରେ ଆମ ଶୁଭବାରତା ।
ପବନେ ପବନେ ଉଠୁରେ ତୋର କମ୍ପନ ଥର
ସେ କମ୍ପେ ଜଗତେ ଯାଉରେ ଆମ ଜୀବନ ଭର । (୮୧)

ଏ ସଂସାର କେଡ଼େ ସୁନ୍ଦର । ଏଠାରେ ପିଲାମାନେ ହସିଖେଳି ବୁଲନ୍ତି । ଏଠାରେ ପାହାଡ଼ ଜଙ୍ଗଲ ସୁନ୍ଦର । ହ୍ରଦ, ନଦୀ ସୁନ୍ଦର । ବିଭିନ୍ନ ଋତୁର ଲୀଳାଖେଳା ମଧ୍ୟ ଅତ୍ୟନ୍ତ ମନଲୋଭା । ଏହି ସଂସାରରେ ସୁଖରେ ରହିବାପାଇଁ ସେ ପିଲାମାନଙ୍କୁ ଆହ୍ୱାନ କରିଛନ୍ତି । ଏଠାରେ ଉପଭୋଗ କରିବାପାଇଁ ଭଗବାନ ଗୃହିଆଡେ ପ୍ରଚୁର ସମ୍ପଦ ଭରି ଦେଇଛନ୍ତି । ତେଣୁ ପିଲାମାନେ ମନ ବିରାଗ କରିବାର କୌଣସି କାରଣ ନାହିଁ । (୮୨)

"ବୃଦ୍ଧ ଓ ବିଧବା", "ମୋ ଟିକି ଘର", 'ସାପୁଆକେଳା', ମହାତ୍ମାଗାନ୍ଧି, "ଚକାଫଳ ନଖାଉ", "ମୋ ରଜା", "ଭାଗ୍ୟ ନିନ୍ଦି କି ଲାଭ ?", "ଟିକିଭଉଣୀ" "ସିଦ୍ଧାର୍ଥ ଓ ହଂସ" ପ୍ରଭୃତି କବିତାଗୁଡ଼ିକରେ ନୀଳକଣ୍ଠ ଶିଶୁମନଲୋଭା ବହୁ କଥା ଲେଖିଯାଇଛନ୍ତି । "କୋଣାର୍କେ" ଭଳି କାବ୍ୟ ଯେଉଁ ଲେଖକଙ୍କର ଲେଖନୀରୁ ଜନ୍ମ ଗ୍ରହଣ କରିଛି, ସେ ଏପରି ସରଳ ସାବଲୀଳ ଭାଷାରେ କପରି ଯେ କବିତା ଲେଖି ବସିଲେ, ତାହା ପାଠକଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ ।

ନୀଳକଣ୍ଠ ମୌଳିକ କବିତା ଲେଖିବା ସଙ୍ଗେ ସଙ୍ଗେ ପିଲାଙ୍କପାଇଁ ବିଦେଶୀ ସାହିତ୍ୟରୁ ମଧ୍ୟ କେତେକ ଗୀତ ଅନୁବାଦ କରିଛନ୍ତି । ଏହି ଅନୁବାଦ ପାଠ କଲେ ବିଶ୍ୱାସ କରିବାକୁ ଇଚ୍ଛା ହୁଏ ନାହିଁ ଯେ ଏହା ଏକ ବିଦେଶୀ କବିତାର ରୂପାନ୍ତର ମାତ୍ର । ଉଦାହରଣ ସ୍ୱରୂପ "ମାଛି ଓ ବୁଢିଆଣୀ" କବିତାଟି ପାଠ କରାଯାଇପାରେ ।

"ମାଛିଟିଏ ଦେଖି କହିଲା
ବୁଢ଼ିଆଣୀ ବିଚରା
"ଆ ମୋ ଘରକୁ ଦେଖିବୁ
କେଡ଼େ ସଫା ସୁତୁରା ।

୮୧ । ଆମ ଜାତୀୟ ପତାକା—ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମ ଖଣ୍ଡ—ପୃ ୫୧୭
୮୨ । କି ସୁନ୍ଦର ଏ ସଂସାର—ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମ ଖଣ୍ଡ—
ପୃ ୫୧୨-୧୩

ଯେଉଁଥିବ ତଳେ ଉପରେ
ଯେତ୍ସ ପାହାଚ ବାଟେ,
ସଜାଡ଼ ରଖିଛୁ ଆସନ
ଝୀନ ଚକ୍‌କଣ ପାଟେ ।''
ମାଛି କହେ, ''ଯିବ ନାହିଁ ମୁଁ,
କିଆଁ ଡାକୁଛୁ ମୋତେ ?
ତୁମ ଘରେ ପଶି କଏ ସେ
କେବେ ଫେରିଛୁ ସତେ ?''
ଆସ ବାବୁ ବାଧ ଯିବଣି
ଉଡ଼ ଉଡ଼ ଶୂନ୍ୟରେ,
କହେ ବୁଢ଼ିଆଣୀ, ଶୁଣ ହେ,
ଶେଯ ପଡ଼ିଛି ଘରେ ।
× × ×
କହେ ମାଛି, ''ନାହିଁ ନାହିଁ ହେ
ଶୁଣି ଅଛଇ ମୁହିଁ,
ତୁମ ଶେଯେ ଥରେ ଶୋଇଲେ
ଆଉ ଉଠନ୍ତି ନାହିଁ ।'' (୮୩)

ପିଲାଙ୍କ ପାଇଁ ଗୀତ ଲେଖିଲାବେଳେ ନୀଳକଣ୍ଠ ପଲ୍ଲୀକବି ନନ୍ଦକିଶୋରଙ୍କଠାରୁ ପ୍ରେରଣା ପାଇଥିଲେ ବୋଲି ଅନୁଭବ କରାଯାଏ । ଓଡ଼ିଆର ପଲ୍ଲୀଚିତ୍ର ଫକୀରମୋହନ ଏବଂ ନନ୍ଦକିଶୋରଙ୍କ ଲେଖାରେ ଜୀବନ୍ତ ହୋଇ ଉଠିଛି । ସମାଲୋଚକ ନୀଳକଣ୍ଠ, ଫକୀରମୋହନ ଏବଂ ନନ୍ଦକିଶୋରଙ୍କ ସାହିତ୍ୟ ସାଧନା ମଧ୍ୟରେ ଏ ଦେଶର ସମାଜଜୀବନକୁ ଖୋଜି ଲୋଡ଼ିଛନ୍ତି, ବିଦେଶୀ ପାଣିପାଗ ସେମାନଙ୍କୁ କଳୁଷିତ ଅଥବା ବିଭ୍ରାନ୍ତ କରିପାରିନାହିଁ । ନୀଳକଣ୍ଠଙ୍କର ''ମୋ ରଜା'' କବିତାରେ ଏହି ଭାବନାର ପ୍ରାଣସ୍ପନ୍ଦନ ପାଠକର ମନରେ ଗଭୀର ରେଖାପାତ କରିଥାଏ ।

''ମେଘ ବରଷିଲା ଟପର ଟପର
କେଉଁରୁ ମାଇଲା ଗଜା
କେଉଁ ରାଇଜରୁ ଅଇଲେ ମୋ ରଜା
ତେଲିଙ୍ଗି ବାଇଦ ବଜା,

୮୩ । ମାଛି ଓ ବୁଢ଼ୀଆଣୀ—ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମ ଖଣ୍ଡ—ପୃ ୫୦୮—୫୦୯ । ଏହି କବିତାଟି Mary Hermit ଙ୍କ 'The Spider and the Bee' କବିତାର ଅନୁବାଦ ।

ବଜାରେ ଢୋଲିଆ ବଜା
ହ୍ୱାଣ୍ଡି ପରମାଣେ କଉଡ଼ି ଦେବି ମୁଁ
ତେଲିଙ୍ଗି ବାଇଦ ବଜା ।

( ୨ )

ଅଶିଣ ପବନ କାହାଳୀ ବାଜିଲା
କଂସାଗିନା ହେଲା ମଜା
ନାହାକ ଡକାଇ ଧନ ବୁଝାଇଲେ
ଯୁଦ୍ଧ କରି ଯିବେ ରଜା
ଆଜ ତୁ ବାଇଦ ବଜା
କ୍ଷୀରି ପିଠା ଦେବି ଖାଇବୁ ଯେବେ ତୁ
ତେଲିଙ୍ଗି ବାଇଦ ବଜା ।" (୮୪)

ନୀଳକଣ୍ଠଙ୍କ ପରି ପଣ୍ଡିତକବି ଶିଶୁ-ଉପଯୋଗୀ କବିତା ଲେଖିଲାବେଳେ ନିଜକୁ ଶିଶୁମାନଙ୍କର ଅତି ଆପଣାର କରି ବିଚାରିଛନ୍ତି । ତାଙ୍କର ନିକଟରେ ବସି ତାଙ୍କର ମୁହଁର ଭାଷା ଗୁଡ଼ାଇ ଆଣି ଏତେ ସୁନ୍ଦର କାବ୍ୟିକ ରୂପ ଦେଇଛନ୍ତି କବିତା ମାଧ୍ୟମରେ । ସେ କେଉଁଠାରେ ତତ୍ତ୍ୱ ବଖାଣି ନାହାଁନ୍ତି । ସୁନ୍ଦର ଗଳ୍ପ ଛଳରେ ଶିଶୁର ମନ ଭୁଲାଇ ତାର ମନ-ଉପବନରେ ରୋପି ଦେଇଛନ୍ତି ଅମୂଲ୍ୟ ଭାବନାର ବୀଜଗୁଡ଼ିଏ । ତେଣୁ ଏ କବିତାଗୁଡ଼ିକ ଏତେ ସାର୍ଥକ ହୋଇଅଛି । (୮୫)



୮୪ । ମୋ ରଜା—ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମ ଖଣ୍ଡ—ପୃ ୫୦୬

୮୫ । "ମୁହିଁ ଯେବେ ଶିଶୁ ଥିଲଇ, ମନେ ପଡ଼ୁଛି ମୋର
ବସି ଶିଶୁମେଳେ ଦେଖନ୍ତି ଏ ବିଭବ ଭୂଚର ।" (କୋଣାର୍କେ)

# କାବ୍ୟିକ ପ୍ରତିଭାର ଆଦ୍ୟ ସୌରଭ

ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ରାଧାନାଥଙ୍କ ପ୍ରଭାବ ଥାଏ ଅପ୍ରତିହତ ଓଡ଼ିଆ ସାହିତ୍ୟରେ । ପିଲାମାନେ ସ୍କୁଲମାନଙ୍କରେ ମଧୁସୂଦନରାଓଙ୍କର ଲେଖାମାନ ପଢ଼ୁଥାଆନ୍ତି । ଓଡ଼ିଶା ବୋଲି ପ୍ରଦେଶଟିଏ ନଥାଏ । ଓଡ଼ିଆପିଲାମାନେ ଅତ୍ୟନ୍ତ ହୀନମାନହୋଇ କଲିକତାରେ ଉଚ୍ଚଶିକ୍ଷା ପାଇଁ କେହି କେହି ଯାଉଥାଆନ୍ତି । ସେଠାରେ ଓଡ଼ିଆଭାଷାର ଗୌରବ ସ୍ୱୀକାର କରିବାପାଇଁ କେହି ନଥାନ୍ତି । ଉତ୍କଳସମ୍ମିଳନୀ ପ୍ରତିଷ୍ଠାହୋଇ ଓଡ଼ିଆମାନଙ୍କ ମଧ୍ୟରେ ଜାତୀୟ-ଜାଗରଣ ସୃଷ୍ଟି କରିବାପାଇଁ ଉଦ୍ୟମ ହେଉଥାଏ । ଜାତିର ପ୍ରାଣରେ ଗଭୀର ଆତ୍ମବିଶ୍ୱାସର ଅଭାବ ରହିଥାଏ । ଯେଉଁ କେତେଜଣ ଓଡ଼ିଆସାହିତ୍ୟର ଉନ୍ନତି ପାଇଁ ଲେଖନୀଧାରଣ କରିଥାନ୍ତି, ସେମାନଙ୍କ ରଚନାରେ ବିଦେଶୀ ସାହିତ୍ୟର ପ୍ରଭାବ ବେଶ୍ ଅନୁଭୂତ ହେଉଥାଏ । ତହିଁରେ ଓଡ଼ିଆ ଭାଷା ଓ ସଂସ୍କୃତିର ମୌଳିକତା ଫୁଟି ଦିଶୁ ନଥାଏ । ସତ୍ୟବାଦୀ ଜାତୀୟବିଦ୍ୟାଳୟର କର୍ମୀ ଓ ସାଧକଗଣ ଏହି ଅଭାବ ମନେ ମନେ ଅନୁଭବ କରୁଥିଲେ ଏବଂ ଇଚ୍ଛା କରୁଥିଲେ କିପରି ଏକ ଯଥାର୍ଥ ସାହିତ୍ୟ ସାଧନାର ପରିବେଶ ସୃଷ୍ଟି ହେଉ । (୮୬)

---

୮୬ । "ଏଠାରେ କହିଦିଏ ସତ୍ୟବାଦୀ ସ୍କୁଲକୁ ମୁଁ ଆସିବାର ୩ୟ ବର୍ଷ ସ୍ୱର୍ଗତ ଗୋଦାବରୀଶ ଓ ୪ର୍ଥ ବର୍ଷ ଆସିଥିଲେ ସ୍ୱର୍ଗତ କୃପାସିନ୍ଧୁ । ତା'ପରେ ଆରମ୍ଭ ହୋଇଥିଲା 'ସତ୍ୟବାଦୀ' ମାସିକ ପତ୍ର । **ଏ ସବୁର ମୂଳରେ ଗୋଟିଏ ସ୍ପଷ୍ଟ ଉଦ୍ଦେଶ୍ୟ ଓ ଆଦର୍ଶ ଥିଲା ତା' ହେଉଛି, ଓଡ଼ିଆରେ ଯଥାର୍ଥ ସାହିତ୍ୟର ସ୍ତର ଫିଟାଇବା ।**

ସେ କାଳର ମଧୁ-ରାଧାନାଥୀ ସାହିତ୍ୟରେ ଆମ୍ଭେମାନେ ବଡ଼ ବିମନା ଥିଲୁ । ମୁଁ ଜାଣିଥିଲି, ରାଧାନାଥ ବଙ୍ଗଳାରେ ଲେଖି, ସେଠାରେ ପ୍ରତିପତ୍ତି ନପାଇ ଓଡ଼ିଆ ସାହିତ୍ୟକୁ ନିଜ ଶିକ୍ଷାବିଭାଗ କର୍ତ୍ତୃତ୍ୱର ଅନ୍ୟ ଉପଜୀବ୍ୟ କରିଥିଲେ । ଅବଶ୍ୟ କିଛିଦିନ ପରେ ଅନୁସନ୍ଧାନ କରୁ କରୁ ଜାଣିଥିଲି, ସେ ରୋମାନ କବି ଓଭିଡ଼ଂ (Ovid) କର ଗ୍ରୀକ୍‌ସାହିତ୍ୟପ୍ରଭାବିତ ପ୍ରକାଣ୍ଡ କାମକଳାର କାହାଣୀସବୁ ଓଡ଼ିଅରେ ଜାତୀୟ ତଥା

ନୀଳକଣ୍ଠ ଥିଲେ ପ୍ରଥମରୁ ବିପ୍ଳବୀ ଏବଂ ସଂସ୍କାରବାଦୀ । ସେ ଅସାମାନ୍ୟ କବି ପ୍ରତିଭା ଗ୍ରହଣ କରି ଜନ୍ମ ହୋଇଥିଲେହେଁ ପ୍ରଥମକାଳରେ ସାହିତ୍ୟସାଧନା ଆରମ୍ଭ ହୋଇଥିଲା ଗଦ୍ୟଲେଖା ମାଧ୍ୟମରେ । ଏହି ଗଦ୍ୟଲେଖାଗୁଡ଼ିକର ଉଦ୍ଦେଶ୍ୟ ଥିଲା ସଂସ୍କାରପ୍ରାଣତା । ନୀଳକଣ୍ଠଙ୍କ ପ୍ରଥମ ପ୍ରକାଶିତ ଗଦ୍ୟଲେଖା 'ମହାତ୍ମା ଚନ୍ଦ୍ରଶେଖର ସିଂହସାମନ୍ତ' । ଏହାର ରଚନାକାଳ ୧୯୦୫ ଖ୍ରୀଷ୍ଟାବ୍ଦ । ସାମନ୍ତଙ୍କ ଦଶାହ ଉପଲକ୍ଷେ ଏହି ପ୍ରବନ୍ଧଟି ପୁରୀ ବ୍ରାହ୍ମଣସମିତିରେ ପାଠ କରାଯାଇଥିଲା ସ୍ମୃତିତର୍ପଣ କରିବାପାଇଁ । ପରେ ୧୯୦୭ ସାଲ 'ଉତ୍କଳସାହିତ୍ୟ'ରେ ଏହି ପ୍ରବନ୍ଧଟି ପ୍ରକାଶିତ ହୋଇଥିଲା । ୧୯୦୮ ସାଲରେ ରାଧାନାଥ ମୃତ୍ୟୁବରଣ କଲେ । ତାଙ୍କ ସ୍ମୃତିଅର୍ଘ୍ୟ ଅର୍ପଣ କରି ନୀଳକଣ୍ଠ ଲେଖିଲେ "ରାଧାନାଥ ଓ ଉତ୍କଳ ସାହିତ୍ୟ ।" ଏହି ପ୍ରବନ୍ଧଟି 'ମୁକୁର' ପତ୍ରିକାରେ ସ୍ଥାନ ଲାଭ କରିଥିଲା । ସତ୍ୟବାଦୀ ଜାତୀୟବିଦ୍ୟାଳୟର ମୁଖପତ୍ର "ସତ୍ୟବାଦୀ" ପତ୍ରିକାରେ ୧୯୧୫ ଖ୍ରୀଷ୍ଟାବ୍ଦରେ ଧାରାବାହିକ ଭାବରେ ଚାରିଗୋଟି ସଂଖ୍ୟାରେ ନୀଳକଣ୍ଠ ଲେଖିଲେ "ଫକୀରମୋହନ ଓ ଓଡ଼ିଆ ଉପନ୍ୟାସ ।" ସେହି ସତ୍ୟବାଦୀ ପତ୍ରିକାରେ ଲାବଣ୍ୟବତୀ ସମାଲୋଚନା ମଧ୍ୟ ନୀଳକଣ୍ଠଙ୍କର ଆଉ ଏକ ଉଲ୍ଲେଖଯୋଗ୍ୟ ପ୍ରବନ୍ଧ ।

ପ୍ରାଥମିକ ଅବସ୍ଥାରେ ଏଇ କେତେଗୋଟି ପ୍ରବନ୍ଧରେ ନୀଳକଣ୍ଠଙ୍କର ବିଚାର-ବିଶ୍ଳେଷଣ, ସମାଲୋଚନା-ପ୍ରବୃତ୍ତି ଏବଂ ପ୍ରସଙ୍ଗ-ଅନୁଶୀଳନରେ ମୌଳିକତା ଲକ୍ଷ୍ୟ କରାଯାଇଥାଏ । ଯେତେବେଳେ 'ସତ୍ୟବାଦୀ' ସ୍କୁଲକୁ କେନ୍ଦ୍ରକରି

---

ଐତିହାସିକ ସାହିତ୍ୟ ରୂପେ ପ୍ରଚାର କରିଥିଲେ ଓ ସେଥିରେ ବିଶେଷରେ ନଜେ ଶିକ୍ଷା ବିଭାଗର କର୍ତ୍ତା ଥିବାରୁ ଦେଶଟାକୁ ମୁହ୍ୟମାନ କରି ରଖିଥିଲେ । × ×

ତା ପରେ ମଧୁବାବୁଙ୍କ କଥା । ମଧୁବାବୁଙ୍କର କବିତାଗୁଡ଼ିକ କେତେ ନିଜର ତାହା କହିବା ଦୁଃସାଧ୍ୟ । ସେ କାଳର ବ୍ରାହ୍ମମାନଙ୍କର ବହୁତ ଏପରି କବିତା, କ୍ଷୁଦ୍ର ମାସିକ ତଥା ସାମୟିକ ପତ୍ରପତ୍ରିକାରେ ପ୍ରକାଶ ପାଉଥିଲା । 'ଆକାଶପ୍ରତି' ଓ 'ଜୀବନଚିନ୍ତା' ଭଳି କବିତାମାନ ସେ କାଳି ବଙ୍ଗଳାରେ ଦେଖିଥିବା ମୋ ମନେ ହେଉଛି । ସେ ସବୁରେ ବ୍ରାହ୍ମଭାବ ଓ ଭାଷା ଓଡ଼ିଶାରେ ପୂରାଇବାର ଖୁବ୍ ଉଦ୍ୟମ କରାଯାଉଥିଲା । ତାଙ୍କ ଗଦ୍ୟରେ ମଧ୍ୟ ବିଶୁଦ୍ଧତା ବୋଲି ଯାହା ପଶିଚ, ତାହା ମନୁଷ୍ୟର ଗଦ୍ୟଭାଷା ପକ୍ଷରେ ହୁଏତ ସହ୍ୟ ନୁହେଁ ।" (ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମ ଖଣ୍ଡ—ଆତ୍ମଚରିତ—ପୃ୧୪୩-୪୪)

ନୀଳକଣ୍ଠ ଆରମ୍ଭ କରିଥିଲେ ସଂସ୍କାର-ଆନ୍ଦୋଳନ । ଏହି ଉଦ୍ଦେଶ୍ୟରେ କେତେଗୋଟି ପ୍ରବନ୍ଧ ଲେଖି ସେ ଚହଳ ସୃଷ୍ଟି କରିଥିଲେ । ସେଗୁଡ଼ିକ ହେଲା—

(୧) ତନ୍ତ୍ର ଉପାସନା ସମ୍ବନ୍ଧରେ ଦୁଇ ଏକ କଥା—
—ମୁକୁର ୩/୧୧-୧୨ ପୃଷ୍ଠା ୨୩୬
(୨) ଅଛୁଁ ଓ ହେବୁଁ—ଉତ୍କଳ ସାହିତ୍ୟ—୧୩/୯-୧୦ ଓ ୧୩/୧୧-୧୨
(୩) ମଠ ଓ ପ୍ରକୃତି—ଉତ୍କଳ ସାହିତ୍ୟ—୧୪/୧-୩
(୪) ପ୍ରତିଭାପୂଜା ଓ ପ୍ରତିମାପୂଜା—ଉତ୍କଳ ସାହିତ୍ୟ ୧୪/୪-୫
(୫) ଆମ୍ଭର ଥିଲା ଓ କାରଣ ଥାଇପାରେ—ଉତ୍କଳ ସାହିତ୍ୟ—
୧୫/୬-୭, ୧୫/୮-୧୦, ୧୬/୧ ୨ ୧୬/୩ ୪
(୬) ମୋ ଜୀବନ— ମୁକୁର ୬/୬, ୬/୮-୯
(୭) ପୃଥିବୀର ଗୁରୁ ପ୍ରଧାନ ଧର୍ମ—ସତ୍ୟବାଦୀ—୫/୮-୯
(୮) ଲୌକିକ ବିଜ୍ଞାନ—ସତ୍ୟବାଦୀ—୫/୬-୭
(୯) ଶିକ୍ଷାର ଭବିଷ୍ୟତ—ସତ୍ୟବାଦୀ—୫/୮-୯
(୧୦ ଇଂରେଜୀ ଶିକ୍ଷାର ମୋହ—ସତ୍ୟବାଦୀ ୬।୫
(୧୧) କର୍ମ ବିବେକ ବା ବ୍ୟବହାର ବିଚକ୍ଷଣତା—ସତ୍ୟବାଦୀ—୫/୮-୯
(୧୨) ଜାତୀୟତାର ଭିତ୍ତିଭୂମି ସତ୍ୟବାଦୀ-୫/୮-୯
(୧୩) ଯୌବନର ପ୍ରଭାବ ଓ ପ୍ରତିଷ୍ଠା—ସତ୍ୟବାଦୀ-୬/୪
(୧୪) ଏକାମ୍ରକାନନ—ଉତ୍କଳ ସାହିତ୍ୟ ୨୦।୩, ୨୦।୪, ୨୦।୫
(୧୫) ବିକ୍ରମାଦିତ୍ୟ ଓ କାଳିଦାସ— ସତ୍ୟବାଦୀ—୩/୧-୨

ଏହି ଗଦ୍ୟ ଲେଖାଗୁଡ଼ିକରେ ନୀଳକଣ୍ଠଙ୍କର ଉଜ୍ଜ୍ୱଳ ବ୍ୟକ୍ତିତ୍ୱର ପରିଚୟ ମିଳୁଅଛି । ଏହି ଗୁଡ଼ିକରେ ଲେଖକ ଯେ ଭବିଷ୍ୟତରେ ଜଣେ କୃତବିଦ୍ୟ ସ୍ରଷ୍ଟାଭାବରେ ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠିତ ହେବେ, ଏଥିରେ କୌଣସି ସନ୍ଦେହର ଅବକାଶ ନଥିଲା । (୮୭)

ଏହି ସମୟରେ ନୀଳକଣ୍ଠ ଅଳ୍ପ କେତୋଟି କ୍ଷୁଦ୍ରକବିତା ଲେଖିଥିଲେ ଏବଂ କିଛି ଅନୁବାଦ ମଧ୍ୟ କରିଥିଲେ । ମାତ୍ର ଏସବୁ ଲେଖାର ଅନ୍ତରାଳରେ ଗୋଟିଏ କଥା ଫୁଟି ଉଠୁଥିଲା-ତାହା ହେଲା ଭାରତୀୟ ସଂସ୍କୃତିର ଚେତନା ଏବଂ ଦେଶପ୍ରାଣତା । ଓଡ଼ିଆ ସାହିତ୍ୟର ମୌଳିକ ସୌନ୍ଦର୍ଯ୍ୟ ଉଦ୍ଭାଇବାପାଇଁ ସତ୍ୟବାଦୀ ସାଧକଗଣ ବଦ୍ଧପରିକର ହୋଇଥିଲେ । ଆଙ୍ଗିକ ଏବଂ ଆତ୍ମିକ ଉଭୟ

୮୭ । ଆଧୁନିକ ଓଡ଼ିଆ ଗଦ୍ୟ— ସାହିତ୍ୟ-ଡକ୍ଟର ଶ୍ରୀନିବାସ ମିଶ୍ର-୧୯୭୮-
ପୃ ୩୮୧-୩୯୬

ହିଗରୁ ସତ୍ୟବାଦୀ ସାହିତ୍ୟିକ ଗୋଷ୍ଠୀ ଯେଉଁ ଦାନ ଓଡ଼ିଆ ସାହିତ୍ୟକୁ ଦେଇଗଲେ ତାହାର ପଟାନ୍ତର ନାହିଁ । ସେଥିରେ ସେମାନଙ୍କର ସ୍ୱାତନ୍ତ୍ୟ ବାରି ହୋଇ ପଡ଼ୁଥିଲା । (୮୮)

ନୀଳକଣ୍ଠ ପ୍ରଥମ ଅବସ୍ଥାରେ କିଛି କ୍ଷୁଦ୍ରକବିତା ଏବଂ ଅନୁବାଦ କାବ୍ୟ ଲେଖି ନିଜର କାବ୍ୟିକ ପ୍ରତିଭାର ସୂଚନା ପ୍ରଦାନ କରିଥିଲେ । ସତ୍ୟବାଦୀ ସ୍କୁଲର କର୍ମଜଞ୍ଜାଳ ମଧ୍ୟରେ ଅଧିକ କିଛି ଲେଖିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ଏହି ସମୟରେ ତାଙ୍କର ପ୍ରାରମ୍ଭିକ କାବ୍ୟ-ସାଧନା ସମ୍ପର୍କରେ ଅଧ୍ୟାପକ ନଟବର ସାମନ୍ତରାୟ ଯେଉଁ ଆଲୋକପାତ କରିଯାଇଅଛନ୍ତି ତାହା ଏଠାରେ ଉଦ୍ଧାର ନ କଲେ "କୋଣାର୍କ"ର ନୀଳକଣ୍ଠଙ୍କୁ ହୃଦୟଙ୍ଗମ କରି ହେବ ନାହିଁ ।

"କାବ୍ୟକାର ଶ୍ରୀ ନୀଳକଣ୍ଠ" ଶୀର୍ଷକ ଆଲୋଚନାରେ ଡକ୍ଟର ସାମନ୍ତରାୟ ଲେଖିଥିଲେ—

ସାହିତ୍ୟର ଯେଉଁ କେତୋଟି ବିଭାଗରେ ନୀଳକଣ୍ଠ ଦାସ ଅମର ଯଶ ଅର୍ଜନ କରିଛନ୍ତି, କାବ୍ୟକବିତା ହେଉଛି ସେଥିରୁ ଅନ୍ୟତମ । ଏଇ ରଚନାରେ ସୃଷ୍ଟିର ନୂତନତା ସହ ତାଙ୍କ ବିଶିଷ୍ଟ ଚରିତ୍ରବୃତ୍ତିର ଅମର ସ୍ୱାକ୍ଷର ସର୍ବତ୍ର ପରିଦୃଷ୍ଟ ହୁଏ । (କ) ବଧୂ ଓ ବାସନ୍ତୀ (ଗୋଲଡ୍‌ସ୍ମିଥ୍‌ଙ୍କ 'ହରମିଟ' କବିତାର ମୁକ୍ତ ଅନୁବାଦ) (ଖ) ବର୍ଷର ଶେଷ ଗୋଲାପ (ମୁରଙ୍କ ଗୋଟିଏ କବିତାର ମର୍ମାନୁବାଦ), (ଗ) ଅଶ୍ରୁ (ଟେନିସନଙ୍କ ଗୋଟିଏ କବିତାର ମର୍ମାନୁବାଦ), ଏଇ ଅନୁଦିତ କବିତା ନୀଳକଣ୍ଠଙ୍କ ପରବର୍ତ୍ତୀ ରଚନା 'ପ୍ରଣୟିନୀ' ଓ 'ଦାସନାଏକ' ର ଅଗ୍ରଜ ମାତ୍ର । ଯେତେଦୂର ମନେ ହୁଏ 'ଆଦର୍ଶତାରା' ହିଁ ତାଙ୍କର ପ୍ରଥମ ପ୍ରକାଶିତ କବିତା । ଏଥିରେ ପ୍ରେମର ନିଷ୍ଠା, ଆଦର୍ଶ ଓ ଆନ୍ତରିକତା ସହ ନିର୍ମଳତା, ରକ୍ତମାଂସର ଆକର୍ଷଣ ଅପେକ୍ଷା ଏକ ଉଚ୍ଚ ଆଦର୍ଶର ଭାବ ସୁପରିସ୍ଫୁଟ । 'ପ୍ରୀତିରହସ୍ୟ' ଅନ୍ୟ ଏକ କବିତାରେ ସେହି ଭାବ ମଧ୍ୟ ପ୍ରତିଷ୍ଠିତ । 'ପ୍ରେମ'ପ୍ରତି ଲେଖକଙ୍କର ଏକ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ତାଙ୍କର ବିଭିନ୍ନ କାବ୍ୟରେ ଅତି ମଞ୍ଜୁଳ ରୂପବିଭବରେ ପ୍ରତିଫଳିତ । (କ) ଶ୍ରୀପଞ୍ଚମୀ (ଖ) ଭକ୍ତର ଉଦ୍‌ବୋଧନ (ଗ) ଭୋଗ ଓ ତ୍ୟାଗ (ଘ) ବିଶ୍ୱବାଣୀ (ଙ) ଆତ୍ମବାଣୀ (ଚ) କାହିଁ ଅଛ ?—ଏଇ କବିତା ମାନଙ୍କରେ ଧର୍ମ, ଭକ୍ତିଭାବ, ଜୀବନଦର୍ଶନ, ଉଚ୍ଚ ଆଦର୍ଶ ପ୍ରଭୃତି ଭାବଧାରା ଓଜସ୍ୱିନୀ ପରିବେଶ ମଧ୍ୟରେ ପ୍ରକଟିତ । ବୌଦ୍ଧଧର୍ମର ଗୋଟିଏ ଜାତକଗଳ୍ପ ଅବଲମ୍ବନରେ ଲିଖିତ "ବକକର୍କଟକଥା" କବିତାରେ

---

୮୮ । "ସ୍କୁଲ ରଚନାରେ କହିଚି, ସେତେବେଳେ ସତ୍ୟବାଦୀର ଗୋଟିଏ ସ୍ୱତନ୍ତ୍ର ସାହିତ୍ୟ ଶୈଳୀ ବାହାର କରିବା ଆମ କଳ୍ପନାରେ ଖୁବ୍ ଥିଲା ।
(ନୀଳକଣ୍ଠ ଗ୍ରନ୍ଥାବଳୀ-ପ୍ରଥମ ଖଣ୍ଡ-ଆତ୍ମଜୀବନୀ—ପୃ ୧୪୪)

ଉପଦେଶ, ସଂସ୍କାରଭାବ ଏବଂ 'ଚଷାପୁଅପ୍ରତି' କବିତାରେ କବିଙ୍କର ବାସ୍ତବ ଦୃଷ୍ଟିଭଙ୍ଗୀ ପରିଦୃଷ୍ଟ ହୁଏ । ନୀଳକଣ୍ଠଙ୍କ କବିତାର ଅନ୍ୟ ଏକ ବୈଶିଷ୍ଟ୍ୟ ହେଉଛି କେତେକ ସ୍ଥଳରେ ସଂସ୍କୃତ ଗୁରୁ ଲଘୁ ସ୍ୱର ନିୟମର ଅନୁସରଣ । ତାଙ୍କର (କ) ଉପାସନା (ଖ) ସଙ୍କୀର୍ତ୍ତନ (ଗ) ଉଦ୍‌ବୋଧନ ପ୍ରଭୃତି କବିତା ଏହାର ଉଦାହରଣ । ଅନ୍ୟାନ୍ୟ ଗୀତିକାରମାନେ ବଙ୍ଗଳା ମାତ୍ରାବୃତ୍ତଛନ୍ଦ ଓଡ଼ିଆକୁ ଆହରଣ କଲାବେଳେ ନୀଳକଣ୍ଠଙ୍କ ଏପରି ଅନୁସରଣ ଏକାନ୍ତ ବ୍ୟତିକ୍ରମ ଏବଂ ବିସ୍ମୟକର । କ୍ଷୁଦ୍ରକବିତା ଅପେକ୍ଷା କାବ୍ୟ-ରଚୟିତା ହିସାବରେ ନୀଳକଣ୍ଠ ଏ ସାହିତ୍ୟରେ ସର୍ବାଦୌ ଅବିସ୍ମରଣୀୟ ।'' (୮୯) ''ଆଦର୍ଶତାରା'' ନୀଳକଣ୍ଠଙ୍କ ପ୍ରଥମ ପ୍ରକାଶିତ କବିତା ୧୯୦୯ ଖ୍ରୀଷ୍ଟାବ୍ଦ ଜାନୁଆରି ମାସ ''ଉତ୍କଳ ସାହିତ୍ୟ'' ରେ ତାହା ପ୍ରକାଶିତ ହୋଇଥିଲା । ନୀଳକଣ୍ଠଙ୍କ ପ୍ରେମଦର୍ଶନ ଦେହବାଞ୍ଛା ନୁହେଁ, ଭୋଗସର୍ବସ୍ୱ ଅନୁଚିନ୍ତା, ଆଦର୍ଶ ପ୍ରେମଭାବନାକୁ ଆଦୌ କଳୁଷିତ କରିନାହିଁ । ଅନ୍ତରଙ୍ଗତା, ନିଷ୍ଠା ଏବଂ ନିର୍ମଳତା ହେଉଛି ଏହି ପ୍ରେମର ସାରକଥା । ଏପରି ପ୍ରେମରେ ହତାଶାର ଦୁଃସ୍ୱପ୍ନ ନାହିଁ । ଅନ୍ୟପାଇଁ ଜୀବନ ଉତ୍ସର୍ଗ କରିବାରେ ଯେଉଁ ଆନନ୍ଦ ତାହା ପ୍ରକୃତ ପ୍ରେମିକପ୍ରେମିକା କେବଳ ହୃଦୟଙ୍ଗମ କରିପାରନ୍ତି । ଉଜ୍ଜ୍ୱଳ ଆତ୍ମତ୍ୟାଗରେ ପ୍ରେମାନୁଭୂତି ଶୁଦ୍ଧ ଓ ପବିତ୍ର ହୋଇ ଉଠିଛି । (୯୦)

ନୀଳକଣ୍ଠ ଉତ୍କଳମଣି ଗୋପବନ୍ଧୁଙ୍କର ଶିଷ୍ୟ, ସଖା ଏବଂ ସହଚର ଥିଲେ । ଗୋପବନ୍ଧୁଙ୍କର ''ଅବକାଶଚିନ୍ତା'' ପୁସ୍ତକ ୧୮୯୯ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ପେଟ୍ରିଅଟ ପ୍ରେସରେ ପ୍ରକାଶ ପାଇଥିଲା । ଏହି ପୁସ୍ତକରେ ସଙ୍କଳିତ କବିତାଗୁଡ଼ିକରେ ଗୋପବନ୍ଧୁଙ୍କର ସ୍ୱଦେଶପ୍ରୀତି ଏବ ବିଶ୍ୱପ୍ରୀତି ପ୍ରକାଶିତ । ''ପ୍ରାର୍ଥନା'' କବିତାରେ ଗୋପବନ୍ଧୁ ଲେଖିଥିଲେ—

---

(୮୯) ଓଡ଼ିଆ ସାହିତ୍ୟର ଇତିହାସ-ଡ. ନଟବର ସାମନ୍ତରାୟ-୧୯୬୪-ପୃ ୬୦୫-୬୦୬

(୯୦) ''ଜଗତର କୀଟ ମୁହିଁ ଥିଲି ନଭେ ତାହା ଚୁହିଁ
ଦେଖୁ ଦେଖୁ ଲୁଚିଗଲା କି କରିବି ରୁହିଁରେ
ପ୍ରେମିକ ଜୀବନ ମୋର ଆଉ କାହା ପାଇଁରେ !
ଝଞ୍ଜା ବହିଗଲେ ପୁଣି— ପ୍ରେମ ଜ୍ୟୋତି ପ୍ରକାଶି
ଦିଶିବ ମୋ ପ୍ରାଣ ପ୍ରିୟେ ତାରା ନଭେ ବିକଶି । '' (ଆଦର୍ଶତାରା)

—ଉଦ୍ଧୃତାଂଶଟି 'କବି ନୀଳକଣ୍ଠ'-ଅଧ୍ୟାପକ କ୍ଷେତ୍ରବାସୀ ନାୟକ—ପୃ ୬ ଠାରୁ ଗ୍ରହଣ କରାଯାଇଛି ।

"ଉତ୍କଳ ମାତାର ଅତୀତ ଯଶ
ବିପୁଳ ବିଭବ ବଳ ସାହସ
ସୁମରଣେ ଫାଟିଯାଏ ହୃଦୟ
ଦେଖି ଅବସ୍ଥାର ଏ ବିପର୍ଯ୍ୟୟ
ରକ୍ତମାଂସ ଦେହଧର
ଅଧୀର ଆତୁର କିଏ ସେ ନ ହେବ
ଦେଖି ମାତା ଏତେ ସର ।"

ରାଧାନାଥ ଯୁଗର ସନ୍ଧ୍ୟାକାଳରେ ଗୋପବନ୍ଧୁ ଦେଶ ଓ ଜାତିର ପ୍ରାଚୀନ ଐତିହ୍ୟ ସ୍ମରଣ କରି ବିଚଳିତ ହେଉଥିଲା ବେଳେ ସେହି ପ୍ରେରଣାର ଅନୁରୋଧରେ ନୀଳକଣ୍ଠ କବିତା ଲେଖା ଆରମ୍ଭ କରିଥିଲେହେଁ ତାଙ୍କର ମୌଳିକ ଚିନ୍ତା ଏବଂ ବୈପ୍ଲବିକ ମନୋଭାବ ଫୁଟି ଉଠୁଥିଲା । ନୀଳକଣ୍ଠ ପ୍ରାଚୀନ ଗୌରବର ସ୍ମରଣ କରି ଅଶ୍ରୁ ମୋଚନ କରିବାକୁ ପସନ୍ଦ କରୁ ନ ଥିଲେ । ସତ୍ୟବାଦୀ ବନବିଦ୍ୟାଳୟ ପିଲାମାନଙ୍କ ଉଦ୍ଦେଶ୍ୟରେ ୧୯୧୨ ଖ୍ରୀଷ୍ଟାବ୍ଦରେ ସେ ଲେଖିଥିଲେ "ଶ୍ରୀପଞ୍ଚମୀ" କବିତା । ଏଥିରେ ସେ ଆହ୍ୱାନ ଜଣାଇ ଥିଲେ—ଆମ୍ଭମାନଙ୍କୁ ଅନ୍ଧ ପୌତ୍ତଳିକତା ପ୍ରଭାବରୁ ମୁକ୍ତ ହେବାକୁ ପଡ଼ିବ । ଆମେ ବୈଜ୍ଞାନିକ ଯୁଗର ଆହ୍ୱାନକୁ କାର୍ଯ୍ୟକାରୀ କରି ଧୀରେ ଧୀରେ ପ୍ରଗତି ପଥରେ ଧାବମାନ ହେବା । କର୍ମଯୋଗୀ ନ ହେଲେ କୌଣସି ଜାତି କେବେହେଲେ ସମୃଦ୍ଧିଶାଳୀ ହୋଇନାହିଁ । (୯୧)

ଏଇ ତରୁଣ ବୟସରେ ସଂସ୍କୃତ ଓ ଇଂରେଜୀରୁ କିଛି କବିତା ଅନୁବାଦ କରି ପ୍ରକାଶ କଲାବେଳେ ନୀଳକଣ୍ଠ ଧ୍ରୁଏତ ଜାଣିପାରୁ ନ ଥିଲେ ଯେ ତାଙ୍କର ଲେଖନୀରୁ ଦିନେ "କୋଣାର୍କେ" ପରି କାବ୍ୟର ଫଲ୍‌ଗୁ ପ୍ରବାହିତ ହେବ । 'କୋଣାର୍କେ' କାବ୍ୟରେ ଯାହାଙ୍କର ଲେଖନୀ ଅଜସ୍ରସ୍ରାବୀ, ପାଣ୍ଡିତ୍ୟପରିପୂର୍ଣ୍ଣ ଏବଂ

(୯୧) "ଭାରତ ପତିତ ଆଜି          ହୀନ ଆର୍ଯ୍ୟ ହିନ୍ଦୁ
ହରାଇଛି ଜ୍ଞାନର ସେ ସ୍ନେହ
ତୁଳରେ ପ୍ରତିମା ରଚି          ନାରିକେଳ ପରେ
ଗଢ଼େ ତେଣୁ ଭୌତିକ ବିଗ୍ରହ ।
ଥିଲା, ଥିଲା ବୋଲି          ପଡ଼ି କୁସଂସ୍କାର ଜାଲେ
ଦେଶ ସାରା ଜଡ଼ ପିଣ୍ଡମୟ
ନାହିଁ ଆଜି ବିଜ୍ଞାନର          ସେ ପୁଣ୍ୟ ବିଭବ
କର୍ମଯୋଗେ ଶକ୍ତିର ସଞ୍ଚୟ ।"
—(ଶ୍ରୀପଞ୍ଚମୀ)

ଶବ୍ଦଙ୍କାରରେ ଅନୁରଣିତ, ସେ କିପରି ଏତେ ସରଳ ସ୍ୱାଭାବିକ ଭାଷାରେ ଅତି ଉଚ୍ଚକୋଟୀର ଭାବଧାରାକୁ ଅନୁବାଦ କରିପାରିଲେ !! "ଭକ୍ତଗାଥା" ମୁଖବନ୍ଧରେ ନୀଳକଣ୍ଠ ଲେଖିଥିଲେ—"ସତ୍ୟବାଦୀ ସ୍କୁଲର ଦୈନିକ ଉପାସନା ପାଇଁ କେତେକ ବୈଦିକ ଓ ଶାସ୍ତ୍ରୀୟ ମନ୍ତ୍ରସ୍ତୋତ୍ରମାନ ସଂଗ୍ରହ କରି ଅନୁବାଦ କରିଥିଲେ । ସ୍ୱର୍ଗୀୟ ପଣ୍ଡିତ ଗୋପବନ୍ଧୁ ଦାସ ତାହା ଆମୂଳଚୂଳ ଦେଖି ମନୋନୀତ କରିଥିଲେ । ତାହା ପ୍ରଥମେ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇ ପରେ 'ଉପାସନା' ନାମକ ଗୋଟିଏ କ୍ଷୁଦ୍ରପୁସ୍ତିକା ରୂପେ ବାହାର କରାଯାଇଥିଲା ।"

ନୀଳକଣ୍ଠଙ୍କର ଅନୁବାଦ-ଶୈଳୀ ଜାଣିବା ପାଇଁ ଏଠାରେ କେତୋଟି ପଦର ଉଦ୍ଧାର କରାଗଲା ।

(୧) ତ୍ୱଂ ସ୍ତ୍ରୀ ତ୍ୱଂ ପୁମାନସି
ତ୍ୱଂ କୁମାର ଉତ ବା କୁମାରୀ
ତ୍ୱଂ ଜୀର୍ଣ୍ଣୋ ଦଣ୍ଡେନ ବଞ୍ଚସି
ତ୍ୱଂ ଜାତୋ ଭବସି ବିଶ୍ୱତୋ ମୁଖଃ
ଅନାଦିମତ୍ତ୍ୱଂ ବିଭୁତ୍ୱେନ ବର୍ତ୍ତସେ
ଯତୋ ଜାତାନି ଭୁବନାନି ବିଶ୍ୱାଃ ।

**ଅନୁବାଦ—**

ତୁମ୍ଭେ ହେ ପୁରୁଷ ନାରୀ          ତୁମ୍ଭେ କୁମାର କୁମାରୀ
ବୃଦ୍ଧ ତୁମ୍ଭେ ତୁମ୍ଭେ ହେ ତରୁଣ
ଜାତ ଯାହା ଏ ସଂସାରେ          ଅଛି ଯାହା ଚରାଚରେ
ତୁମ୍ଭେ ପ୍ରଭୁ ସକଳ ନିଦାନ ।
ବିଶ୍ୱମୟ ତବ ମୁଖ          ଦେଖେ ମୁଁ ସତତ
ଅନାଦିକାରଣ ବିଭୋ,
ତୁମ୍ଭଠାରୁ ପ୍ରଭବେ ଏ ନିଖିଳ ଜଗତ ।

(୨) ଓଁ ତ୍ୱମାଦିଦେବଃ ପୁରୁଷ ପୁରାଣଃ
ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନଂ
ବେତ୍ତାସି ବେଦ୍ୟଞ୍ଚ ପରଂ ଚ ଧାମ
ତ୍ୱୟା ତତଂ ବିଶ୍ୱମନନ୍ତରୂପ ।

**ଅନୁବାଦ—**

ଭଗବାନ ଆଦି ଦେବ ପୁରାଣ-ପୁରୁଷ
ଅନନ୍ତ-ବିଶ୍ୱଭୁବନ-ପରମ ଆଧାର,
ତୁମ୍ଭେ ଜ୍ଞାନ ଜ୍ଞେୟ ତୁମ୍ଭେ ଶ୍ରେଷ୍ଠ ଅଧିଷ୍ଠାନ ଭବେ
ସୃଷ୍ଟିସାରା ବ୍ୟାପ୍ତ ତବ ଅନନ୍ତ ବିଗ୍ରହ ।

(୩) ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ୍ ଦୁଃଖଭାକ୍ ଭବେତ ।

**ଅନୁବାଦ—**

"ସର୍ବେ ଭବେ ହୁଅନ୍ତୁ ହେ ସୁଖୀ
ନିରାମୟ ହୁଅନ୍ତୁ ସରବେ
ସର୍ବେ ହବ୍ୟଜ୍ଞାନେ ଶୁଭ ଦେଖନ୍ତୁ ଜଗତେ
ଦୁଃଖଭାଗୀ କେହି ନୋହୁ ଲବେ ।"

ନୀଳକଣ୍ଠ ଥିଲେ ଚିନ୍ତାର ଗ୍ରାହକ । ଭାବ ଅନୁସାରେ ଭାଷା ତାଙ୍କର ଅଧୀନ ହୋଇ ପଡ଼ୁଥିଲା । ବେଦଉପନିଷଦର ଗୁରୁଗମ୍ଭୀର ଭାବନାରାଜି ଅନୁବାଦ କଲାବେଳେ ଓଡ଼ିଆ ଶବ୍ଦଯୋଜନା ମଧ୍ୟ ସେହିପରି ଗାମ୍ଭୀର୍ଯ୍ୟପୂର୍ଣ୍ଣ ହୋଇ ଯାଉଥିଲା । ଅଥଚ ଶିଶୁ, କିଶୋରମାନଙ୍କ ମନଲାଖି ଚିନ୍ତା ପରିବେଷଣ କଲାବେଳେ ତାହା କଳକଳନାଦିନୀ ତଟିନୀ ପରି ହୃଦୟକୁ ଆପ୍ଲୁତ କରିଦେଉଥିଲା ।

ଏଠାରେ ନୀଳକଣ୍ଠଙ୍କର ପ୍ରାୟ ଏକ ସମୟର ଦୁଇଟି କବିତାର ତୁଳନା କରାଯାଇପାରେ ।

**ସତେ ବିଶ୍ୱଭବ ସେ ଅମୃତ ରସେ**

କି ମହା ଇଙ୍ଗିତେ ପ୍ରଭୁ, ଅମୃତର କି ଆବେଶେ
ଲଭି କିବା ନିମନ୍ତ୍ରଣ ଏ ପିଣ୍ଡେ ପରାଣ ହସେ ?
ଅଦ୍‌ଭୁତେ ରୁନ୍ଧି ଶୁନ୍ୟେ,
ଭୁଲି କି ଅବା ସ୍ମରଣେ,
ମରଣ-ମନ୍ଦିରେ କିପାଁ ଜୀବନ ହେ ପରକାଶେ ?
ଅନନ୍ତର ମହାଲୀଳା
ଏ ପିଣ୍ଡେ କରଇ ଖେଳା
ଉଠଇ ପରାଣ ନାଚି ପୁଲକରେ କି ବିଶ୍ୱାସେ ? (୯୨)

**ଭକ୍ତବାଣୀ**

× × ×

ଅନନ୍ତ କରାଳ-କାଳ-ମହାମୂଳାଧାର
ନିଖିଳ ରହସ୍ୟ, ବିଶ୍ୱେ, ନିସର୍ଗ ବିଗ୍ରହ !
ସର୍ଗତନ୍ତ୍ରମୟ ତବ ଓଁକାର ବିଭବ
ସୃଜିଲା ନିମିଷେ ମହା-ଭୁବନ ବିତାନ ।

(୯୨) ସତ୍ୟବାଦୀ—ଷଷ୍ଠବର୍ଷ—ପଞ୍ଚମ ସଂଖ୍ୟା—୧୩୨୮

ଦିବ୍ୟ ତେଜେ ବିରାଜିଲ ମହା ଜ୍ୟୋତିରେଖା
ଦିଗ୍‌ଦେଶର ମହାବର୍ତ୍ମ ଅନନ୍ତ ବିସ୍ତାରେ
ଭବ-ତନ୍ତ୍ର ବିଦ୍ୟୋତନ କରି କି ଭୁବନେ;
ବହିଯାଏ କାଳସ୍ରୋତ
ନିମିଷୁ ନିମିଷ ଗତ
ଅନାଗତ ଅତୀତର ନିତ୍ୟ ବର୍ତ୍ତମାନେ
ସତ୍ୟ ତୁମ୍ଭେ, ଦେଶକାଳ-ଅତୀତ ନିଗମେ । (୯୩)

ଏହି କାଳର କବିତା ସହିତ ନୀଳକଣ୍ଠଙ୍କର ଗୋଟିଏ ଦୁଇଟି ଅନୁବାଦ କବିତାର ତୁଳନା କରିଯାଉ ।

**ଚଷା ପୁଅ ପ୍ରତି**

କହିଁ ଚଷାପୁଅ କାହା ପାଇଁ ସହୁ
ବଇଶାଖ ଖରା ଶ୍ରାବଣଧାରା
ପଦେ ଦଳି ତତେ ଖାଉଛନ୍ତି ଯେହୁ
ଲଗୁ ତାଙ୍କ ପାଇଁ ବରଷସାରା ।
ପେଟକୁ ନ ଖାଇ କେତେ ଶ୍ରମ ସହୁ
କହିଁ ଶ୍ରମଜୀବୀ ଲଗିଛୁ ତୁହି
ନିଠୁର ପେଷଣେ ପଡ଼ି, କାହା ପଦେ
ଜୀବନସମ୍ପଦ ଦେବାକୁ ନେଇ ।
ତବ ଶ୍ରମ ଫଳେ ଆହେ ପ୍ରଜାକୁଳ
ବଞ୍ଚୁଛନ୍ତି କେତେ ଶକୁନ ଦେଶେ,
ସାରା ଜୀବନଟି ଖଟୁଅଛ ତୁମ୍ଭେ
ଭୋଗୁଛନ୍ତି ସେହୁ କେତେ ହରଷେ ।” (୯୪)

ମୋଟ ଉପରେ ଏଇ କେତୋଟି ଉଦାହରଣରୁ ନୀଳକଣ୍ଠଙ୍କ ତରୁଣ ଜୀବନରେ ସାହିତ୍ୟସାଧନା ପାଇଁ ଯେଉଁ ବ୍ୟଗ୍ରତା ଏବଂ ପ୍ରତିଭାର ପରିଚୟ ମିଳିଥିଲା, ତାହା ଥିଲା ଅସାଧାରଣ । ଅନୁବାଦ ଏବଂ ମୌଳିକ ରଚନା ଉଭୟ କ୍ଷେତ୍ରରେ ତାଙ୍କର ଦକ୍ଷତା ପରିଦୃଷ୍ଟ ହୋଇଥିଲେ ହେଁ ଯୁଗୋପଯୋଗୀ

---

(୯୩) ୧୯୧୮ କିମ୍ବା ୧୯୧୯ରେ ରଚିତ-ନୀଳକଣ୍ଠ ଗ୍ରନ୍ଥାବଳୀ—୧ମ ଖଣ୍ଡ—ଭକ୍ତିଗାଥା ମୁଖବନ୍ଧ ।

(୯୪) ସତ୍ୟବାଦୀ—ପଞ୍ଚମଖଣ୍ଡ—ତୃତୀୟ ସଂଖ୍ୟା—ପୃ ୧୬୩
Shellyଙ୍କ ‘To men of England’ କବିତାର ମର୍ମାନୁବାଦ ।

ବାତାବରଣକୁ ସମର୍ଥନ କଲାଭଳି କେତେକ ବିଦେଶୀ କାବ୍ୟ ଓ କବିତାର ଅନୁବାଦ କରିବାପାଇଁ ନୀଳକଣ୍ଠ ଅଧିକ ବ୍ରତୀ ହୋଇଥିଲେ । ତେବେ ଏହି ଅନୁବାଦ କ୍ଷେତ୍ରରେ ନୀଳକଣ୍ଠଙ୍କର ସାର୍ଥକ ସୃଷ୍ଟି ହେଉଛି "ପ୍ରଣୟିନୀ" ଓ "ଦାସ ନାଏକ" । 'ସତ୍ୟବାଦୀ' ମାସିକ ସାହିତ୍ୟ-ପତ୍ରର ପଞ୍ଚମଖଣ୍ଡ, ତୃତୀୟ ଓ ଚତୁର୍ଥ ସଂଖ୍ୟାରେ ପ୍ରଣୟିନୀ କାବ୍ୟର ପ୍ରଥମସର୍ଗର କେତେକାଂଶ ପ୍ରଥମେ ସ୍ଥାନ ଲାଭ କରି ସୁଧୀଜନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ପରେ ପରେ ଟେନିସନ୍‌ଙ୍କ 'Princess' କାବ୍ୟର କେତେକ ସଙ୍ଗୀତର ଭାବାନୁବାଦ ପ୍ରକାଶ କରି କବି ବୋଧହୁଏ ଆତ୍ମସମୀକ୍ଷା କରୁଥିଲେ ।

**ପ୍ରେମିକର ଉଚ୍ଛ୍ୱାସ (୯୫)**

(Tennyson and princess କାବ୍ୟର ଗୋଟିଏ ଗୀତର ଅନୁବାଦ)

"ଯାଅରେ କୋକିଳ ସେ ଦକ୍ଷିଣ ଦେଶେ
ଯାଅ ପ୍ରଣୟିନୀ ପାଶେ
ଅରୁଣ ଧଉଳ ବାତାୟନେ ତାର
ବସି ଗାଅ ମଧୁଭାଷେ ।
କଳକଣ୍ଠେ ତବ ପୀୟୂଷ ବରଷୁ
ସେ ଅରୁଣ ବାତାୟନେ,
ଗାଅ ତହିଁ ମୋର ପରାଣର ବାଣୀ
ପ୍ରେମର ମଧୁର ସ୍ୱନେ ।
ଜାଣୁଥରେ ପିକ ପ୍ରଣୟି ଯୁଗଳେ
କହ ଯାଇ ସେ ବିଦେଶେ
ସେ ଦେଶ ଏ ଦେଶ ଆଗ୍ରହ ବିଗ୍ରହ
ଗାଅ ପ୍ରଣୟିନୀ ପାଶେ ।"—ଇତ୍ୟାଦି

ମୂଳଲେଖାର ଗୋଟିଏ ଉଦାହରଣ ଦେଲେ ଅନୁବାଦର ସାର୍ଥକତା ଉପଲବ୍ଧି କରିପାରିବ । ଆଲୋଚ୍ୟ କବିତାରେ ଅଛି—

ହୋଇଯାନ୍ତି ମୁହିଁ ଭୋ ପରରେ ପକ୍ଷୀ
ସେହି ବାତାୟନ ଚୂଳେ
ସରାଗେ ନଅନ୍ତା ହୃଦବେଢ଼ ପରେ
ପ୍ରଣୟିନୀ ମୋତେ ଗେଲେ ।

(୯୫) ସତ୍ୟବାଦୀ—ତୃତୀୟ ଖଣ୍ଡ—ପଞ୍ଚମ ଓ ଷଷ୍ଠ ସଂଖ୍ୟା—ପୃ ୧୬୩

ବସି ସେ ଉରସେ ସେ ହୃଦ କମ୍ପନେ
ଥର ଥର ପ୍ରେମ ଭରେ
ମଧୁର ମରଣେ ମୁଦନ୍ତି ନୟନ
ଭାସି ସେ ପ୍ରେମସାଗରେ ।

**ଟେନସନ୍‌ଙ୍କର ଭାଷା ହେଲା—**

'O' were I thou that she might take me in,
And lay me on her bosom and her heart,
Would rock the snowy cradle till I died !

(Princess)

"କହ କହ ପିକ ସେ ରମଣୀ ବରେ
କଲତାନ ସନମାନେ
ମଧୁ ଯଉବନେ ବିଳମ୍ବ କମ୍ପାଇଁ
ପ୍ରଣୟ ପୀୟୂଷ ପାନେ ।
କହ ତାକୁ ଫେଡ଼ି କ୍ଷଣିକ ଜୀବନ
ପ୍ରଣୟ ବନ୍ଧନ ଚିର
ବସନ୍ତ ମଳୟ କ୍ଷଣିକ, କ୍ଷଣିକ
ରମଣୀ ରୂପ ସମ୍ଭାର ।"

**ଟେନସନ୍ ଲେଖିଲେ**

"O, tell her, brief is life but love is long.
And brief the sun of summer in the North,
And brief the moon of beauty in the South."

(Princess)

ଅନୁବାଦକାଳରେ କବି ନୀଳକଣ୍ଠ କେବଳ ଭାବସମ୍ପଦ ଗ୍ରହଣ କରିଛନ୍ତି । ଆକ୍ଷରିକ ଅନୁବାଦ କରିନାହାନ୍ତି । ଅନାବଶ୍ୟକ ମନେ କରୁଥିବା ଅନେକ ପଦ ସେ ପରିହାର କରିଛନ୍ତି । ତେଣୁ ଅନୁବାଦରେ ମଧ୍ୟ ତାଙ୍କର ମୌଳିକ ଦୃଷ୍ଟିକୋଣର ପରିଚୟ ମିଳୁଅଛି । ଅନୁବାଦ ମାଧ୍ୟମରେ ସେ ନିଜର କବିପ୍ରେରଣାର ପରିଚୟ ପ୍ରଦାନ କରିଛନ୍ତି ।

●

# କାବ୍ୟ-ପ୍ରଭାତର ଦୀପ୍ତି—"ପ୍ରଣୟିନୀ"

'ଆତ୍ମଜୀବନୀରେ ନୀଳକଣ୍ଠ "ମୋର କାବ୍ୟଲେଖା" ଶୀର୍ଷକ ଆଲୋଚନାରେ ସ୍ମରଣ କରିଛନ୍ତି— "୧୯୧୮ ଖ୍ରୀଷ୍ଟାବ୍ଦ ଶେଷଆଡ଼କୁ ସତ୍ୟବାଦୀ ସ୍କୁଲ୍ ଓ ଛାତ୍ରାବାସର ଅଧ୍ୟକ୍ଷ ପଦ ଛାଡ଼ିଲା ପରେ ମୋର କାମ ବହୁତ କମିଗଲା । ମୁଁ ଏକପ୍ରକାର ପୂରାପୂରି ଲେଖାପଢ଼ା ଧରି ବସିଲି ଓ ଭଲ୍‌କରି ସାହିତ୍ୟଚର୍ଚ୍ଚା ଆରମ୍ଭ କଲି । ପୂର୍ବେ ବି. ଏ. ପଢ଼ିଲାବେଳେ ଇଂରେଜ କବି ଟେନିସନ୍‌ଙ୍କ 'The Princess'ର କେତେକ ଅଂଶ ଅମିତ୍ରାକ୍ଷର ପଦ୍ୟରେ ଅନୁବାଦ କରିଥିଲି । ସେତେବେଳର ସତ୍ୟବାଦୀ ସ୍କୁଲର ଅନ୍ୟତମ ଶିକ୍ଷକ ଓ ଆମର ନବ ପ୍ରତିଷ୍ଠିତ ସତ୍ୟବାଦୀ ଛାପାଖାନାର ମ୍ୟାନେଜର ଶ୍ରୀ ସତ୍ୟବାଦୀ ତ୍ରିପାଠୀଙ୍କଠାରୁ ଉତ୍ସାହ ପାଇ ମୁଁ "ପ୍ରଣୟିନୀ" ନାମରେ ସେଇ ଅନୁବାଦଟି ପୂର୍ଣ୍ଣ କରି ୧୯୧୯ ଫେବୃୟାରୀରେ ପ୍ରକାଶ କରିଦେଲି । ଦେଖିଲି, ତାର ଆଦର ବି ହେଲା । ସଙ୍ଗେ ସଙ୍ଗେ ମୋର ସାହିତ୍ୟଚର୍ଚ୍ଚା ବି ବଢ଼ିଗଲା ।" (୯୬)

'ପ୍ରଣୟିନୀ' କାବ୍ୟରେ ସିଦ୍ଧିଲାଭ ଏବଂ ରସିକ-ପାଠକ ସଂସାରରୁ ସ୍ୱୀକୃତି ନୀଳକଣ୍ଠଙ୍କ କାବ୍ୟସାଧନା ପଥରେ ଅତ୍ୟନ୍ତ ମୂଲ୍ୟବାନ ପାଥେୟ ବୋଲି ସ୍ୱୀକାର କରାଯାଇଛି । ପ୍ରଣୟିନୀର ଅନୁବାଦ ପାଇଁ ନୀଳକଣ୍ଠ ବ୍ରତୀ ହୋଇଥିଲେ ବି. ଏ. ଶ୍ରେଣୀର ଛାତ୍ର ହିସାବରେ । ଅନୁବାଦର କେତେ ଅଂଶ ପ୍ରଥମେ 'ମୁକୁର' ପତ୍ରିକାରେ ସ୍ଥାନ ଲାଭ କରିଥିଲା । ପରେ କେତେକ ଅଂଶ 'ସତ୍ୟବାଦୀ' ପତ୍ରିକାରେ ମଧ୍ୟ ପ୍ରକାଶିତ ହେଲା । ନୀଳକଣ୍ଠଙ୍କ ପରି ଶକ୍ତିଶାଳୀ କବି ମୌଳିକ କାବ୍ୟରଚନାରେ ମନୋନିବେଶ ନ କରି ଗୋଟିଏ ଇଂରେଜୀ କାବ୍ୟର ଅନୁବାଦ କଲେ କାହିଁକି ?

ସେହି କାଳରେ ରାଧାନାଥ ଓ ତାଙ୍କର ସମଧର୍ମା କବିମାନେ ପାଶ୍ଚାତ୍ୟ ସାହିତ୍ୟରୁ ଆହରଣ କରି ବହୁ କାବ୍ୟକବିତା ଲେଖି ସାରିଥାନ୍ତି । ଏପରି ଆହରଣକୁ ଅନେକ କ୍ଷେତ୍ରରେ ସତ୍ୟବାଦୀ ଦଳୀୟ ସାଧକଗଣ ସ୍ୱାଗତ କରି ପାରିନାହାନ୍ତି । ୧୯୫୧ ସାଲରେ ତରୁଣ ବୟସରେ ସେ କାଳର ନବସ୍ୱରତ

(୯୬) ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମଖଣ୍ଡ—ଆତ୍ମଜୀବନୀ—ପୃ ୮୩

ପ୍ରେସ ଘରେ ଏହି ଲେଖକର ସୁଯୋଗ ଓ ସୌଭାଗ୍ୟ ଘଟିଥିଲା ପଣ୍ଡିତ ନୀଳକଣ୍ଠଙ୍କ ସହିତ 'ପ୍ରଣୟିନୀ'ର ଜନ୍ମକାହାଣୀ ସମ୍ପର୍କରେ ଜାଣିବାପାଇଁ । ନୀଳକଣ୍ଠ କହିଥିଲେ—କଟକ ଏବଂ କଲିକତାରେ କଲେଜରେ ଅଧ୍ୟୟନ କାଳରେ ତାଙ୍କ ମନରେ ସଂସ୍କାର ଭାବନା ଜାଗରୁକ ହୋଇଥାଏ । ଭିକ୍ଟୋରିଆ ଯୁଗରେ ଇଂଲଣ୍ଡରେ ନାରୀସ୍ୱାଧୀନତା ପାଇଁ ଯେଉଁ ଆନ୍ଦୋଳନ ହୋଇଥିଲା ତାର ପ୍ରତିଫଳନ ଘଟିଥିଲା ଇଂରେଜ କବି ଟେନିସନଙ୍କ ଲେଖାରେ । ଯୁବକ ନୀଳକଣ୍ଠଙ୍କ ମନରେ ତାହା ଗଭୀର ଭାବରେ ରେଖାପାତ କରିଥିଲା । ସେ ମଧ୍ୟ କାମନା କରୁଥିଲେ ଆମ ଦେଶର ନାରୀସମାଜ ଜାଗ୍ରତ ହୁଅନ୍ତୁ । ମାତୃଜାତି ଅଗ୍ରସର ନହେଲେ କୌଣସି ସମାଜର ପ୍ରଗତି ହୋଇପାରିବ ନାହିଁ । ଅଥଚ ଏପରି ଉଦ୍ଦୀପନା ବାଣୀ ପ୍ରଚାର କରିବା ପାଇଁ ଆମ ଦେଶରେ ନା ଅଛି ଅନୁଷ୍ଠାନ ନା ଅଛି ସାହିତ୍ୟ । ତେଣୁ ନୀଳକଣ୍ଠ 'Princess' କାବ୍ୟର ମର୍ମାନୁସରଣ କରି ଓଡ଼ିଆ ସାହିତ୍ୟକୁ ଦେଇଗଲେ 'ପ୍ରଣୟିନୀ' କାବ୍ୟ ।

'ପ୍ରଣୟିନୀ' ୧୯୧୯ ଖ୍ରୀଷ୍ଟାବ୍ଦରେ ପୁସ୍ତକ ରୂପରେ ପ୍ରକାଶିତ ହେଲେହେଁ ତାହାର କେତେକ ଅଂଶ ପ୍ରଥମେ 'ମୁକୁର' ରେ ଏବଂ ପରେ 'ସତ୍ୟବାଦୀ' ସାହିତ୍ୟ ପତ୍ରରେ ପ୍ରକାଶିତ ହେଉଥିଲା । 'ପ୍ରଣୟିନୀ' ପତ୍ରିକାରେ ପ୍ରକାଶିତ ହେଲାପରେ ନୀଳକଣ୍ଠଙ୍କୁ ପାଠକ-ସମାଜ କବିର ସ୍ୱୀକୃତି ପ୍ରଦାନ କଲେ । ତା ପୂର୍ବରୁ ପ୍ରକାଶିତ ପ୍ରବନ୍ଧମାନଙ୍କରେ ସେ ପ୍ରମୁଖ ସଂସ୍କାରକ ହିସାବରେ ପରିଚିତ ହୋଇ ସାରିଥିଲେ ।

କେତେକଙ୍କ ମତରେ କେବଳ କାବ୍ୟଚର୍ଚ୍ଚାର ଚମତ୍କାରିତା ହିଁ ନୀଳକଣ୍ଠଙ୍କୁ ପ୍ରେରଣା ଦେଇଥିଲା 'Princess'ର ଅନୁବାଦ କରିବାପାଇଁ । କୌଣସି ଆଦର୍ଶର ଅବବୋଧ ପାଇଁ ଏହି କାବ୍ୟର ଅନୁବାଦ ପରିକଳ୍ପିତ ନୁହେଁ । (୯୭) କିନ୍ତୁ ଏହା ସତ୍ୟ ନୁହେଁ । ଲେଖକ ନିଜର ଅନୁଭୂତିରୁ ଜାଣେ ପଣ୍ଡିତ ନୀଳକଣ୍ଠ ନିଜକ ଆଦର୍ଶର ପରିପ୍ରଚାର ଅନୁରୋଧରେ ଏହି କାବ୍ୟର ଓଡ଼ିଆ ରୂପାନ୍ତର ପାଇଁ ଆଗ୍ରହୀ ହୋଇଥିଲେ । ତେବେ ଏ କ୍ଷେତ୍ରରେ ନୀଳକଣ୍ଠଙ୍କର ମୌଳିକ ଚିନ୍ତା ଲକ୍ଷ୍ୟ କରିବାର କଥା । ଇଂରେଜୀ କାବ୍ୟରେ ଅଛି ବଳ୍ପିତଦେଶରେ ଦୁଇଟି ରାଜ୍ୟର ରାଜା ସେମାନଙ୍କର ପୁଅଝିଅଙ୍କୁ ପିଲାବେଳୁ ବିବାହ କରି ଦେଇଥିଲେ । ରାଜକୁମାର ବୟଃପ୍ରାପ୍ତ ହେଲାପରେ ରାଜକୁମାରୀକୁ ବୋହୂକରି ଆଣିବାପାଇଁ ପୁତ୍ରର ପିତା କନ୍ୟାର ପିତାଙ୍କ ନିକଟକୁ ପ୍ରସ୍ତାବ ପ୍ରେରଣ କଲେ । ଏହାରି ମଧ୍ୟରେ ରାଜକୁମାରୀ ଭୟଙ୍କର ପୁରୁଷବିରୋଧୀ ମନୋଭାବ ଗ୍ରହଣ କରିଥିଲା । ସେ ଇଚ୍ଛା କରୁ ନଥିଲା ବିବାହ କରି ପୁରୁଷର ଅଧୀନା ହେବାପାଇଁ । ପୁରୁଷର

(୯୭) କବି ନୀଳକଣ୍ଠ—ଅଧ୍ୟାପକ କ୍ଷେତ୍ରବାସୀ ନାୟକ ୧୯୭୧-ପୃ୧୬-୧୩

କରିଛି ତା ପକ୍ଷରେ ଅସହନୀୟ । ତେଣୁ ସେ ବିବାହକୁ ସ୍ୱୀକାର କଲନାହିଁ । ଏଣେ ନାରୀମାନଙ୍କୁ ସ୍ୱତନ୍ତ୍ର ଦୀକ୍ଷା ପ୍ରଦାନ କରିବାପାଇଁ ସେ ଏକ ମହାବିଦ୍ୟାଳୟ ପ୍ରତିଷ୍ଠା କଲା । ଏହି ଅନୁଷ୍ଠାନର ନିୟମ ଥିଲା ଅତ୍ୟନ୍ତ କଠୋର । ଏଠାରେ ଯେଉଁମାନେ ନାମ ଲେଖାଇବେ ସେମାନେ ଜୀବନରେ ବ୍ରତ ଗ୍ରହଣ କରିବେ ବିବାହ ନ କରିବାପାଇଁ । ରାଜପୁତ୍ର ଏଥିରେ ବିଚଳିତ ନହୋଇ ନାରୀ ରୂପରେ ଏହି ମହାବିଦ୍ୟାଳୟରେ ପ୍ରବେଶ କଲେ କଳେବଳେ କୌଶଳେ ରାଜକୁମାରୀର ହୃଦୟକୁ ଜୟ କରିବାପାଇଁ । ସେହି ମହାବିଦ୍ୟାଳୟର ନିୟମ ଥିଲା—

"ନ ଦେବାକୁ ଛନ୍ନବର୍ଷ ଚଟିପନ୍ଥ ଘରେ
ଛନ୍ନବର୍ଷ ନ ଯିବାକୁ ସେ ଭୂମି ବରଜ;
ପୁରୁଷେ ନ କହିବାକୁ ଛନ୍ନବର୍ଷ କଥା ;
କେତେ ବିଧି ଏହିପରି । ..." । ୮୫
(ପ୍ରଣୟିନ୍ନୀ—୨ୟସର୍ଗ)

ରାଜକୁମାରୀ ମନେକରିଛି ନାରୀଠାରୁ ପୁରୁଷ ସ୍ୱତନ୍ତ୍ର ହେବ । ସେଥିପାଇଁ ପୁରୁଷ-ମାନଙ୍କ ବିରୁଦ୍ଧରେ ତ ର କଠୋର ସଂଗ୍ରାମ । ତାର ସ୍ୱପ୍ନ ହେଲା—

"ସବୁଠାରେ ସମ ହେବେ ନର ସଙ୍ଗେ ନାରୀ
ରନ୍ଧନଶାଳାରେ ଦୁହେଁ, ଦୁହେଁ ମନ୍ତ୍ରଣାରେ
ଜଟିଳ-ସଂସାର କର୍ମେ-ଦୁହେଁ, ଦୁହେଁ ତୁଲ"

ନୀଳକଣ୍ଠ ଟେନିସନଙ୍କ କାବ୍ୟର ମତକୁ ଗ୍ରହଣ କରିନାହାନ୍ତି । ସେ କହନ୍ତି ସମାଜ ରୂପକ ବୃକ୍ଷରେ ନାରୀ ଓ ପୁରୁଷ ଗୋଟିଏ ବୃନ୍ତରେ ଦୁଇଟି ଫୁଲ । ଦୁହିଁଙ୍କ ସହଯୋଗରେ ଏହି ସୃଷ୍ଟିର ସୌନ୍ଦର୍ଯ୍ୟ ରସାଣିତ । ନାରୀ ଓ ପୁରୁଷ ଠିକ୍ ଗୋଟିଏ ବୃକ୍ଷପରି । ବୃକ୍ଷର ପ୍ରତ୍ୟେକ ଅଂଶ ପରସ୍ପର ସହିତ ସଂଯୁକ୍ତ, ପୁଣି ଢଙ୍ଗାତ୍ମ ମଧ୍ୟ । ନାରୀ, ନରର କ୍ରୀଡ଼ନକ ଭାବରେ ଜୀବନ ଅତିବାହିତ କରୁ ଏ କଥାରେ ନୀଳକଣ୍ଠ ଆସ୍ଥା ପୋଷଣ କରି ନାହାନ୍ତି । ମାତ୍ର ଅବିବାହିତ ରହିଲେ, ପୁରୁଷ ଓ ନାରୀ ବିଚ୍ଛିନ୍ନ ହୋଇ ବ୍ୟକ୍ତିତ୍ୱର ବିକାଶ କଲେ ସମସ୍ୟାର ସମାଧାନ ହୋଇ ପାରିବ ନାହିଁ ।

ନାରୀ ଓ ପୁରୁଷ ଉଭୟେ ଉଭୟଙ୍କର କର୍ମସଖା ହୋଇ ଜୀବନ ଅତିବାହିତ କରିବେ ।

ନୀଳକଣ୍ଠଙ୍କର ସମାଧାନର ବାଣୀ ହେଲା ପ୍ରଣୟିନ୍ନୀକାବ୍ୟରେ—ଉଭୟ ନର ଓ ନାରୀଙ୍କ ସହଯୋଗରେ ସମାଜଜୀବନର ବିକାଶ ହେବ ।

"..........ଏକ ସଙ୍ଗେ ମିଶି
ରମଣୀ ପୁରୁଷେ ଉଭେ ପଡ଼ିବେ ଉଠିବେ
ଏକା ତୁଳା-ଦଣ୍ଡେ । ଯେବେ ଲଭିବେ ରମଣୀ
ଅବନତ ହେବେ ନରେ । ରମଣୀ ମହିମା
କରିବ ପୁରୁଷେ ବଡ଼ । ଦାସତ୍ୱ ପୀଡ଼ନେ
ସ୍ୱାଧୀନତା ଖେଳେ ଅବା ରମଣୀ ପୁରୁଷ
ନୁହନ୍ତି ଅଲଗା କେବେ, ଜନମୁ ରମଣୀ
ବଢଇ ପୁରୁଷ-ସନେ, ପ୍ରକୃତିର ଖେଳେ
ରମଣୀ ପୁରୁଷ ମିଳି, ଉଠି ପଦେ ପଦେ
ଯାଆନ୍ତି ଗୋ ଆକାଶର ସୁସଜ୍ଜ ସୋପାନେ ।"

(ପ୍ରଣୟିନୀ—ସପ୍ତମ ସର୍ଗ)

ନୀଳକଣ୍ଠଙ୍କ ଅନୁବାଦ କୌଶଳ ଏବଂ କବିତ୍ୱ ପାଇଁ ପ୍ରଣୟିନୀକାବ୍ୟ ପ୍ରସିଦ୍ଧି ଅର୍ଜନ କରିଅଛି । ସମସ୍ତ କାବ୍ୟଟିକୁ ଅମିତ୍ରାକ୍ଷର ଛନ୍ଦରେ ଅନୁବାଦ କରିବା କିଛି କମ୍ ଶକ୍ତିମତ୍ତାର ପରିଚାୟକ ନୁହେଁ ! ତେବେ ମୂଳ-କାବ୍ୟରେ ଗର୍ଭିତ ଗୀତଗୁଡ଼ିକୁ ନୀଳକଣ୍ଠ ସୁଗେୟ କରିବା ପାଇଁ ଓଡ଼ିଆ ରାଗ-ରାଗିଣୀର ଆଶ୍ରୟ ଗ୍ରହଣ କରିଛନ୍ତି । ଏଠାରେ ଉଦାହରଣ ଛଳରେ ଗୋଟିଏ ମୂଳଲେଖା ସହିତ ନୀଳକଣ୍ଠଙ୍କ ଅନୁବାଦକୁ ତୁଳନା କରାଯାଇପାରେ ।

'The splendor falls on Castle walls
And snowy summits old in story;
The long light shakes across the lakes,
And the wild cataract leaps in glory.
Blow, bugle, blow, set the wild echoes flying,
Blow, bugle, answer, echoes, dying, dying, dying.'

(୯୮)

ନୀଳକଣ୍ଠଙ୍କର ମାର୍ମିକ ଅନୁବାଦ ଏହିପରି—

"ବୁଡ଼ିଯାଏ ରବି ପଶ୍ଚିମ ଗଗନେ
ଗଡ଼ ପାଚୀରରେ କିରଣମାଳା ।
ପୁରାଣ ବିଭବ ସମର କାହାଣୀ
ଘେନି-ଗିରିଚଳ କନକେ ବୋଳା ।

(୯୮) "The poems and plays of Alfred Lord Tennyson. 1938—The Princess—P. 250

ମୃଦୁଲ ପବନେ ଥର ଥର ଥରେ
ଡାହାଣିଆ ଖରୁ ସରସୀ-ଜଳେ ।
ମୋହନ ପ୍ରପାତେ ବହେ ଗିରିନଦୀ,
କନକ କିରଣେ ପ୍ରପାତ ଝଳେ ।
ବାଜି ଉଠ ଭେରୀ, ବାଜରେ ସଘନେ
ପ୍ରତିଧ୍ୱନି ଉଠୁ ବିଜନ ବନେ,
ସେ ଭେରୀ-ନିନାଦ ପ୍ରତିଧ୍ୱନି ଛଳେ
ମିଶିଯାଉ ଗିରି ପୁଳିନ ବନେ ।"

(ପ୍ରଣୟିନୀ—୩ୟ ସର୍ଗ—ଗୀତ)

ପ୍ରଣୟିନୀ ଅନୁବାଦ କାଳରେ ଯେଉଁ ପ୍ରତିଭାର ସୂଚନା ମିଳିଥିଲା ତାହାର କ୍ରମିକ ବିକାଶ ଘଟିଥିଲା 'ଦାସ ନାଏକ', 'ଖାରବେଳ' ଏବଂ 'କୋଣାର୍କେ' କାବ୍ୟରେ । ଆଲୋଚକମାନେ କହନ୍ତି ଆଧୁନିକ କାଳର ଓଡ଼ିଆ ସାହିତ୍ୟରେ 'କୋଣାର୍କେ" ହେଉଛି ସର୍ବଶ୍ରେଷ୍ଠ ଏବଂ ସର୍ବଶେଷ କାବ୍ୟ । 'କୋଣାର୍କେ'ର କାବ୍ୟବିଭା ଅତୁଳନୀୟ । ଅନୁବାଦକାବ୍ୟ ହୋଇ ମଧ୍ୟ 'ପ୍ରଣୟିନୀ'ରେ କବିଙ୍କର ମୌଳିକ ଭାବନାର ପ୍ରଲେପ ଅତ୍ୟନ୍ତ ହୃଦୟଗ୍ରାହୀ । ପାଶ୍ଚାତ୍ୟ କଥାବସ୍ତୁକୁ ସାମାନ୍ୟ ପରିବର୍ତ୍ତନ କରିଦେଇ ପ୍ରାଚ୍ୟ ସଂସ୍କାର ଓ ସଂସ୍କୃତିର ଅନୁରୋଧରେ କବି ତାଙ୍କର ଚରିତ୍ରମାନଙ୍କୁ ବିକାଶପ୍ରାପ୍ତ କରିଅଛନ୍ତି । ପ୍ରାଚ୍ୟର ପାଣିପାଗରେ ସେମାନଙ୍କୁ ସ୍ଥାପନ କରି ସମ୍ପୂର୍ଣ୍ଣ ଭାରତୀୟ କରିଦେଇଛନ୍ତି । ଫଳରେ ଭାରତୀୟ ପାଠକର ମନରାଜ୍ୟରେ ଏହାର ପ୍ରଭାବ ଅପ୍ରତିହତ ।

●

# ଲୋକଭାଷାର ସାର୍ଥକ ରୂପାୟନ
## —ଦାସ ନାଏକ

'ଦାସ ନାଏକ', ନୀଳକଣ୍ଠଙ୍କର ଅନ୍ୟ ଏକ ଅନୁବାଦ ଗ୍ରନ୍ଥ । ଛାତ୍ର-ଜୀବନରେ ଟେନିସନ୍‌ଙ୍କର କାବ୍ୟରାଜି ତାଙ୍କ ମନରେ ଏପରି ପ୍ରଭାବ ବିସ୍ତାର କରିଥିଲା ଯେ ଅସହଯୋଗୀ ଭାବରେ ୧୯୨୩ ସାଲରେ ହଜାରିବାଗ ଜେଲର ରୁଦ୍ଧ ପ୍ରକୋଷ୍ଠ ମଧ୍ୟରେ କାଳଯାପନ କଲାବେଳେ କାଳକଟାଇବା ପାଇଁ ସେ ଅନୁବାଦ କରି ବସିଲେ "ଦାସ ନାଏକ" । ଏହା ଟେନିସନଙ୍କର 'ଇନକ୍ ଆର୍ଡେନ୍'ର ଆଶ୍ରୟରେ ଲିଖିତ । ଏହାକୁ ଲେଖକ ସମ୍ପୂର୍ଣ୍ଣ ଭାରତୀୟ ପାଣିପାଗର ବୋଲ ଦେଇ ଅନୁବାଦ କରିଛନ୍ତି ।

କାବ୍ୟଟି ଅନୁବାଦ କଲାବେଳେ ଲେଖକଙ୍କ ପ୍ରାଣରେ ଏକ ନୂତନ ପରୀକ୍ଷା ପାଇଁ ଆବେଗ ସୃଷ୍ଟି ହୋଇଥିଲା । ସେ ଇଚ୍ଛା କରୁଥିଲେ ଲୋକଙ୍କ ବୁଝିବା-ଭଳି ଭାବ ଓ ଭାଷାରେ କାବ୍ୟ ଲେଖା ହେଉ। କି ଘରୋଇଭାଷାରେ କାବ୍ୟ ଲେଖିବାପାଇଁ ଅତୀତରେ କେହି ପ୍ରଚେଷ୍ଟା କରି ନଥିଲେ । ଏ କ୍ଷେତ୍ରରେ ନୀଳକଣ୍ଠ ଉଦ୍ୟମ କରି ସାଫଲ୍ୟ ଅର୍ଜନ କରିଛନ୍ତି ବୋଲି ସ୍ୱୀକାର କରିବାକୁ ହେବ ।

କାବ୍ୟ ଅନୁବାଦ ମୂଳରେ ଆଉ ଏକ ପ୍ରେରଣା ହେଉଛି ଟେନିସନ୍‌ଙ୍କ କାବ୍ୟର ବିଷୟବସ୍ତୁ । ସ୍ତ୍ରୀର ସ୍ୱାମୀପ୍ରତି ପ୍ରଣୟନିଷ୍ଠା ବିଷୟରେ ଆମ ଦେଶରେ କାବ୍ୟର ଅଭାବ ନାହିଁ । ମାତ୍ର 'ଇନକ୍‌ଆର୍ଡେନ୍' କାବ୍ୟରେ ନାରୀ ଓ ପୁରୁଷର ଏଇ ନିଶ୍ଚୟମନନିଷ୍ଠା ଲେଖକଙ୍କୁ ଅଧିକ ଅନୁପ୍ରାଣିତ କରିଥିଲା ବୋଲି ଜଣାଯାଉଛି । (୧୯)

---

(୧୯) "ସାଧାରଣ ଲୋକେ ବୁଝିବା ଭଳି ଭାଷା ତଥା ଭାବରେ କାବ୍ୟ ଏବେ ଲେଖିହେବ କି ନା, ଏକଥା ବହୁ ଦିନରୁ ବିଚାରୁ ଥିଲି । ସେଥିପାଇଁ ସାଧାରଣ ଘରୋଇଭାଷାରେ ଏହାକୁ ଲେଖିଛି । ଘରୋଇଭାଷା ରେ ଚଳୁଥିବା ଶବ୍ଦର ସଂଖ୍ୟା ଏବେ ମଧ୍ୟ ବଡ଼ ଅଳ୍ପ । ସେ ଅଳ୍ପତା ବ୍ୟବହାରର ପ୍ରାସଙ୍ଗିକ ମାଧୁର୍ଯ୍ୟରେ କିପରି ଆଚ୍ଛାଦିତ ହୋଇପାରିଛି,

"ଇନକ୍‌ଆର୍ଡ଼େନ୍' ରେ ଟେନିସନ୍ ଲେଖିଥିଲେ କିପରି ତିନିଟି ପିଲା ଗୋଟିଏ ଛୋଟ ସମୁଦ୍ରର ବେଳାଭୂମିରେ ଖେଳୁଥିଲେ ବାଲ୍ୟକାଳରେ ।

"The children of three houses, Annie
Lee,
The prettiest little damsel in the port,
And Philip Ray, the miller's only son,
And Enoch Arden, a rough sailor's lad
Made orphan by a winter shipwreck, play'd."

ନୀଳକଣ୍ଠ ଆନିର ନାମ ରଖିଛନ୍ତି 'ମେଲି' । ଫିଲିପି ପରିଚିତ ହୋଇଛି ଲକ୍ଷ୍ମଣ ରୂପରେ ଏବଂ ଇନକ୍ ହୋଇଛି ଦାସ । ସମୁଦ୍ର କୂଳରେ ନୋଳିଆମାନଙ୍କ ପରିବାରକୁ କେନ୍ଦ୍ର କରି ଲେଖକ ପ୍ରାକୃତିକ ପରିବେଶ ସୃଷ୍ଟି କରିଛନ୍ତି । ପିଲାଦିନୁ ଲକ୍ଷ୍ମଣ ଏବଂ ଦାସ 'ମେଲି' ପ୍ରତି ଆକୃଷ୍ଟ ହେଲେ ହେଁ ସଂସାରବନ୍ଧନରେ ଦାସ ଆଉ ମେଲି ସ୍ୱାମୀ ସ୍ତ୍ରୀ ରୂପରେ ସୁଖରେ କିଛିକାଳ ଜୀବନ ଅତିବାହିତ କଲେ । କେତୋଟି ସନ୍ତାନର ଜନମ ହେଲା ପରେ ଇନକ୍ (ଦାସ) ବିଦେଶ ଯାତ୍ରା କଲା ଅଧିକ ରୋଜଗାର କରିବାପାଇଁ । ବିଦେଶରହଣି ମଧ୍ୟରେ ଦୀର୍ଘ ଦଶବର୍ଷ କାଳ ଦାସର କୌଣସି ପତ୍ର ମିଳିଲା ନାହିଁ । ଅନିଶ୍ଚିତ ଅବସ୍ଥାରେ ଲକ୍ଷ୍ମଣର ସମସ୍ତ ସ୍ନେହ ଓ ସହାନୁଭୂତି ମେଲି ଲାଭ କଲେହେଁ ସେ ତାର ମନରାଜ୍ୟରୁ ପ୍ରିୟ ଦାସକୁ ଭୁଲି ପାରିନଥିଲା । ଅବସ୍ଥାଚକ୍ରରେ ଲକ୍ଷ୍ମଣକୁ ସେ ବିବାହ କରି ଘର ସଂସାର କରୁଥିଲା-ବେଳେ ଦାସ ବିଦେଶରୁ ଫେରି ଆସି ଜାଣିବାକୁ ପାଇଛି ଯେ ତାର ପ୍ରିୟତମା ସ୍ତ୍ରୀ ଲକ୍ଷ୍ମଣକୁ ନେଇ ସଂସାର କରୁଛି । ସେମାନଙ୍କ ମନରେ ସେ କଷ୍ଟ ଦେବାକୁ ଇଚ୍ଛା କରି ନାହିଁ । ବରଂ ସେମାନଙ୍କର କଲ୍ୟାଣ କାମନା କରି ନୀରବରେ ଏହି ସଂସାର ଜଞ୍ଜାଳରୁ ଚିରଦିନ ପାଇଁ ମୁକ୍ତି ଲାଭ କରିଛି ।

---

ତାହା ପାଠକମାନେ ଦେଖିବେ । × × ସ୍ତ୍ରୀର ସତୀତ୍ୱ-ଆଦର୍ଶ ଯେଉଁ ଏ ଦେଶରେ ବହୁତ ଲେଖାଯାଇଛି ଓ ଯିବ । ପୃଥିବୀର ସଭ୍ୟ ସାଧାରଣଙ୍କର ଏହାହିଁ ଏବେ ମଧ୍ୟ ଆଦର୍ଶ ଅଛି । ମାତ୍ର ଏ କାବ୍ୟରେ ନାରୀର ସ୍ୱଭାବ ସୁନ୍ଦର ସତୀତ୍ୱ ପାଖେ ପୁରୁଷର ସାଧୁ ଓ ସୁକଠୋର ପ୍ରୀତି-ସାଧନ ସାହିତ୍ୟ-ରାଜ୍ୟରେ ଗୋଟିଏ ନୂତନ ବିଭବ । ଏ ବିଭବ ମଧ୍ୟ ମୋର ଏ କାବ୍ୟ ପ୍ରତି ଆଦର ବଢ଼ାଇଥିଲା—ଏ କଥା କହିରଖିବା ଉଚିତ ମନେ କରେ ।"

(ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମଖଣ୍ଡ—ଦାସ ନାଏକ—ଭୂମିକା)

ଦାସ ମେଲ୍ଲିକୁ ଏତେ ମନଭରି ପ୍ରେମ କରି ପାରିଛି ଯେ ମରଣକାଳରେ ମଧ୍ୟ ତାକୁ ଦେଖିବାକୁ ଇଚ୍ଛା କରିନାହିଁ । କାରଣ କାଳେ ସେ ମନରେ ବ୍ୟଥା ଲାଭ କରିବ । କବିଙ୍କ ଭାଷାରେ—

"ମରଣେଟି ହେଲେ ମେଲ୍ଲିକୁ ମୋ କେବେ
ମୋତେ ଦେଖିବାକୁ ନ ଡାକିବ
ମରଣେ ମୋ ମୁହଁ ଦେଖି, ଜୀବନକୁ
କାଳେ ମନ ତାର ଭାଙ୍ଗିଯିବ ।"

ଟେନିସନ୍ଙ୍କର ଭାଷାରେ—

"For my dead face would vex her after life"

ମେଲିର ପ୍ରଦତ୍ତ ତଉଁରିଆ ଆଜୀବନ ଦାସ ତାର ଗ୍ରୀବରେ ଝୁଲାଇ ନିଜର ଏକନିଷ୍ଠ ପ୍ରେମର ପରିଚୟ ପ୍ରଦାନ କରିଥିଲା । ମଲାବେଳେ ତାହା ଫେରାଇ ଦେଇଯାଉଛି, ଯହିଁରୁ ମେଲି ଜାଣିବ ଯେ ଦାସ କେବେହେଲେ ତାକୁ ମନଛଡ଼ା କରି ନଥିଲା ।

"ମଲାପରେ ମୋର, କହି ଗୋ ମେଲିକୁ
ନ ମଣିବ କେବେ ସେ ଅନ୍ୟଥା
ଶୁଭ ମନାସି ମୁଁ ମରୁଛି ତାହାରେ
ସୁଖେ ତାକୁ ରଖିଥିବେ ପ୍ରଭୁ
ପରାଣ ଦୋସର ସେହି ଏକା ମୋର
ଜୀବନେ ମରଣେ ସବୁ ସେହୁ ।"

(ଦାସ ନାଏକ)

"When you shall see her, tell her that I died.
Blessing her, praying for her, loving her,"

(Enoch Arden)

ସମସ୍ତ ସାହାଯ୍ୟ ସହାନୁଭୂତି ଲାଭ କରି ସୁଦ୍ଧା ମେଲିର ମନ କେବେ-ହେଲେ ଲଇଖଣ ପ୍ରତି ଆକୃଷ୍ଟ ହୋଇନାହିଁ । ଲଇଖଣ ମଧ୍ୟ ଦୀର୍ଘକାଳ ଅପେକ୍ଷା କରି ଆନନ୍ଦ ଲାଭ କରିଛି । ମେଲିକୁ ବିବାହ କଲେ ସେ 'ଦାସ'ର ଆସନ ନେଇ ପାରିବ ନାହିଁ ବୋଲି ଜାଣି ମଧ୍ୟ ଲଇଖଣର ମେଲି ପ୍ରତି ସ୍ନେହ ଓ ପ୍ରେମ ଅତୁଟ ରହିଛି ।

"କି କହୁଛ ମୋତେ ? ଦାସ ମୁହିଁ ପର
ହଇବ କି ଆଉ ବଡ଼ କେହୁ ?
ତୁମ୍ଭଙ୍କ ପେନ ମୁଁ କଲେ ହେଲେ ଘର
ଦାସ ପର ତୁମ୍ଭେ ହେବ ନାହିଁ ?
"ବୁଝିଛି ମୁଁ ତାହା କହେ ଲଇଖଣ
ଦାସଠାରୁ ମୁହିଁ ହେବ ଊଣା,
ସେଥିରେ ମୋହର କିଛି ଦୁଃଖ ନାହିଁ
ଏବେ ଆଉ ନ କର ଗୋ ମନା ।"

ପ୍ରେମ ରାଜ୍ୟରେ ଏପରି ସାଧନା ଦୁର୍ଲ୍ଲଭ କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରେମର ଆଦର୍ଶ ଓ ଏକନିଷ୍ଠତା ଦୃଷ୍ଟିରୁ ପ୍ରତ୍ୟେକଟି ଚରିତ୍ର ବନ୍ଦନୀୟ ହୋଇ ଅଛନ୍ତି ।

# ସ୍ବର୍ଣ୍ଣଯୁଗର ପ୍ରାଣପ୍ରାଚୁର୍ଯ୍ୟ–
# ଖାରବେଳ ଓ କୋଣାର୍କେ

ଖାରବେଳ ଓ କୋଣାର୍କେ ନୀଳକଣ୍ଠଙ୍କର ଦୁଇଟି ମୌଳିକ କାବ୍ୟ। ଏଥିରେ ଓଡ଼ିଶା ଇତିହାସର ଗୌରବମୟ କାହାଣୀ ଲିପିବଦ୍ଧ ହୋଇଅଛି। ଓଡ଼ିଶାର ଐରସମ୍ରାଟ ମହାବୀର ଖାରବେଳଙ୍କ ପରି ପ୍ରବଳପ୍ରତାପୀ ନରପତି ଭାରତୀୟ ଇତିହାସରେ କାହିଁକି, ପୃଥିବୀରେ ମଧ୍ୟ କ୍ୱଚିତ ଇତିହାସ ପୃଷ୍ଠାକୁ ମଣ୍ଡନ କରିଛନ୍ତି । ତାଙ୍କର ଜୟବିଜୟ ଏବଂ ମହାନୁଭବତାର କାହାଣୀ ଖଣ୍ଡଗିରିର ହାତୀଗୁମ୍ଫା ଶିଳାଲେଖ ଜଗତବାସୀଙ୍କୁ ଦୀର୍ଘ ଦୁଇହଜାର ବର୍ଷ ଧରି ଉଦ୍‌ଘୋଷଣ କରି ଆସିଛି ।

'ଖାରବେଳ'ର ରଚନାକାଳ ୧୯୬୦ । ସେତେବେଳେ ନୀଳକଣ୍ଠଙ୍କ ମନରେ ରାଧାନାଥ ଯୁଗର କାବ୍ୟସାହିତ୍ୟ ମାନସିକପୀଡ଼ା ପ୍ରଦାନ କରୁଥାଏ। ରାଧାନାଥ ଯେଉଁ ପ୍ରଣୟଚିତ୍ର ତାଙ୍କର କାବ୍ୟସଂସାରରେ ପ୍ରଦାନ କଲେ ତାହା ଭାରତୀୟ ଆଦର୍ଶ ଓ ସଂସ୍କୃତିର ଅନୁସାରୀ ନ ଥିଲା। ପାଶ୍ଚାତ୍ୟ କଥାବସ୍ତୁକୁ ଆଣି ଭାରତୀୟ ପୋଷାକ ପିନ୍ଧାଇ କବି ରାଧାନାଥ କପରି ଏକ ବଡ଼ମୂର୍ତ୍ତି ରୂପରେ କାବ୍ୟସୁନ୍ଦରୀକୁ ଠିଆ କରିଦେଲେ ।

ସେହି ପ୍ରେମଚିତ୍ରରେ କେବଳ ଯାନ୍ତ୍ରିକ ଯୌନକାମନା ଭରପୂର ହୋଇ ରହିଥିଲା । ସେହି ପ୍ରଣୟାନୁଭୂତି ଉଜ୍ଜ୍ୱଳ ଆତ୍ମତ୍ୟାଗରେ ସିଦ୍ଧ ଓ ପବିତ୍ର ହୋଇ ନଥିଲା। ମନର ମିଳନ ପାଇଁ ପ୍ରୟାସ ନ ଥିଲା କହିଲେ ଚଳେ ।

ସତ୍ୟବାଦୀ ସାଧକମାନଙ୍କର ଆଦର୍ଶ ଥିଲା ଭିନ୍ନ ରକମର। ସେମାନେ ଏ ଦେଶରେ ରୂପାୟିତ କରିବାକୁ ଯାଉଥିଲେ ପ୍ରାଚୀନ ଭାରତର ଗୌରବମୟ ଅଥଚ ବିସ୍ମୃତପ୍ରାୟ ଉଚ୍ଚାଙ୍ଗ ମୂଲ୍ୟବୋଧ ଓ ଆଦର୍ଶ । (୧୦୦) ସେଥିପାଇଁ

---

(୧୦୦) ''ଭାରତୀୟ ଋଷ୍ୟାଶ୍ରମର ଆଦର୍ଶକୁ କର୍ମରେ, ଚିନ୍ତାରେ ଏବଂ ଲେଖାରେ ଫୁଟାଇବା ସତ୍ୟବାଦୀ ଅନୁଷ୍ଠାନର ଶିକ୍ଷକ, କର୍ମୀ ଓ କବି ସାହିତ୍ୟକ-ମାନଙ୍କର ଥିଲା ବୈଶିଷ୍ଟ୍ୟ ।''

(ଉତ୍କଳ ସାହିତ୍ୟ—୧୩୬୩ ଅଷ୍ଟମ ସଂଖ୍ୟା-ସବୁଜସ୍ୱପ୍ନ-କାଳନ୍ଦୀଚରଣ ପାଣିଗ୍ରାହୀ—ପୃ୪୩୩-୩୪)

ରାଧାନାଥପୁରର ବିକୃତ ପ୍ରେମଚିତ୍ରକୁ ନୀଳକଣ୍ଠ ଶୁଭଦୃଷ୍ଟିରେ ଦେଖି ପାରି ନଥିଲେ । ଏ ଦେଶର ସାହିତ୍ୟରେ ଓ ଇତିହାସରେ ବହୁ ଆଦର୍ଶବ୍ୟଞ୍ଜକ ପ୍ରଣୟଚିତ୍ର ଥାଉ ଥାଉ ରାଧାନାଥ କାହିଁକି ଯେ ପାଶ୍ଚାତ୍ୟ ସାହିତ୍ୟର ପ୍ରଣୟ ଚିତ୍ର ପରିବେଷଣ ପାଇଁ ବ୍ୟାକୁଳ ହୋଇ ଉଠିଲେ ତାହା ହୃଦୟଙ୍ଗମ ହୁଏନାହିଁ ।

ସେ ଯାହାହେଉ 'ଖାରବେଳ' କାବ୍ୟରେ ସେ ଯେଉଁ ଉଜ୍ଜ୍ୱଳ ପ୍ରେମଚିତ୍ରର ସୂଚନା ଦେଲେ ତାହାର ପ୍ରାଣପ୍ରତିଷ୍ଠା କଲେ କୋଣାର୍କେ କାବ୍ୟରେ । ଖାରବେଳ ଯୁଦ୍ଧ ଅଭିଯାନରେ ଯାଇ ଆଫଗାନିସ୍ଥାନର ପୂର୍ବବଙ୍ଗର ରାଜ୍ୟରେ ଗ୍ରୀକ୍ ବୀର ଦତ୍ତିମ (ଡ଼ିମେଟ୍ରିୟସ) ଙ୍କ ସହିତ ପ୍ରବଳ ଯୁଦ୍ଧ କରିଥିଲେ । ସମ୍ମୁଖ ସମରରେ ପରାସ୍ତ ଦତ୍ତିମ ମାୟାଯୁଦ୍ଧରେ ଖାରବେଳଙ୍କୁ ଆହତ କଲେ । ଏହି ସମୟରେ ବଙ୍ଗରର ପୂର୍ବତନ ଶାସକ କନ୍ୟା କୃଷକରାଜାଙ୍କ ଦ୍ୱାରା ପାଳିତା ହେଉଥାଏ । ସେ ପୁରୁଷ ବେଶରେ ନିଜର ମାତୃଭୂମିର ଉଦ୍ଧାର ପାଇଁ ଖାରବେଳଙ୍କୁ ଯୁଦ୍ଧରେ ସାହାଯ୍ୟ କରୁଥିଲେ । ଆହତ ଖାରବେଳଙ୍କୁ ସେବା କରୁ କରୁ ବନ୍ଧୁତା, ପ୍ରୀତିରେ ପରିଣତ ହେଲା । ଖାରବେଳ ପରିଶେଷରେ ଜାଣିପାରି ସୁଖୀ ହେଲେ ଯେ ବଙ୍ଗର ବୀର ହେଉଛନ୍ତି ଛଦ୍ମବେଶୀ ରାଜକନ୍ୟା । ଦୁଇଟି ହୃଦୟର ମିଳନ ହୋଇଗଲା କି ଅପୂର୍ବ ହିଲ୍ଲୋଳରେ ।

"ବନ୍ଧୁ ଯତ୍ନେ ଏବେ ଦକ୍ଷିଣ ଶ୍ରୀକରେ
ଧଇଲେ ରମଣୀ ଦକ୍ଷିଣ କର,
କଂପନେ କଂପନେ ଉଠିଲା ପଡ଼ିଲା,
ତରୁଣ-ତରୁଣୀ-ରୋମାଞ୍ଚ ଖେଳ ।

× × ×

କେସନେ ସେ ନବ ବରାଙ୍ଗ-ଯୁଗଳେ
ଢ଼ଳ ଢ଼ଳ ଦିଶେ ମରମ-ଧାର
କି ସଙ୍ଗୀତ-ରସେ କି ସ୍ୱରତ୍ତି ବନ୍ଧି
କିଏ ଗାଇବ ସେ ଇଙ୍ଗିତ-ମାଳା ?

ଏହା ସହିତ କୋଣାର୍କେ କାବ୍ୟର ପ୍ରଣୟ-ବିଳାସ ବିଚାର କରାଯାଉ । ସତ୍ୟବାଦୀ ସ୍କୁଲର ଛାତ୍ରମାନଙ୍କ ସହିତ ନୀଳକଣ୍ଠ ୧୯୧୭ ଖ୍ରୀଷ୍ଟାବ୍ଦ କୁମାରପୂର୍ଣ୍ଣିମା ଦିନ କୋଣାର୍କ ପର୍ଯ୍ୟଟନରେ ଯାଇଥିଲେ । ତାହା ଥିଲା ତାଙ୍କ ଜୀବନର ଅବିସ୍ମରଣୀୟ ସ୍ମୃତି । ସେତେବେଳେ 'ପ୍ରଣୟିନୀ' କାବ୍ୟର ସଫଳତା କବିଙ୍କୁ ଅତୀବ ପ୍ରେରଣା ପ୍ରଦାନ କରିଥାଏ । ନୀଳକଣ୍ଠ ଅଳ୍ପସମୟ ମଧ୍ୟରେ 'କୋଣାର୍କେ', ପରି କାବ୍ୟଟିଏ ଲେଖିଦେଲେ । ତାହା ପ୍ରକାଶିତ ହେଲା ୧୯୧୯ ସାଲରେ ।

୧୯୦୮ ସାଲରେ ରାଧାନାଥଙ୍କ ମୃତ୍ୟୁ ଉପଲକ୍ଷେ ନୀଳକଣ୍ଠ ଲେଖିଥିଲେ—"ସମସ୍ତ ଆସିବ ଯେଉଁଦିନ ରାଧାନାଥଙ୍କ ପନ୍ଥା ମଧ୍ୟ ପ୍ରାଚୀନ ବୋଲି ଗୃହୀତ ହେବ । କିନ୍ତୁ ବର୍ତ୍ତମାନ ରାଧାନାଥ ଉତ୍କଳ ସାହିତ୍ୟରେ ସର୍ବେସର୍ବା ଓ ଏକାଙ୍ଗଚକ୍ରବର୍ତ୍ତୀ । ଆଜି ଯେ ଯାହା ଲେଖୁଅଛନ୍ତି, ସେଥିରେ ଆମେ ରାଧାନାଥଙ୍କୁ ଦେଖିପାରୁଅଛୁ ।"
(ରାଧାନାଥ ଜୀବନୀ)

ରାଧାନାଥଙ୍କ ପ୍ରଭାବ ସେତେବେଳେ ଅପ୍ରତିହତ । କବିଗୁରୁଭାବରେ କବି ରାଧାନାଥ ସମ୍ମାନିତ । କିନ୍ତୁ ରାଧାନାଥଙ୍କ ସମ୍ପର୍କରେ ଏହି ମନୋଭାବ ଅଧିକ କାଳ ରହିଲା ନାହିଁ । ନୀଳକଣ୍ଠ ତାଙ୍କର ମତ ପରିବର୍ତ୍ତନ କରି ରାଧାନାଥୀ ସାହିତ୍ୟରେ ବିଜାତୀୟ ପ୍ରଭାବର ତୀବ୍ର ନିନ୍ଦାବାଦ କରିବାକୁ ଲାଗିଲେ । ନୀଳକଣ୍ଠ ଲେଖିଲେ କୋଣାର୍କେ କାବ୍ୟରେ—

"ଘର ଛାଡ଼ି କହିଁ ଯିବ ସେ ଝିରବାଳା ନନ୍ଦିକା
ସହକାର-ଦ୍ରୁମ ଗହଳେ ଭେଦି କ୍ଷୀଣ ଚନ୍ଦ୍ରିକା,
କଉସୁଲଗାଙ୍କ ଧଉଳ ଏବେ ନୟନେ ନାଚେ
କବିଙ୍କି ସୁମର ବରଗେ ମୁଖ ଫେରାଅ ପଛେ ।"

'କୋଣାର୍କେ' କାବ୍ୟର ପରବର୍ତ୍ତୀ ସଂସ୍କରଣରେ ସ୍ୱନାମଧନ୍ୟ କବି ଓ ସମାଲୋଚକ ମାୟାଧର ମାନସିଂହ ଦୀର୍ଘ ଭୂମିକାରେ ତାର ସ୍ୱାତନ୍ତ୍ର୍ୟ ନିରୂପଣ କରିଛନ୍ତି ଏବଂ ଆଦର୍ଶ ପ୍ରଣୟ ଉପାଖ୍ୟାନ ପାଇଁ ଲେଖକଙ୍କୁ ଅଭିନନ୍ଦନ ଜଣାଇଛନ୍ତି । (୧୦୧) ଓଡ଼ିଆ ସାହିତ୍ୟରେ ଏ ଚିନ୍ତା ପୂର୍ବରୁ ଦୁର୍ଲ୍ଲଭ ଥିଲା ।

---

୧୦୧ । "ସବୁ କାବ୍ୟ ପରି ଏ କାବ୍ୟରେ ମଧ୍ୟ ପ୍ରଣୟହିଁ ମୂଳକଥା; କିନ୍ତୁ ଏ ପ୍ରଣୟରେ ଏପରି ଏକ ଶୁଚିତା, ପୌରୁଷ ଏବଂ ଦୃଢ଼ତା ସୂଚିତ ହୋଇଛି, ଯାହା ଓଡ଼ିଆ ସାହିତ୍ୟରେ ଅନ୍ୟ କୁତ୍ରାପି ଦୃଷ୍ଟିଗୋଚର ହୁଏ ନାହିଁ । କୁମାର ନରସିଂହ ଓ ଦଣ୍ଡଦ୍ରୋହୀଭୂତ ସାମନ୍ତର କନ୍ୟା ମାୟାଦେବୀଙ୍କର ପ୍ରେମ, କାବ୍ୟ ପୁରାଣର ବର୍ଣ୍ଣ-ରଂଜିତ ପ୍ରେମ ନୁହେଁ । ଏଠି ସ୍ୱର୍ଣ୍ଣ ପ୍ରଦୀପରେ ଗନ୍ଧତୈଳ ଜଳୁନି, ବା ବିରହିଣୀର ଉତ୍ତାପ ନାଶ ପାଇଁ ପରିଚାରିକାମାନେ ଉଶୀରମୂଳ ବାନ୍ଧୁଥିବାର ଶଯ୍ୟା ବର୍ଣ୍ଣନା କବି ଆମକୁ ଦେଇ ନାହାନ୍ତି । ତସ୍କର ତାଡନ ବ୍ୟସ୍ତ, ନରସିଂହ ଲୁଣ୍ଠିତ ଶିଶୁପାଳଗଡ଼ର ଭଗ୍ନ ଦୁର୍ଗରେ ମାୟାଦେବୀଙ୍କି ଭେଟନ୍ତି । ପରିଚୟର ଘନିଷ୍ଠତା ଉତ୍ତାରେ, ସେହି ସ୍ଥାନରେ ଭଙ୍ଗା ଖଟରେ ତାଙ୍କର ହୁଏ ପ୍ରଥମ ମିଳନ । ବାପା ଅନଙ୍ଗଭୀମଦେବ ତେଣେ ଯୁବରାଜଙ୍କର କାଶ୍ମୀର ରାଜକନ୍ୟାଙ୍କ ସଙ୍ଗେ ନିର୍ବନ୍ଧ କରେଇ ସାରିଛନ୍ତି । ଏକଥା

'କୋଣାର୍କେ' କାବ୍ୟ ଖାଣ୍ଡି ଜାତୀୟତା ଭାବ ବ୍ୟଞ୍ଜକ । ନରସିଂହଙ୍କ ପରି ଆଦର୍ଶ ନରପତି ଓ ପ୍ରେମିକ ପୁରୁଷ ଥାଉଁ ଥାଉଁ ରାଧାନାଥ ଓଡ଼ିଶାର ଇତିହାସ ନାମରେ ଗଙ୍ଗେଶ୍ୱରଙ୍କ ଚରିତ୍ର ବିଭତ୍ସ କରି ପକାଇଛନ୍ତି । ନୀଳକଣ୍ଠଙ୍କ କାବ୍ୟ-କଳ୍ପନା ରାଧାନାଥୀ କାବ୍ୟ-ପୃଷ୍ଠଭୂମିକାର ଏକ ପ୍ରତିବାଦ ମାତ୍ର ।

'କୋଣାର୍କେ'ର ସ୍ୱତନ୍ତ୍ର ଐଶ୍ୱର୍ଯ୍ୟ ସମ୍ପର୍କରେ କବି ମାନସିଂହ ଯଥାର୍ଥରେ ଲେଖିଛନ୍ତି—"ଏ ଗ୍ରନ୍ଥରେ କବି ଏପରି ବିଷୟମାନ ଉପସ୍ଥାପିତ କରିଛନ୍ତି, ଯାହା ଉପରେ ଓଡ଼ିଆ ସାହିତ୍ୟରେ ଅପର କୌଣସି କବି ଲେଖନୀ ଚାଳନା କରି ନଥିଲେ । ତେଣୁ କବିଙ୍କର ନୂତନ ବର୍ଣ୍ଣର ନୂତନ ଚିତ୍ରଣ ପାଠକମାନଙ୍କୁ ପ୍ରଥମେ ଅସ୍ୱାଭାବିକ ଲାଗିପାରେ । କିନ୍ତୁ ବିଚାର କଲେ ସ୍ପଷ୍ଟ ପ୍ରତୀତ ହେବ ଯେ, ସେଇସେଇ ଚିତ୍ରଣପାଇଁ ସେଇସେଇ ବର୍ଣ୍ଣ ଓ ସେଇ ଭଙ୍ଗିହିଁ ପ୍ରକୃଷ୍ଟ ।" (ଭୂମିକା)

"ରାଧାନାଥ ଓ ମଧୁସୂଦନ ଓଡ଼ିଆ ସାହିତ୍ୟରେ ବଙ୍ଗଳା ଅନୁକରଣରେ ଉପଧା-ମିଳନ ପ୍ରବର୍ତ୍ତ । ଆମେସବୁ ରାଧାନାଥ ଓ ମଧୁସୁଦନଙ୍କ ବହି ପଢ଼ି ମଣିଷ ହେଲୁ । ଉପଧା-ମିଳନ ଯେ ଖାଣ୍ଟି ଓଡ଼ିଆ ଜିନିଷ ନୁହେଁ, ଏହା ଆମ୍ଭେମାନେ ବହୁତ ଡେରିରେ ଜାଣିଲୁ । ସେତେବେଳକୁ ଉପଧାମିଳନ ଗତରେ ପଡ଼ିଗଲାଣି । ଭୁଲ ଜାଣି ମଧ୍ୟ ଏବେ ବି ଉପଧା ମିଳେଇ ଲେଖୁଛୁ । କିନ୍ତୁ କ୍ରମେ ଏଇ ଧାରଣା ବଦ୍ଧମୂଳ ହେଉଛି ଯେ, ଏହି ଉପାଧାମିଳନ ପରି କୃତ୍ରିମ ସୌଷ୍ଠବକୁ ପ୍ରଶ୍ରୟ ଦେବା ଦ୍ୱାରା ଓଡ଼ିଆ ସାହିତ୍ୟର ଅନିଷ୍ଟ ହୋଇଛି । ଭାଷା ତାର ସ୍ୱଚ୍ଛନ୍ଦତା ହରେଇଛି, କବି ତା ଆଙ୍ଗୁଠିରେ ସୁନାର ଶୃଙ୍ଖଳ ଦେଇଛି । ପଣ୍ଡିତ ନୀଳକଣ୍ଠ-ଦାସଙ୍କର 'କୋଣାର୍କେ'ରେ ଭାଷାର ଯେଉଁ ସ୍ୱୈରଜାଙ୍ଗଲିକ ସୁଷମା ଦେଖିବାକୁ ମିଳେ ତାହା ଉପଧାମିଳନର କୃତ୍ରିମତାର ସଂପୂର୍ଣ୍ଣ ଅଭାବ ଯୋଗୁହିଁ ସମ୍ଭବ ହୋଇଛି ।" (ଭୂମିକା)

ଉତ୍କଳର ବୈଭବ କିପରି ରସାଳ ଭାବରେ ବ୍ୟକ୍ତ କରାଯାଇଛି 'ପ୍ରାନ୍ତ ଭାଷଣ'ରେ ତାହାର କେତୋଟି ନମୁନା ଏହିପରି—

---

ନରସିଂହ ଜାଣି ନ ଥିଲେ । × × × କିନ୍ତୁ ମାୟା ନିଜର ସମସ୍ତ ଅସ୍ତିତ୍ୱକୁ ପୋଛି ଦେଇ ନରସିଂହଙ୍କର ମନବେଦନା ଦୂର କରିବାକୁ ଚେଷ୍ଟାକରି, ନିଜ ସ୍ୱାମୀ ଓ ସପତ୍ନୀ କାଶ୍ମୀରକେମାଙ୍କ ହୃଦୟରେ ଯେପରି, ପାଠକମାନଙ୍କ ହୃଦୟରେ ମଧ୍ୟ ସେଇପରି କାରୁଣ୍ୟ-ଧୌତ ସ୍ୱର୍ଣ୍ଣସିଂହାସନରେ ଆସୀନା ହୋଇ ପାରିଚନ୍ତି ।"

(ନୀଳକଣ୍ଠ ଗ୍ରନ୍ଥାବଳୀ—ପ୍ରଥମଖଣ୍ଡ-କୋଣାର୍କେ-ଭୂମିକା)

"କୃଷକ-ଗରବେ ରାଜ ଗଉରବେ
ଫାଟି ଉଠୁଥିଲା ବିଶାଳ ଧରା,
ବନ୍ଦୀ ଗାଉଥିଲେ ସୋହାଗେ ସଙ୍ଗୀତ
ପୁରପଲ୍ଲୀ ଥିଲା ସମ୍ପଦ-ଭରା ।
ଦେବଭୂମି ଏହି ଉତ୍କଳ ଭୁବନ
ବିଷ୍ଣୁକଳା ଘେନି, ରାଜନ ଥିଲେ,
କମଳା-ବିଳାସେ ହସୁଥିଲା ଦେଶ,
ବନ୍ଦୀ-ସରସ୍ୱତୀ ବିପିନ ବିଲେ ।" (କୋଣାର୍କେ)

କୁମାର ନରସିଂହ ଶିଶୁପାଳ କେମାଙ୍କ ନିକଟରେ ବିବାହ ନିର୍ବନ୍ଧ ସମ୍ବାଦ ଦେଇ ନିଜର ଅସହାୟତା ପ୍ରକାଶ କଲାବେଳେ ପ୍ରେମିକା ଶିରୋମଣି କହୁଛନ୍ତି—

"କି ହୋଇଛୁ ନାଥ ? ବିଷାଦ କିପାଇଁ ?
ଆସନ୍ତୁ ସରାଗେ ସେ ଜମ୍ବୁ-କେମା
ଦାସୀ ହୋଇ ମୁହିଁ ଚହିବି ଗହଣେ
ଏଥକୁ ବିଧାନେ ଅଛୁ କି ମନା ?

× × ×

ଏଇଥି ପାଇଁକି ପଡ଼େ ଲୁହ ଝରି
କି କଲ ମୋତେ, ମୋ ପରାଣ ଧନ !
ଏଇଥି ପାଇଁକି ଏତେ ସବୁ ତୁମ୍ଭେ
ଏଇଥି ପାଇଁକି ବିକଳ ମନ !
କହୁ ଏହା ବାଳା ପଡ଼ି ଯୁବା-କୋଳେ
ବାହୁ ପାଶେ ଘେରି ଧଇଲେ ଯାରେ;
ମିନତି ମୋହର ନ ଭଜିବ ଖେଦ
ଜଂବୁ-ଦେଶ-କେମା-ବରଣ-ବେଳେ ।"
(କୋଣାର୍କେ)

ପ୍ରାଚୀନକାଳର ଓଡ଼ିଆ କାବ୍ୟସାହିତ୍ୟରେ ପ୍ରେମଚିତ୍ର ଅଭାବ ନାହିଁ । ମାତ୍ର ସେ ପ୍ରେମରେ ଏପରି ତ୍ୟାଗର ମହିମା ପ୍ରକାଶିତ ହୋଇନାହିଁ । ହୃଦୟର ମିଳନ ପଥରେ କୌଣସି ସାମାଜିକ ବନ୍ଧନ ଏବଂ ସାମାଜିକ ଐଶ୍ୱର୍ଯ୍ୟ ପ୍ରତିବନ୍ଧକ ହୋଇନାହିଁ ।

ନରସିଂହ, ଜମ୍ବୁଜେମା ଏବଂ ଶିଶୁପାଳଜେମା ପ୍ରତ୍ୟେକେ ନିଜ ନିଜର ମହିମାରେ ମହିମାନ୍ୱିତ । କୌଣସିଠାରେ ଦୈହିକ କାମନାବିଳାସ ପ୍ରଣୟଭାବନାକୁ କଳୁଷିତ କରିବାର ସୁଯୋଗ ଲାଭ କରିନାହିଁ । ଏପରି ଗୃରଜିକ ନିଷ୍ଠା ଏବଂ ପାରସ୍ପରିକ ଦେନାଦେନ ବୁଝାମଣା ପ୍ରେମ-କାବ୍ୟରେ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏ କ୍ଷେତ୍ରରେ ନୀଳକଣ୍ଠଙ୍କର କଳ୍ପନାବିଳାସ ସ୍ୱତନ୍ତ୍ର ସ୍ୱୀକୃତିର ଅପେକ୍ଷା ରଖେ । 'କୋଣାର୍କେ' ବାସ୍ତବିକ ଅତୁଳନୀୟ ।



# ସମାଲୋଚନା ଓ ପ୍ରବନ୍ଧ-ଶୈଳୀରେ ନବଦିଗନ୍ତ

ନୀଳକଣ୍ଠ ଅପୂର୍ବ କାବ୍ୟିକ ପ୍ରତିଭାର ଅଧିକାରୀ । ପ୍ରଣୟିନୀ, 'କୋଣାର୍କେ' ପରି କାବ୍ୟ ପାଠ କଲେ ତାହା ପ୍ରମାଣିତ ହୋଇଯାଏ । ଅନୁବାଦ କ୍ଷେତ୍ରରେ ମଧ୍ୟ ଲେଖକଙ୍କର ସଫଳତା ଉଲ୍ଲେଖନୀୟ । ମାତ୍ର ସତ୍ୟବାଦୀ ସାଧକ ହିସାବରେ ଓଡ଼ିଆ ଗଦ୍ୟ ସାହିତ୍ୟକୁ ତାଙ୍କର ଦାନ ଅପରିସୀମ । ସତ୍ୟବାଦୀ ସାଧକଗଣ ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଗଦ୍ୟର ପ୍ରବର୍ତ୍ତକ ବୋଲି ଆଲୋଚକମାନଙ୍କର ମତ । ଏକ୍ଷେତ୍ରରେ ନୀଳକଣ୍ଠଙ୍କର ଗଦ୍ୟଶୈଳୀ ସ୍ୱତନ୍ତ୍ର । ତାଙ୍କର ଗଦ୍ୟ ଲେଖା ଅନନୁକରଣୀୟ । ସମାଲୋଚକ ଏବଂ ପ୍ରାବନ୍ଧିକ ନୀଳକଣ୍ଠଙ୍କର ସାଧନା ଅପରିସୀମ । ସେ ଥିଲେ ପଣ୍ଡିତ ଏବଂ ବହୁପାଠୀ ବ୍ୟକ୍ତିତ୍ୱ । ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟରେ ତାଙ୍କର ଗଭୀର ଅନୁଶୀଳନ ରହିଥିଲା । କିନ୍ତୁ ନୀଳକଣ୍ଠ ପରମ୍ପରାବାଦୀ ନଥିଲେ । ପ୍ରବଣତାର ମୋହ ତାଙ୍କୁ ଗ୍ରାସ କରି ନଥିଲା । ପାରମ୍ପରିକ ବିଶ୍ୱାସ ଓ ଚଳଣି ବିରୁଦ୍ଧରେ ସେ ସର୍ବଦା ସ୍ୱର ଉତ୍ତୋଳନ କରି ଆସିଛନ୍ତି । ତାହା ହୁଏତ ସମ୍ପ୍ରତିକ କାଳରେ ବହୁ ଲୋକଙ୍କ ହୃଦୟରେ ପୀଡ଼ା ପ୍ରଦାନ କରିଅଛି, ତଥାପି ନୀଳକଣ୍ଠ ନିଜ ବିଚାରରେ ଅଟଳ ରହି ତାଙ୍କ ବିଚାର ଆଲୋଚନାରେ ସେ ଅନ୍ୟମାନଙ୍କୁ ଅନୁପ୍ରାଣିତ କରିବାକୁ ଚେଷ୍ଟା କରିଛନ୍ତି ।

ନୀଳକଣ୍ଠଙ୍କ ପ୍ରବନ୍ଧଗୁଡ଼ିକୁ କେତୋଟି ଭାଗରେ ବିଭକ୍ତ କରାଯାଇପାରେ—

(୧) ଶିକ୍ଷାମୂଳକ ପ୍ରବନ୍ଧ
(୨) ସଂସ୍କାରମୂଳକ ପ୍ରବନ୍ଧ
(୩) ଆଧ୍ୟାତ୍ମିକ ଭାବଧାରା ପରିପୂର୍ଣ୍ଣ ସଂସ୍କୃତିମୂଳକ ପ୍ରବନ୍ଧ
(୪) ସାହିତ୍ୟ ସମାଲୋଚନା ଓ କଳାତ୍ମକ ପ୍ରବନ୍ଧ

ନୀଳକଣ୍ଠ ପ୍ରଥମେ ପ୍ରବନ୍ଧ ଓ ସମାଲୋଚନା କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ ପରିସ୍ଥିତିର ଆହ୍ୱାନରେ । ସାମନ୍ତ ଚନ୍ଦ୍ରଶେଖର, କବି ରାଧାନାଥଙ୍କ ସ୍ମୃତି ଦିବସ ଉପଲକ୍ଷେ ତାଙ୍କୁ ଦୀର୍ଘ ପ୍ରବନ୍ଧ ରଚନା କରି ସ୍ମୃତି ସଭାରେ ପାଠ କରିବାକୁ ହୋଇଥିଲା । 'ସତ୍ୟବାଦୀ' ପତ୍ରିକାର ଅଭ୍ୟୁଦୟ ପରେ ନୀଳକଣ୍ଠ

ଲେଖିଲେ ଫକୀରମୋହନ ଏବଂ ଲାବଣ୍ୟବତୀ ବିଷୟରେ ସମୀକ୍ଷାତ୍ମକ ପ୍ରବନ୍ଧ । ଏହି 'ସତ୍ୟବାଦୀ' ପତ୍ରିକାରେ ଓଡ଼ିଆ ବର୍ଣ୍ଣବିଚାର ଓ ଛନ୍ଦ ସମ୍ପର୍କରେ ମଧ୍ୟ ଏକାଧିକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା ।

ସଂସ୍କାରଧର୍ମୀ ପ୍ରବନ୍ଧ ହିସାବରେ 'ସାମାଜିକ କୁସଂସ୍କାର', 'ଆତ୍ମରକ୍ଷାଲୋପ ଓ କାରଣ ଆଇପାରେ', 'ନୀତି ଓ ପ୍ରକୃତି', 'ପ୍ରତିମାପୂଜା ଓ ପ୍ରତିମାପୂଜା', 'ସଂଗ୍ରାମ ଓ ଜୀବନ' 'ଅଛୁ ଓ ହେବୁ', 'ତନ୍ତ୍ର ଉପାସନାରେ ଦୁଇ ଏକ କଥା','ମୋ ନାଶ' ପ୍ରଭୃତି ଉଲ୍ଲେଖଯୋଗ୍ୟ । ଲେଖକଙ୍କର ଶିକ୍ଷାସମ୍ପର୍କୀୟ ପ୍ରବନ୍ଧ ହେଲା—'ଲୌକିକ ବିଜ୍ଞାନ', 'ଶିକ୍ଷାର ଭବିଷ୍ୟତ','ଇଂରେଜୀ ଶିକ୍ଷାର ମୋହ' । ସାହିତ୍ୟ ଓ ସମାଲୋଚନା ସମ୍ପର୍କରେ ନୀଳକଣ୍ଠଙ୍କର ବହୁ ପ୍ରବନ୍ଧ ରହିଛି । ବିଶେଷତଃ 'ଓଡ଼ିଆଭାଷା ଓ ସାହିତ୍ୟ' ପୁସ୍ତକରେ ଅନେକ ଗୁଡ଼ିଏ ପ୍ରବନ୍ଧ ସ୍ଥାନ ଲାଭ କରିଛି । ଭାଗବତ ଗୀତାର ମୂଳବନ୍ଧ, ଓଡ଼ିଆ ସାହିତ୍ୟର କ୍ରମପରିଣାମ, ଆର୍ଯ୍ୟଜୀବନ ଓ ଓଡ଼ିଆ ସଂସ୍କୃତି ଓ ସାହିତ୍ୟ ପ୍ରଭୃତି ପାର୍ଶ୍ୱ ଆଲୋଚନାରେ ନୀଳକଣ୍ଠଙ୍କର ବ୍ୟକ୍ତିତ୍ୱ ଏବଂ ସଂସ୍କାରମୁକ୍ତ ମନର ପରିଚୟ ମିଳିଥାଏ । ସେ ହେଉଛନ୍ତି ଦାର୍ଶନିକ ଏବଂ କବି, ଶାସ୍ତ୍ରଜ୍ଞ ଏବଂ ପଣ୍ଡିତ । ବିଶେଷକରି ଭାରତୀୟ ସଂସ୍କୃତି ପରିପ୍ରେକ୍ଷୀରେ ଉତ୍କଳର ଗର୍ବ ଓ ଗୌରବ ଜଗନ୍ନାଥ ସଂସ୍କୃତି ସମ୍ପର୍କରେ ନୀଳକଣ୍ଠଙ୍କ ବ୍ୟାଖ୍ୟା ଅତ୍ୟନ୍ତ ଅଭିନବ ଓ ପ୍ରଭାବଶାଳୀ ।

ଭାଷାର ସ୍ୱଚ୍ଛ ପରିପ୍ରକାଶ, ବିଷୟବସ୍ତୁର ପରିବେଷଣରେ ଗାମ୍ଭୀର୍ଯ୍ୟ, ଗଭୀର ମନନଶୀଳତା, ତୁଳନାତ୍ମକ ଦୃଷ୍ଟିଭଙ୍ଗୀ, ପରମ୍ପରା ବିରୁଦ୍ଧରେ ବିଦ୍ରୋହ, ହୀନ ଅନୁକରଣପ୍ରିୟତା ଉପରେ କଟାକ୍ଷପାତ ଇତ୍ୟାଦି ନୀଳକଣ୍ଠଙ୍କ ପ୍ରବନ୍ଧ କୌଶଳର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିଥାଏ । ତାଙ୍କପରି ସଂସ୍କୃତି-ସଚେତନ ଆଲୋଚକ ଏ ଯୁଗରେ ବିରଳ କହିଲେ ଚଳେ ।

ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ନୀଳକଣ୍ଠଙ୍କର କେତେକ ଉଲ୍ଲେଖଯୋଗ୍ୟ ବକ୍ତବ୍ୟ ଏଠାରେ ଉଲ୍ଲେଖ କରାଗଲା—"ଓଡ଼ିଆ, ପ୍ରାକୃତ ବା ଉତ୍କଳ ସାଧାରଣର କଥିତ ଭାଷା । ଅତଏବ ଏହାର ବର୍ଣ୍ଣବିନ୍ୟାସ ସର୍ବଦା ଲୋକମୁଖରୁ ଗୃହୀତ ହେବ । ଅକ୍ଷରର ଉଚ୍ଚାରଣ ମଧ୍ୟ ଲୋକମୁଖ ଉଚ୍ଚାରଣରେ ଅନୁରୂପ ହେବା ଉଚିତ । ତାହା ନହେଲେ ଭାଷାର ଜୀବ, ଶକ୍ତି ଓ ବର୍ଦ୍ଧିଷ୍ଣୁତା ପ୍ରତିବନ୍ଧ ହେବାର ଆଶଙ୍କା ଅଛି । ସଂସ୍କୃତ ଭାଷାର ଉଚ୍ଚାରଣ ନିୟମରେ ଓଡ଼ିଆର ବର୍ଣ୍ଣବିନ୍ୟାସ କଲେ ଆମ୍ଭମାନଙ୍କର ଉଚ୍ଚାରିତ ଭାଷା ଲୋକରେ ଦୁର୍ବୋଧଗମ୍ୟ ହେବ । ପକ୍ଷାନ୍ତରେ ଆମ୍ଭମାନଙ୍କର ଲିଖିତ ଭାଷା ଲୋକର ଉଚ୍ଚାରଣରେ ଉଚ୍ଚାରିତ ନହେଲେ ତାହା ଯେ କେବଳ ଜାତୀୟ ଭାଷା ନ ହେବ ଏମନ୍ତ ନୁହେଁ, ଭାଷାର ସ୍ଥାୟିତ୍ୱ ଓ ସାର୍ବଜନୀନତା ବିନଷ୍ଟ ହେବ ।"

(ଓଡ଼ିଆ ବର୍ଣ୍ଣ ବିଚାରର ସଂକ୍ଷିପ୍ତ ସୂଚନା)

"ବ୍ୟବହାରର ରୁଚ, ଶିଳ୍ପର ରୁଚ ଏକ ନୁହେଁ । ଯେଉଁମାନେ କବିତାର ଶିଳ୍ପ ଅନୁଭବ କରନ୍ତି, କବିତାରେ ଅଶ୍ଳୀଳତା ଦେଖିବା ପାଇଁ ସେମାନଙ୍କର ଅବକାଶ କାହିଁ ? ଅଶ୍ଳୀଳତା ସାମାଜିକ ବ୍ୟବହାରର କଥା—କାବ୍ୟଶିଳ୍ପର ସେଥିରେ କ୍ଷତି ବୃଦ୍ଧି ନାହିଁ ।

(ଲାବଣ୍ୟବତୀ)

"ଫକୀରମୋହନ ସ୍ପଷ୍ଟତଃ ଇଂରେଜ ପ୍ରଭାବର ଫଳ । ଇଂରେଜ ପ୍ରଭାବର ଫଳ ସତ—କିନ୍ତୁ ଆଜକାଲି ବହୁ ଲେଖକଙ୍କ ପରି କୌଣସି ସ୍ପଷ୍ଟ ଅନୁକରଣର ଫଳ ନୁହଁନ୍ତି । ଫକୀରମୋହନ ଏଇ ଦେଶର, ଏଇ ସମାଜର, ଏଇ ଆଦର୍ଶର ଓ ଏଇ ଆକାଙ୍‌କ୍ଷାର ଅତି ଅନ୍ତରଙ୍ଗ ପ୍ରତିରୂପ ।"

(ଫକୀରମୋହନଙ୍କ ଆଦର୍ଶବାଦ)

"ମଧୁବାବୁଙ୍କ ଭାଷାର ଗୋଟିଏ ବିଶେଷତ୍ୱ, ତାହା ସଙ୍ଗୀତମୟ । ଅନେକ ଆକ୍ଷେପ କରନ୍ତି ତାଙ୍କର ଭାଷା ସଂସ୍କୃତ ଗ୍ରନ୍ଥରେ ଚଳା ଏବଂ ସେହି ହେତୁରୁ ସଂପୂର୍ଣ୍ଣ ସ୍ୱାଭାବିକ ନୁହେଁ । ବାସ୍ତବିକ ସମାସର ଗୁରୁତ୍ୱ, ଶବ୍ଦବିନ୍ୟାସର ଅଭାବନୀୟତା ବାକ୍ୟଗଠନରେ ପ୍ରାଚୀନ ପଦ୍ଧତି, ଓଡ଼ିଆ କ୍ରିୟାମାନଙ୍କର ବହୁଳ ପ୍ରୟୋଗର ଅଭାବ, କୃଦନ୍ତତଦ୍ଧିତାଦିର ବିଶେଷ ଆଶ୍ରୟ, ଭାବପ୍ରକାଶରେ ଶବ୍ଦର ବ୍ୟୟସଙ୍କୋଚ ପ୍ରତି ଅନବଧାନତା, କେବଳ ସନ୍ଦର୍ଭ ସଂପାଦନ ନିମନ୍ତେ ବିଶେଷଣାଦିର ପ୍ରୟୋଗ, ଲେଖନପ୍ରଣାଳୀରେ ଉଚ୍ଛୃଙ୍ଖଳ ସ୍ୱାଧୀନତାର ଅଭାବ, ବିନ୍ୟାସରେ ଅନୁପାତ ପ୍ରତି ବିଶେଷ ଦୃଷ୍ଟି ପ୍ରଭୃତି ଦେଖିଲେ ଏ ମନ୍ତବ୍ୟ କେତେକ ପରିମାଣରେ ସତ୍ୟ ବୋଲି ବୋଧହୁଏ ।

(ଓଡ଼ିଆ ସାହିତ୍ୟରେ ମଧୁସୂଦନ)

"ସମସ୍ତ ପ୍ରାଚୀନ ପନ୍ଥା ଓ ଅଲଙ୍କାର ନିୟମ ପରିତ୍ୟାଗ କରି ରାଧାନାଥ ସ୍ୱାଧୀନ ଭାବରେ ସାହିତ୍ୟ ସ୍ରୋତ ନିମନ୍ତେ ନବୀନ ମାର୍ଗ ନିର୍ଦ୍ଦେଶ କରିଦେଲେ । ସେ ପ୍ରାଚ୍ୟ ପାଶ୍ଚାତ୍ୟର ସାହିତ୍ୟ ଅନୁଧ୍ୟାନ କରି ଓ ସାହିତ୍ୟବିଶେଷର କ୍ରମୋନ୍ନତି ଓ ସମାଜରେ ନବଭାବ ବିକାଶ ପ୍ରତି ଲକ୍ଷ୍ୟ ରଖି ଉଭୟ ସାହିତ୍ୟରୁ ସାର ସଂଗ୍ରହ ପୂର୍ବକ ନିଜର ରୁଚ ଓ ଆଦର୍ଶ ପ୍ରଭୃତି ସ୍ଥିର କରିଥିଲେ ବୋଲି ସ୍ୱୀକାର କରିବାକୁ ହେବ; କିନ୍ତୁ ଅସାର ସଂଗ୍ରହ କରି ନିଚ ଆଦର୍ଶରେ ଅଭିସାର ବର୍ଣ୍ଣନା କରିବା ତାଙ୍କ ହାତରେ ଥିଲି, ସେ ତାହା କରିନାହାନ୍ତି ଏବଂ କୌଣସିଠାରେ ସଂଗ୍ରହ ବା ଅନୁକୃତି ରାଧାନାଥୀ ସ୍ୱାତନ୍ତ୍ର୍ୟରୁ ବିଚ୍ଛିନ୍ନ ନୁହେଁ, ଏହାହିଁ ରାଧାନାଥଙ୍କର ବିଶେଷତ୍ୱ ।

(ରାଧାନାଥ ଓ ଉତ୍କଳ ସାହିତ୍ୟ)

"ସଂକ୍ଷେପରେ ଏହାହିଁ ସାରଳାଦାସ । ସେ ଦେବତା ନୁହଁନ୍ତି । ସେ ଓଡ଼ିଶାର ଦର୍ଶନବନ୍ତ ପୁରୁଷ । ଆଜି ଓଡ଼ିଆ ସଭ୍ୟତା, ଓଡ଼ିଆ ଭାଷା ତଥା ଓଡ଼ିଆ ସାହିତ୍ୟର ସେ ପିତା ଓ ପ୍ରତିଷ୍ଠାତା । ଏହା ଯେ ଦେଖେ, ସେଇ ଏକା ସାରଳାଦାସଙ୍କୁ ଦେଖେ । ଏଥିରୁ ଠିକଏ ହେଲେ ବୁଝିଲେ ଲୋକ ସାରଳାଦାସଙ୍କୁ ବୁଝିବ, ଓଡ଼ିଶାକୁ ବୁଝିବ ଏବଂ ଓଡ଼ିଆଙ୍କୁ ବୁଝିବ ।"

(ସାରଳାଦାସ)

"ଭଞ୍ଜ କହିଲେ, ଆରେ ଓଡ଼ିଆଏ, ଧର୍ମ ନାମରେ ପରତାଟି ପିଟାଅ ନାହିଁ—ପରର ଘର ଭାଙ୍ଗ ନାହିଁ—ନିଜ ଘରେ ବିଭ୍ରାଟ ସୃଷ୍ଟି କରନାହିଁ । ଏହା ଓଡ଼ିଆ ଧର୍ମ ନୁହେଁ । ଯୌନଚର୍ଯାର ବିଳାସ ଯେବେ ଚାହଁ, ତେବେ ଧର୍ମ ନାମରେ କୃଷ୍ଣଙ୍କ ନାମରେ ଏ କଥା କାହିଁକି ? ପୁଣି ସାମାଜିକ ଓ ଗାର୍ହସ୍ଥ୍ୟ ସଂଯମରେ ରହି ଘରେ ମଧ୍ୟ ସେ ସୁବିଧା କରାଯାଇ ପାରେ । ଏଇ ଆମ ରାଜାରାଜୁଡ଼ା ବଡ଼ଲୋକଙ୍କର ଘର ଦେଖ ।"

(ଉପେନ୍ଦ୍ରଭଞ୍ଜ)

"ଏଥିରେ ଭାରତର ସ୍ୱାଧୀନତା ଯଥାର୍ଥ ସାଂସ୍କୃତିକ ପରାଧୀନତାରେ ଯେ ପରିଣତ ହେଉଛି ସେତିକି ନୁହେଁ, ଦାର୍ଶନିକ ଭାରତର ସନାତନ ସମାଜସେବା ତଥା ଯଥାର୍ଥ ଭାରତକୁ ଚହ୍ଲାଇବାର ବିରାଟ ଓ ବଳିଷ୍ଠ ପରମ୍ପରା ଏଥିରେ ଧ୍ୱଂସ ହେଉଛି । ଜୀବୀଧର୍ମରେ ଖାଇପିଇ ରହିଲେ ଏକା ଭାରତ ଭାରତ ହେବ ନାହିଁ । ସାହିତ୍ୟର ମୌଳିକତା ଓ ବଳିଷ୍ଠତା ପୃଥିବୀରେ ଭାରତକୁ ଭାରତ କରିବ ।"

**( ଭାରତ ସାହିତ୍ୟ ଓ ସାହିତ୍ୟରେ ଜୀବୀଧର୍ମ )**

"ଭାରତ ଆଜି ନୂଆ ହୋଇ ସ୍ୱାଧୀନ ହୋଇଛି । ନେତା ଓ ଚାଳକମାନଙ୍କର ଏତେବେଳେ ଅତ୍ୟନ୍ତ ସାବଧାନ ହେବା ଉଚିତ । ମୁଁ ସ୍ୱାଧୀନ ହୋଇଛି ଅତଏବ ଲଙ୍ଗଳା ହୋଇ ଦାଣ୍ଡରେ ଚାଲିଲେ କିଏ କଣ କରିବ । ଏହା ସ୍ୱାଧୀନତାର ମନୋଭାବ ନୁହେଁ । ସଂଯମହିଁ ସ୍ୱାଧୀନତାର ପ୍ରାଣ । ପୁଣି ନିଃସ୍ୱାର୍ଥପରତା ଓ ଯଥାର୍ଥ ସ୍ୱାର୍ଥତ୍ୟାଗ ହେଉଛି ସ୍ୱାଧୀନତାର ମେରୁଦଣ୍ଡ । ଏଥିରେ ଭୁଲ କଲେ ସ୍ୱାଧୀନତା ଘୋର ପରାଧୀନତାରେ ପରିଣତ ହେବ । କେତେକ ଲୋକ ସ୍ୱାଧୀନତା ଭୋଗ କରୁକରୁ ଜନତା ପରାଧୀନତାରେ ସଢ଼ି ଯାଇ କ୍ଷିପ୍ତ ହୋଇ ଉଠିବେ । ସେତେବେଳେ ସେ କ୍ଷିପ୍ତତାର ବେଗ ସମ୍ଭାଳିବା ହୁଏତ ସମ୍ଭବ ହେବନାହିଁ ।"

**( ଭାରତର ନେତାଏ ସାବଧାନ ହୁଅନ୍ତୁ )**

"ଲୋକ ସଂଗ୍ରହ ତଥା ଜନସାଧାରଣର ଭାବ ରକ୍ଷା ପାଇଁ ଏ ବ୍ୟାକୁଳତା ଓ ନିଷ୍ଠା-ପରମ୍ପରାରେ ସମାଜର ଏ ସ୍ଥାୟୀତ୍ୱ କଳ୍ପନା ଓ ତହିଁରେ ବିଶ୍ୱାସ ଏବଂ

ଜ୍ଞାମୀ ଲୋକର ଏ ଦାୟିତ୍ୱବୋଧ, ଧର୍ମଭାବର ଏ ବ୍ୟାପକତା ପୃଥିବୀର ଅନ୍ୟ କୌଣସି ସମାଜରେ ଥିବାର ପ୍ରମାଣ ନାହିଁ । ଆର୍ଯ୍ୟର ଏହାହିଁ ଜୀବନ, ଏବଂ ଏହି ବିଶ୍ୱାସ, କର୍ମନିଷ୍ଠା ଓ ବ୍ୟାପକ ଧର୍ମଭାବରେ ଆର୍ଯ୍ୟ ପୃଥିବୀ ପୃଷ୍ଠରେ ନିଜକୁ ସ୍ଥିର ରଖିଅଛି । ଆର୍ଯ୍ୟଭୂମି ଆଜି ନାନା ଭାବ ନାନା ବହିର୍ବାତ୍ୟାରେ ସଂକ୍ଷୋଭିତ, ନାନା ଆଦର୍ଶରେ ଆଜି ଚମକିତ ଓ ଚଳିତ । ଏତେବେଳେ ଏ ନିଷ୍ଠା ଓ ଅନୁଷ୍ଠାନ ପ୍ରବଣତା ପ୍ରତି ତାର ଦୃଷ୍ଟି ନ ରହିଲେ ଜାତିର ମେରୁଦଣ୍ଡ ଆଉ ରହିବ ନାହିଁ । ଜାତିରେ କେତେଲୋକ ଖାଇପିଇ ସୁଖରେ ରହିଲେ, କେତେଜଣ ଉଚ୍ଚଧର୍ମ ଭାବରେ ବିଗଳିତ ହୋଇ ସାତଦିନରେ ଥରେ ଧର୍ମମନ୍ଦିରକୁ ଯାଇ କେତେଗୁଡ଼ିଏ ଲୋକଙ୍କୁ ଆଖିବୁଜା ଅଭ୍ୟାସ କରାଇଲେ ହେବ ନାହିଁ । ପ୍ରାଣର ଭାବ ଥରେ ଉଠିଗଲେ ଆଉ ଆସିବ କି ?''

**( ଆର୍ଯ୍ୟର କର୍ମନିଷ୍ଠା ଓ ଆନୁଷ୍ଠାନିକତା )**

ଏହିପରି ବହୁ ଉଦାହରଣ ଦିଆଯାଇ ପାରିବ । ନୀଳକଣ୍ଠଙ୍କର ପ୍ରକାଶିତ ଅନେକ ପ୍ରବନ୍ଧ ଓ ଆଲୋଚନା ଏବେ ମଧ୍ୟ ପୁସ୍ତକ ରୂପରେ ଆତ୍ମପ୍ରକାଶ କରିନାହିଁ । ତାହା ଆଲୋଚନା କଲେ ତାଙ୍କର ଚିନ୍ତାର ଦିଗ୍‌ବଳୟ ଯେ କେତେ ପ୍ରସାରିତ ତାହା ଉପଲବ୍‌ଧି କରାଯାଇଥାଏ ।



# ନୀଳକଣ୍ଠ – ଏକ ଅବିସ୍ମରଣୀୟ ବ୍ୟକ୍ତିତ୍ୱ

ଜଣେ ସ୍ୱନାମଧନ୍ୟ ଆଲୋଚକ ଥରେ ଲେଖିଥିଲେ—"ରାଜନୀତିର ନୀଳକଂଠ କାଆଲି ଧୂଳିମାଟିରେ ମିଶିଯିବେ । ମାତ୍ର କୋଣାର୍କ'ର ନୀଳକଂଠ ଅମର ।"

ଲେଖକ ନିଜେ କବି ହୋଇଥିବାରୁ ବୋଧହୁଏ ସାହିତ୍ୟର ମାପକାଠିରେ ନୀଳକଂଠଙ୍କର ବ୍ୟକ୍ତିତ୍ୱ ମାପିବାପାଇଁ ଉଦ୍ୟମ କରିଛନ୍ତି । କିନ୍ତୁ ନୀଳକଂଠ କଣ କେବଳ ଜଣେ ସାହିତ୍ୟିକ ଓ କବି ଥିଲେ ? ଶିକ୍ଷକଜୀବନରେ ସେ ଯେଉଁ କେତୋଟି ଲେଖା ଲେଖିଥିଲେ, ସେଥିରେ ସାହିତ୍ୟପ୍ରୀତି ସହିତ ସଂସ୍କାରପ୍ରାଣତା ଭରପୂର ହୋଇ ରହିଥିଲା । ଜାତୀୟତାର ସ୍ୱାଭିମାନ ଏବଂ ସ୍ୱାଧୀନତାର ପ୍ରାଣପ୍ରତିଷ୍ଠା ପାଇଁ ସେ ଆଜୀବନ ଲଢାଇ କରି ଆସିଥିଲେ । ତାଙ୍କର ସଂଗ୍ରାମର ସ୍ଥଳୀ ଥିଲା ସାଧାରଣ ସ୍କୁଲପଡ଼ିଆରୁ ଆରମ୍ଭ କରି କେନ୍ଦ୍ର ଆସେମ୍ବ୍ଲି ଓ ଜନତାଜନାର୍ଦ୍ଦନର ବକ୍ତୃତାମଞ୍ଚ । ମେଦିନୀପୁର ଠାରୁ ମଞ୍ଜୁଷା ପର୍ଯ୍ୟନ୍ତ ସେ ଝୁଲିମୁଣି ଧରି ବୁଲିଥିଲେ ଓଡ଼ିଶାରେ ବ୍ୟାପକ ଜନଜାଗରଣ ପାଇଁ, ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶର ସଂଗଠନ ଉଦ୍ଦେଶ୍ୟରେ । ସମୟଯାପନ ପାଇଁ କାରାଗାର କକ୍ଷରେ ତାଙ୍କର ବହୁ ମୂଲ୍ୟବାନ ଲେଖା ରୂପ ନେଇଥିଲା ।

ରାଜନୈତିକ ଝଡ଼ଝଞ୍ଜା ମଧ୍ୟରେ ସେ କିପରି ସମୟ ପାଉଥିଲେ ଏତେ ଶାସ୍ତ୍ର, ପୁରାଣ ଗ୍ରନ୍ଥ ଅଧ୍ୟୟନ କରିବାପାଇଁ । ତାଙ୍କର କଥାରେ, ଲେଖାରେ ଏବଂ ବକ୍ତୃତାରେ ଏହି ବହୁମୁଖୀ ପ୍ରତିଭା ପ୍ରତିଫଳିତ ହୋଇ ଯାଉଥିଲା ଏବଂ ସମସ୍ତେ ଆପେ ଆପେ ତାଙ୍କ ପାଖରେ ନତମସ୍ତକ ହୋଇ ଯାଉଥିଲେ ।

ସେ କାଳରେ ତାଙ୍କପରି କେତେଜଣ ବିପ୍ଳବୀ ମଧ୍ୟ ବାହାରିଥିଲେ ? 'ମୋ ହନି' ଆନ୍ଦୋଳନ କେବଳ ଯୌବନର ଝଲକ ମାତ୍ର । ବାଚସ୍ପତି ଆସନରେ ବସି ସେ ଯେଉଁ ସଂଗ୍ରାମରେ ସଫଳତା ଅର୍ଜନ କରିଥିଲେ, ତାହା ଭାରତର ଇତିହାସରେ ଅଦ୍ୱିତୀୟ । ଦ୍ୱିତୀୟ ମହାଯୁଦ୍ଧର ପ୍ରଳୟଙ୍କରୀ ପ୍ରତିକ୍ରିୟା ମଧ୍ୟରେ ଏ ଦେଶର ନେତୃସମାଜ ସାହସ କରିପାରୁ ନଥିଲେ ଇଂରେଜ ସରକାରଙ୍କ ବିରୁଦ୍ଧରେ ପ୍ରତ୍ୟକ୍ଷ ସଂଗ୍ରାମର ଡ଼ାକରା ଦେବାପାଇଁ । ମାତ୍ର ନେତାଜୀ ସୁବାସଚନ୍ଦ୍ର ବୋଷଙ୍କ ସହିତ ସେ

ହାତ ମିଳାଇ ଚରମ ଦୁଃସାହସିକତାର ପରିଚୟ ଦେଇଥିଲେ । ନେତାଜୀଙ୍କର ତିରୋଧାନ ପରେ ତାଙ୍କର ଅନୁଗାମୀଗଣ ଦେଶମଧ୍ୟରେ ନାନାଭାବରେ ନିନ୍ଦିତ ହୋଇଥିଲେ ହେଁ ଇତିହାସ ପ୍ରମାଣ କରିଦେଉଛି ଯେ ସେମାନେ ଥିଲେ ଉଗ୍ର ଜାତୀୟତାବାଦୀ ।

ଏହିପରି ଭାବରେ ନୀଳକଣ୍ଠଙ୍କ କର୍ମଜୀବନ ଥିଲା ବହୁମୁଖୀ ଏବଂ ସୁଦୂର-ପ୍ରସାରୀ । ଶିକ୍ଷା, ସେବା, ସଂସ୍କାର, ରାଜନୀତି ଓ ସାହିତ୍ୟ, ପ୍ରତି କ୍ଷେତ୍ରରେ ତାଙ୍କର ଭୂମିକା ଥିଲା ଅତ୍ୟନ୍ତ ବୈପ୍ଳବିକ । ପାରମ୍ପରିକ ଚିନ୍ତା ଓ ଚେତନାକୁ ତାଙ୍କପରି ଆଉ କିଏ ଏପରି ପ୍ରଚଣ୍ଡଭାବରେ ଆଘାତ କରିଛି । ସାଧାରଣ ଚଳଣି ଓ ଧର୍ମବିଶ୍ୱାସ ମୂଳରେ ମଧ୍ୟ ସେ ଗଭୀର କଟାକ୍ଷ କରିବାକୁ ଛାଡିନାହାଁନ୍ତି ।

ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟରେ ତାଙ୍କର ଅଗାଧ ପ୍ରବେଶ ଥିଲା । ଉଭୟ ଦେଶର ଧର୍ମ, ଦର୍ଶନ ଓ ଆଧ୍ୟାତ୍ମିକ ନୀତି ସଂପର୍କରେ ସେ ନିରବଚ୍ଛିନ୍ନ ଅନୁଶୀଳନ କରି ଚାଲିଥିଲେ । ମାତ୍ର ସେ କାହାରି ଦ୍ୱାରା ପ୍ରଭାବିତ ନଥିଲେ କିମ୍ବା କାହାକୁ ପ୍ରଭାବିତ କରି ଏକ ମତ ଜାହିର କରିବାକୁ ଚେଷ୍ଟା କରୁଥିଲେ ।

ସେ ଥିଲେ ଏଇ ଦେଶର ପ୍ରାଚୀନ ସଂସ୍କୃତିର ପ୍ରବକ୍ତା, ନୂତନ ଦୃଷ୍ଟିକୋଣରୁ ଭାରତୀୟ ଆର୍ଯ୍ୟ ସଂସ୍କୃତି ଏବଂ କଳିଙ୍ଗର ଜଗନ୍ନାଥ ବିଭୂତି ବ୍ୟାଖ୍ୟା କରି ଏକ ନୂତନ ମୂଲ୍ୟବୋଧ ସୃଷ୍ଟି କରିବାରେ ପ୍ରଯତ୍ନ ଥିଲେ ।

ଜଣେ ଆଦର୍ଶ ଶିକ୍ଷକ ଏବଂ ସାମ୍ବାଦିକ ହିସାବରେ ତାଙ୍କର ସାଧନା ଅପରି-ସୀମ । ନୀଳକଣ୍ଠଙ୍କ ସମ୍ପାଦିତ 'ନବଭାରତ' ଓଡ଼ିଶାର ସଂସ୍କୃତି, ସାହିତ୍ୟ ଓ ସାଧାରଣ କ୍ଷେତ୍ରରେ ଏକ ଅନୁଷ୍ଠାନ । ଓଡିଶାର ସାମ୍ବାଦିକତା କ୍ଷେତ୍ରରେ 'ନବଭାରତ' ଅପୂରଣୀୟ । 'ନବଭାରତ' ପରି ସାହିତ୍ୟ-ପତ୍ରିକା ପୂର୍ବରୁ କେବେହେଲେ ନଥିଲା, ଆଜି ପର୍ଯ୍ୟନ୍ତ ତାର ଅଭାବ ପୂରଣ ହୋଇ ପାରିନାହିଁ । କାରଣ ନୀଳକଣ୍ଠଙ୍କ ପରି ଜଣେ ସର୍ବମାନ୍ୟ ଗୁଣୀ ସମ୍ପାଦକ ଆଉ ସେ ସ୍ଥାନ ପୂରଣ କରି ପାରିନାହାନ୍ତି ।

ନବଭାରତରେ ପ୍ରକାଶିତ ତାଙ୍କର ପ୍ରବନ୍ଧ—ଆଲୋଚନା ଏବଂ ସମ୍ପାଦକୀୟ ଅଗ୍ରଲେଖା ଯେଉଁଦିନ ସଂକଳିତ ହୋଇ ପ୍ରକାଶ ପାଇବ, ତାହା ଓଡ଼ିଆ ସାହିତ୍ୟର ଏକ ଅଭାବ ପୂରଣ କରିବ ଏବଂ ନୀଳକଣ୍ଠଙ୍କୁ ଚିହ୍ନି ଚିହ୍ନାଇବାପାଇଁ ଅଧିକ ସାହାଯ୍ୟ କରିବ ।

ଏ ପର୍ଯ୍ୟନ୍ତ ସାମ୍ପ୍ରତିକ କାଳ ଓଡ଼ିଶାର ରାଜନୈତିକ, ସାମାଜିକ ଅଥବା ସାଂସ୍କୃତିକ ଇତିହାସ ଲେଖା ହୋଇନାହିଁ । ଚଳିତ ଶତାବ୍ଦୀର ଇତିହାସ ସହିତ ନୀଳକଣ୍ଠଙ୍କର ସାଧନା ଓତଃପ୍ରୋତ ଭାବରେ ଜଡ଼ିତ । ତାଙ୍କୁ ବାଦ ଦେଇ ଏହି

ଶତାବ୍ଦୀର କୌଣସି ବିଷୟ ଆଲୋଚନା କରାଯାଇ ପାରିବ ନାହିଁ । ତେଣୁ ତାଙ୍କର ବ୍ୟକ୍ତିତ୍ୱକୁ କେବଳ ଏକ ସାହିତ୍ୟ-ସାଧକ ଭାବରେ ସୀମିତ କରିଦେଲେ ତାଙ୍କର ମହାନ ସାଧନା ପ୍ରତି ଉପଯୁକ୍ତ ବିଚାର କରାଯିବ ନାହିଁ । ଓଡ଼ିଆ ସଂସ୍କୃତିର ପ୍ରକୃତ ରୂପବିଭବ ମଧ୍ୟ ଅବିକଶିତ ହୋଇ ରହିଯିବ ।

ସେଥିପାଇଁ ନୀଳକଣ୍ଠଙ୍କ ଆଲୋଚନା ଏକ ବିସ୍ତାରିତ ପୃଷ୍ଠଭୂମିର ଅପେକ୍ଷା ରଖେ । ବିଭିନ୍ନ କ୍ଷେତ୍ରରେ ତାଙ୍କର ସାଧନା ଅମରତ୍ୱ ଲାଭ କରିଅଛି । ଏହା ଏକ ଅବିସମ୍ବାଦିତ ସତ୍ୟ ।



# ପରିଶିଷ୍ଟ (୨)

## ଗ୍ରନ୍ଥାବଳୀରେ ନ ଥିବା ଲେଖା—

ନୀଳକଣ୍ଠଙ୍କ ଆଲୋଚନା ପାଇଁ ଆଲୋଚକଗଣ ତାଙ୍କର ଗ୍ରନ୍ଥାବଳୀର ସାହାଯ୍ୟ ନେଉଥାନ୍ତି । ମାତ୍ର ସେଥିରେ ତାଙ୍କର ସମସ୍ତ ଲେଖା ଆଜି ପର୍ଯ୍ୟନ୍ତ ସଂକଳିତ ହୋଇ ପାରିନାହିଁ । ଅଧ୍ୟାପିକା କୁମୁଦିନୀ ମିଶ୍ର ବହୁ ପରିଶ୍ରମ କରି ସେହି ଲେଖାଗୁଡ଼ିକର ଏକ ତାଲିକା ପ୍ରକାଶ କରିଛନ୍ତି । ଭବିଷ୍ୟତରେ ଆଲୋଚକ-ମାନଙ୍କର ସୁବିଧା ପାଇଁ ତାହା ଏଠାରେ ପ୍ରଦତ୍ତ ହେଲା—(*)

| | | |
|---|---|---|
| ୧୯୦୬ | ମହାତ୍ମା ଚନ୍ଦ୍ରଶେଖର ସିଂହ ସାମନ୍ତ | ଉତ୍କଳ ସାହିତ୍ୟ ୧୦।୩-୪ |
| ୧୯୦୭ | ସ୍ତ୍ରୀ ଶିକ୍ଷା | ମୁକୁର ୧।୧୦-୧୧ |
| ୧୯୦୯ | ତନ୍ତ୍ର ଉପାସନା ସମ୍ବନ୍ଧରେ ଦୁଇ ଏକ କଥା | ମୁକୁର ୩।୧୧-୧୨ |
| ୧୯୧୫—୧୯୧୭ | ଉଦ୍ଭିଦ ରହସ୍ୟ | ସତ୍ୟବାଦୀ ୧।୮-୯ରୁ ୨।୮-୧୨ |
| ୧୯୧୭ | ବକ୍ରମାଦତ୍ୟ ଓ କାଳିଦାସ | ସତ୍ୟବାଦୀ ୩।୧-୨ |
| ୧୯୧୭ | ଚିତ୍ର ଓ କବିତାରେ କଳାର କ୍ରମ | ସତ୍ୟବାଦୀ ୩।୩-୪, ୫-୬ |
| ୧୯୧୯ | ଲୌକିକ ବଜ୍ଞାନ | ସତ୍ୟବାଦୀ ୫।୬-୭ |
| ୧୯୧୯ | ଜାତୀୟତାର ଭିତ୍ତିଭୂମି | ସତ୍ୟବାଦୀ ୫।୮-୯ |
| ୧୯୧୯ | ଶିକ୍ଷାର ଭବିଷ୍ୟତ | ସତ୍ୟବାଦୀ ୫।୮-୯ |
| ୧୯୧୯ | ପୃଥିବୀର ଗୃହ ପ୍ରଧାନ ଧର୍ମ | ସତ୍ୟବାଦୀ ୫।୮ ୯ |
| ୧୯୧୯ | କର୍ମଜୀବନ ଓ ବ୍ୟବହାର ବିଚକ୍ଷଣତା | ସତ୍ୟବାଦୀ ୫।୮-୯ |
| ୧୯୨୦ | ଯୌବନର ପ୍ରଭାବ ଓ ପ୍ରତିଷ୍ଠା | ସତ୍ୟବାଦୀ ୬।୪ |
| ୧୯୨୦ | ଇଂରେଜୀ ଶିକ୍ଷାର ମୋହ | ସତ୍ୟବାଦୀ ୬।୫ |
| ୧୯୨୮ | ପ୍ରାଚୀ ଗ୍ରନ୍ଥମାଳା | ସମାଜ ୧।୮।୧୯୨୮ |
| ୧୯୩୪ | ଆମ ବର୍ଷଗଣନା ଓ ମାସ ନାମ | ନବଭାରତ ୧।୧ |
| ୧୯୩୫ | ବିକାଶ ଏ ବିପ୍ଳବ | ନବଭାରତ ୧।୨ |
| | ଐତିହାସିକ ସୂଚନା | ନବଭାରତ ୧।୨, ୧।୩ |
| | ଜଗନ୍ନାଥ ଧର୍ମ (୧) (୨) | |
| | ସାହିତ୍ୟିକ ଟିପ୍ପଣୀ | ନବଭାରତ ୧।୩, ୧।୪, ୧।୫ |

| | | |
|---|---|---|
| ୧୯୩୫ | ଭାରତର ଧର୍ମ ବିକାଶ | ନବଭାରତ ୧।୭, ୧।୮ |
| | କଂଗ୍ରେସର ଇତିହାସ | ନବଭାରତ ୧।୯, ୧।୧୦ |
| | ଅର୍ଥସଙ୍କଟ ଓ ଭାରତୀୟ ଅର୍ଥନୀତି | ନବଭାରତ ୧।୧୧, ୧।୧୨ |
| | ବିଧାତାଙ୍କ ସୃଷ୍ଟି | ନବଭାରତ ୨।୨ |
| | ଭାରତର ନୂଆ ଶାସନ ଓ ପ୍ରାଦେଶିକ ସ୍ୱାଧୀନତା | ନବଭାରତ ୨।୩ |
| ୧୯୩୬ | ସତ୍ୟଂ ଶିବଂ ସୁନ୍ଦରଂ | ନବଭାରତ ୩।୧ |
| ୧୯୩୭ | ପ୍ରଚାରକ ଅନନ୍ତ ମିଶ୍ର | ନବଭାରତ ୩।୧୦ |
| | ପରାଧୀନ କିଏ ? | ନବଭାରତ ୩।୧୧-୧୨ |
| | ମାନବପ୍ରଗତିର ଧାରା | ନବଭାରତ ୪।୫, ୪।୭ |
| ୧୯୩୮ | ଜମିଦାରୀ, ମଠ ଓ ଭବିଷ୍ୟତ | ନବଭାରତ ୪।୮, ୪।୯, ୪।୧୦ ଓ ୫।୩ |
| ୧୯୩୯ | ଚୌକିଦାରୀ କମିଟି | ନବଭାରତ ୫।୫, ୬ |
| | ଜମିଦାରୀ ଓ ଜମିଦାର | ନବଭାରତ ୫।୯ |
| | କଂଗ୍ରେସ ସରକାର ଓ କଂଗ୍ରେସ କମିଟି | ନବଭାରତ ୫।୧୦ |
| | ପ୍ରଜାସ୍ୱତ୍ୱ ଓ ଆଇନ | ନବଭାରତ ୬।୧ |
| ୧୯୪୦ | ଅଦ୍ୱୈତବାଦ | ନବଭାରତ ୬।୭ |
| | ସତୀତ୍ୱ ଓ ନାରୀ | ନବଭାରତ ୬।୮, ୬।୯ ୬।୧୦, ୬।୧୧ |
| | ଅହିଂସା ଓ ସାମାଜିକ ନୀତି | ନବଭାରତ ୭।୨ |
| ୧୯୪୧ | ଗାନ୍ଧୀଙ୍କ କଂଗ୍ରେସ ନୀତି | ନବଭାରତ ୭।୫-୮ |
| ୧୯୪୧ | ସ୍ୱର୍ଗତ କବି ରବୀନ୍ଦ୍ରନାଥ | ନବଭାରତ ୮।୧ |
| ୧୯୪୬ | ବିଶ୍ୱ ସଂସ୍କୃତିକୁ ଓଡ଼ିଶାର ଦାନ | ନବଭାରତ (ନୂଆପ୍ରସ୍ଥ) ୧।୧ |
| ୧୯୪୭ | ଓଡ଼ିଶାରେ ଅଣଓଡ଼ିଆଙ୍କ ପରମ୍ପରା | ନବଭାରତ ୧।୨ |
| | ଭୌମବଂଶର କାଳ ନିରୂପଣରେ ସଙ୍କେତ | ନବଭାରତ ୧।୩ |
| | ଆମ ଋତୁ ଗଣନା | ନବଭାରତ ୧।୭ |
| | ସାମ୍ୟବାଦ ଭୌତିକ ଓ ଆତ୍ମିକ | ନବଭାରତ ୧।୮ |
| | ଆମେ ସ୍ୱାଧୀନ ଆମେ ମୁକ୍ତ | ନବଭାରତ ୧।୯ |
| ୧୯୪୯ | ନାମେ ଭକ୍ତ | ନବଭାରତ ୭।୪-୫ |
| ୧୯୫୦ | ଭାଗବତ ଧର୍ମ (୧) (୨) | ନବଭାରତ ୨।୬-୭, ୨-୮ |

୧୯୫୦ ଭାରତ ସାହିତ୍ୟ ଓ ସାହିତ୍ୟରେ ନବଭାରତ-ନୂଆପ୍ରସ୍ଥ ୬।୧୧
ଜାତୀ ଧର୍ମ
ବିଶ୍ୱଦର୍ଶନରେ ମା' ବାପ ନବଭାରତ ୬-୧୨
୧୯୫୪-୫୫ ସାରଳାଦାସଙ୍କ ଧର୍ମ ଉତ୍କଳ ସାହିତ୍ୟ-ନୂଆପ୍ରସ୍ଥ ୧-୬
ରଥଯାତ୍ରା ୧।୪
ଜଗନ୍ନାଥ ଧର୍ମ ୧।୯
ପ୍ରାଥମିକ ଶିକ୍ଷା ଓ ଶିକ୍ଷକ ୬।୩

୧୯୫୮ ଭାରତୀୟ ସଂସ୍କୃତିକୁ ଓଡ଼ିଶାର ଦାନ ଝଙ୍କାର ୧୦।୬
୧୯୬୧ ଉତ୍କଳୀୟ ସଂସ୍କୃତିରେ ଉତ୍ତର ଓ
ଦକ୍ଷିଣ ଭାରତୀୟ ପ୍ରଭାବ ,, ୧.୬।୧୧
୧୯୬୦ ସାମ୍ୟ ଓ ମୈତ୍ରୀ ସମାଜ ୩୬ତମ ଶ୍ରାଦ୍ଧସଂଖ୍ୟା

## ଇଂରାଜୀ ପ୍ରବନ୍ଧ—

୧୯୨୫ ଜାନୁଆରୀ— Control of Education ସ୍ୱଦେଶମିତ୍ରମ୍
୧୯୩୦ ଡିସେମ୍ବର ୨୯—The ideal and outlook of education in India and the East (Indian Educational conference Benaras)
୧୯୪୬ ଡିସେମ୍ବର ୨୬—The cult of Jagannath, ndian History Congress-12th session

୧୯୫୮ ଏପ୍ରିଲ୍—Hints on the significance and H.story of Jagannath—Orissa Historical Research Journal 7-1
,, ଅକ୍ଟୋବର Om 7|3 4
୧୯୫୯ ଏପ୍ରିଲ୍ Oriya language and Culture 8|1

## ଅଭିଭାଷଣ

୧୯୩୮ ଏପ୍ରିଲ ୬୩ ନିଖିଳ ଉତ୍କଳ ସାହିତ୍ୟ ସମ୍ମିଳନୀ—
ସଭାପତି ଅଭିଭାଷଣ
୧୯୪୦ ଏପ୍ରିଲ ୬୩ ବାରିପଦା ସାହିତ୍ୟ ସମାଜ ବାର୍ଷିକ ଉତ୍ସବରେ
ସଭାପତି ଅଭିଭାଷଣ
୧୯୫୬ ମେ ୧୬ ଭକ୍ତକବି ଜୟନ୍ତୀ—ସଭାପତି ଅଭିଭାଷଣ

୧୯୪୭ ମାର୍ଚ୍ଚ ୧୦-୧୧ ପୂର୍ବ ଦେଶୀୟ ରାଜ୍ୟ ପ୍ରଜାପରିଷଦରେ
ଉଦ୍‌ବୋଧନ

୧୯୫୩ ଜାନୁଆରୀ ୩୧ ରେଭେନ୍‌ସା କଲେଜ ପୁରାତନ ଛାତ୍ର ସମ୍ମେଳନରେ
ପ୍ରଧାନଅତିଥି ଭାଷଣ

୧୯୫୯ ଅକ୍ଟୋବର ୩ ସଭାପତି ଅଭିଭାଷଣ,
ନିଖିଳଭାରତ ଓରିଏଣ୍ଟାଲ
କନଫରେନସ୍, ଭୁବନେଶ୍ୱର ।

୧୧୫୯ ଡିସେମ୍ବର ୩୦ ଫିଲୋସଫିକାଲ୍ ଡେଭଲପ୍‌ମେଣ୍ଟ
ଇନ୍ ଓଡ଼ିଶା—ଭାରତୀୟ ଦର୍ଶନ କଂଗ୍ରେସ ୩୪ଶ
ଅଧିବେଶନ

## ଗ୍ରନ୍ଥାବଳୀରେ ନଥିବା କବିତା

| | | | |
|---|---|---|---|
| ୧୯୦୯ | ଆଦର୍ଶ ତାରା | ଉତ୍କଳ ସାହିତ୍ୟ | ୧୨।୧୦ |
| ୧୯୧୧ | ବକ କର୍କଟ କଥା | ମୁକୁର | ୬।୧ |
| ୧୯୧୧ | ବଧୂ ଓ ବାସନ୍ତୀ | ମୁକୁର | ୬।୭ |
| ୧୯୧୧ | ବର୍ଷର ଶେଷ ଗୋଲ୍ପ | ଉତ୍କଳ ସାହିତ୍ୟ | ୧୫।୭ |
| ୧୯୧୨ | ଶ୍ରୀପଞ୍ଚମୀ | ଉତ୍କଳ ସାହିତ୍ୟ | ୧୫।୭ |
| ୧୯୧୫ | ବାଣୀ ଉଦ୍‌ବୋଧନ | ସତ୍ୟବାଦୀ | ୧।୧ |
| ୧୯୧୬ | ଅଶ୍ରୁ | ମୁକୁର | ୧୦।୧୦ |
| ୧୯୧୬-୧୭ | ବାଣୀବନ୍ଦନା ଗୀତ | ସତ୍ୟବାଦୀ | ୨।୮-୧୨ |
| ୧୯୧୭ | ସଂକ୍ରା ନ | ସତ୍ୟବାଦୀ | ୩।୧-୨ |
| ୧୯୧୭ | ପ୍ରାଣର ଧ୍ୱନି | ସତ୍ୟବାଦୀ | ୩।୩-୪ |
| ୧୯୧୭ | ପ୍ରେମିକର ଉଚ୍ଛ୍ୱାସ | ସତ୍ୟବାଦୀ | ୩।୫-୬ |
| ୧୯୧୭ | କବି ଓ କବିତା | ସତ୍ୟବାଦୀ | ୩।୭-୮ |
| ୧୯୧୮-୧୯ | ଭୋଗ ଓ ତ୍ୟାଗ | ସତ୍ୟବାଦୀ | ୪।୮-୧୨ |
| ୧୯୧୮-୧୯ | ପ୍ରୀତି ରହସ୍ୟ | ସତ୍ୟବାଦୀ | ୪।୮-୧୨ |
| ୧୯୧୯ | ଚଷାପୁଅ ପ୍ରତି | ସତ୍ୟବାଦୀ | ୫।୩-୪ |
| ୧୯୨୦ | ଷୁନା ଓ ସାଧୁ | ସତ୍ୟବାଦୀ | ୬।୫ |
| ୧୯୩୪ | ଜୟ ନବଭାରତ ସୁନ୍ଦର ହେ | ନବଭାରତ | ୧-୧ |

## ଗ୍ରନ୍ଥାବଳୀରେ ନଥିବା କେତେକ ଗ୍ରନ୍ଥ

୧୯୩୧ ଓଡ଼ିଆ ବ୍ୟାକରଣ
୧୯୩୬ ଗୀତା (ଭାଷ୍ୟ)
୧୯୫୦ ପ୍ରାଥମିକ ସାହିତ୍ୟ (ପ୍ରଥମ ଓ ଦ୍ୱିତୀୟ ଭାଗ)
୧୯୫୦ ସାହିତ୍ୟ ସଖା (ପ୍ରଥମ ଓ ଦ୍ୱିତୀୟ ଭାଗ)
୧୯୫୪ ଓଡ଼ିଆ ଭାଷା ଓ ସାହିତ୍ୟ
୧୯୫୯ Speeches and Remarks of Pandit Nilakantha Das ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରସ୍ତୁତ ଅଭିନନ୍ଦନ ଗ୍ରନ୍ଥ ।



✱ ପ୍ରଜାତନ୍ତ୍ର ୪।୮।୮୩—ନୀଳକଣ୍ଠ ଗ୍ରନ୍ଥାବଳୀରେ ପ୍ରକାଶ ପାଇ ନଥିବା ରଚନାବଳୀର ତାଲିକା ଅଧ୍ୟାପିକା କୁମୁଦିନୀ ମିଶ୍ର

## ପରିଶିଷ୍ଟ-୨

### ୧୯୧୫ ସାଲରେ ପ୍ରେରିତ ବନ୍ଧୁଙ୍କ ନିକଟକୁ ନୀଳକଂଠଙ୍କ ପତ୍ର

Satyabadi School
P. O. Satyabadi
27th. May, 1915

My dear Sushil,

Your sweet letter is to hand. I wish I had the power of language to express how I felt as I read your letter over and over again in the forgetfulness of self for a time. The first paragraph of your poetic prose struck the very vein of my youthful association and I do not know how of a sudden I was put in mind of that lost friend of ours, the sweet companion of my silent solitude even now though we have been bodily separated from him for these two years. I mean Jambeswar. The days when Jambeswar, you and myself were passing hours of pure pleasant recreation in the Cuttack Hostel seemed to me to be enjoyed over again. But a moment dispelled my charm and to my dissapointment I was thrown back into this solitary room of the Hostel when there are now none to disturb me as my children are all gone home to enjoy their summer holidays But *I shall not be only a dreamer of the past, I have got confidence in self and also have hopes of the future, without which life would be but a series of miseries. No association is ever in vain. No friendship is lost in estrangement nor is a friend ever missed in the world where all work is from soul to soul.* You may be thousand miles away estranged not only in life's work and vocation but even in feelings and sentiments but I never for a moment had myself to believe that a tie of friendship once established is for

nothing. We sometimes blindly grieve for things we seem to lose, but in reality of things there is no place for such grief. It is given to man for the peculiar pleasure in grieving. This robust optimism is, so to speak, the main-spring of the world-system and I believe in it. Dreams of the past is naturally linked to this vision of the future.

You ask why I did not write to you anything regarding myself, my life, work and ambition. *My life, work and ambition, everything, to be plain with you, has been this Satyabadi school. This school has been practically my home and study. You perhaps don't remember that in our school-boy-days something like this was my ambition in life.* Even then I was thinking of a mission of education in this province of Orissa, which inspite of its glorious past, has been so very backward in every respect during the long years of Marahatta and British reign. We now make an essay of our powers in this humble school, which more workers being found, may in time turn to be the nucleus of such a mission. I tell you these things very privately, as I feel sure you won't be satisfied unless I tell you something of my real intentions.

My literary proclivities, they require literary attainments of which I have none of worth or importance. We have however started of late a magazine with which we are all busy in addition to our duties at school and Hostel. We also intend writing books for the education of our children and the mass. Oriya literature you know is badly in want of books We are also collecting materials for writing a big history of Orissa in English. We don't know whether we shall be upto the task. But we shall at least indicate the way for our successors to follow. Can you any way help me in this matter ? You say, you write every now and then. I read only one or two of your contributions in University magazine when I was at Calcutta. I now subscribe Modern Review. Do you write in Grihasta or Bharatavarsa ? In which paper do you write now I wish to have pleasure of reading your writings from time to time.

You ask whether I am married. You perhaps don't remember that I was married just 15 days before our entrance examination. My real marriage took place 4 or 5 years later and I have been father of a son now 3 years old.

I am surprised you remember my village address or at least have been able to find it out in your note—book. But I may tell you, that is no longer my address. *My address is now this school. I have practically though not formally, Left home and always remain with my boys in the Hostel.* Our Hostel is of a residential character. 12 teachers remain here with over 320 of the boys. Both teachers and students have the same messing and they live, dine and even play together.

I remember Bhujanga. Remember to have seen him in Calcutta He seems a bit absent minded. He might be thinking worthien things than mixing with friends. Have you studied him well ? I should not at this distance say anything more least I should be found unjust in my judgement of him.

Ramesh is all right. I believe, I think of opening up correspondence with him. What do you say ? Bichitrananda and Bhubanananda you like to be informed of them. Bichitrananda is now a pleader at Cuttack after passing the B. L. examination. Bhubanananda after taking his B. Sc. degree at Glasgow is now employed in a workshop at Bristol. He is also a B. E. of the Calcutta University.

You have at last taken to the profession of a pleader. You say the more you enter into the study of law the more you like it, so am I in my field. *The more I gather experience as a teacher the more I like to be with children. I wish to die on the chair of a teacher. Always bright sunny faces around me I now live in a fairy world.* Here I see man in his purest essence, untouched by the sad complexities of advance life esp ecially of a civilized race.

You write, you will send me a copy of the Bharatvarsa-that number of it in which the article on our school is out. I thank you for it, if you are at all ready to accept such formal thanks from a friend whose sincere feelings ought to have been much deeper than what can be given out by such poor formalities of the west.

I hope you are all right.

Affectionately yours
Nilakantha



## ସ୍କୁଲ ଛାତ୍ର ହିସାବରେ ଡାକ୍ତର ବନ୍ଦମ ଦାସଙ୍କ ଘରକୁ ଚିଠି

୫ । ୭ । ୧୯୩୯

କଟକ—ବୁଧବାର

ବୋଉ,

ମୋର ନମସ୍କାର ଗ୍ରହଣ କରିବୁ । ରମା ଉଦ ପ୍ରଭୃତିଙ୍କୁ ମୋର ଆଶୀର୍ବାଦ । ତୁମମାନଙ୍କ ଦେହ କିପରି ଅଛି ? **ମୁଁ ଶୁଣୁଛି ନନା ଏଠାକୁ ଆସିଥିଲେ, କିନ୍ତୁ ମୋ ଦେହ ଖରାପ ଥିବାରୁ ମୋର ତାଙ୍କ ସଙ୍ଗେ ଦେଖା ହୋଇ ପାରିଲା ନାହିଁ** । ଗାଁରୁ ଆସିବା ସଙ୍ଗେ ସଙ୍ଗେ ଗୋଟେ ଗୋଲ ବାହାରି ଜର ହେଲା କିନ୍ତୁ ଔଷଧ ପ୍ରଭୃତି ଦେବାରେ ସେ ଗୋଟେ ପ୍ରକାର ବାଟକୁ ଆସିଲା ବେଳକୁ ହଠାତ୍ ହଗା ଓ ଖୁବ୍ ଜର ହେଲା । ତାର ଦିନେ ଦୁଇଦିନ ପରେ ନାଲରକ୍ତ ହଗା ବାହାରି ପଡ଼ିଥିଲା । କିନ୍ତୁ ଔଷଧ ପ୍ରଭୃତି ଖାଇବାରେ ସବୁ ଭଲ ହୋଇଗଲାଣି । ମୁଁ ଖାଇବା ପିଇବା ଏତେ ଜଗୁଥିବା ସ୍ଥଳେ ଏପରି କାହିଁକି ହେଉଛି ମୁଁ କିଛି ବୁଝିପାରୁ ନାହିଁ । ଯାହାହେଉ ବର୍ତ୍ତମାନ ଭଲ ଅଛି କିନ୍ତୁ ଭାତ ଖାଇନାହିଁ । ଆଇଲାଦିନୁ ମାମୁଁଙ୍କ ଘରଆଡେ ଯାଇନାହିଁ । ଏପର୍ଯ୍ୟନ୍ତ ମଧ ବଲ ପାଇନାହିଁ । **ଯାହା ପଇସା ପତ୍ର ଥିଲା ସବୁ ସରିଗଲାଣି । ନନା ଥିଲେ ତାଙ୍କୁ ପଠାଇବାକୁ କହିବୁ** । ନନା କେବେ କଟକ ଆସିବେ ଏବଂ କେବେ ବମ୍ବେ ଯିବେ ଲେଖିବୁ । ତାହେଲେ ମୁଁ ତାଙ୍କ ପାଖକୁ କିମ୍ବା ଷ୍ଟେସନକୁ ଯିବି । ଆଉ ସବୁ ଘରର ଖବର କ'ଣ ? କିଛି ମନ ବ୍ୟସ୍ତ କରିବୁ ନାହିଁ ।

ଇତି

ତୋର ସ୍ନେହାଧୀନ

ବନ୍ଦମ

ଏହି ପତ୍ର ଦୁଇଟି ନୀଳକଣ୍ଠ ଦାସଙ୍କ ଦ୍ୱିତୀୟ ପୁତ୍ର ଡକ୍ଟର ବନ୍ଦମ ଦାସ ସଦୟ ହୋଇ ଦେଇଛନ୍ତି ପ୍ରକାଶ କରିବା ପାଇଁ ।

ଅତ୍ୟନ୍ତ ଦୁଃଖର କଥା ଯେ ନୀଳକଣ୍ଠଙ୍କର ପତ୍ରାବଳୀ ଏ ପର୍ଯ୍ୟନ୍ତ ସଂଗୃହୀତ ହୋଇନାହିଁ । ସେ ଜଣେ ସର୍ବଭାରତୀୟ ସର୍ବମାନ୍ୟ ନେତା ଓ ଚିନ୍ତାଶୀଳ ବ୍ୟକ୍ତିତ୍ୱ ଥିଲେ । ଭାରତର ବହୁ ଜନସେବୀ ଏବଂ ନେତୃସ୍ଥାନୀୟ ବ୍ୟକ୍ତିଙ୍କୁ ସେ ପତ୍ର ଲେଖିଥିବେ ଏବଂ ପତ୍ରଲାଭ କରିଥିବେ । ସେଗୁଡ଼ିକ ଏକାଠି ହେଲେ ତାଙ୍କର ବିଶାଳ କର୍ମପରିସର ଓ ସାଧନା ସମ୍ପର୍କରେ ଉପଯୁକ୍ତ ଧାରଣା ହୋଇପାରିବ ।

ଇଂରେଜୀ ଚିଠିରେ ଜଣାଯାଉଛି ସେ କପରି ଶିକ୍ଷକ ଜୀବନକୁ ଆଦର୍ଶର ଅନୁରୋଧରେ ଗ୍ରହଣ କରିଥିଲେ ଏବଂ ଶିକ୍ଷକ ଆସନରେ ଥାଇ ମୃତ୍ୟୁ ହେଲେ ଚରମ ଭାଗ୍ୟବାନ ବୋଲି ମନେ କରିବେ, ସେଇ ଆଶା ପୋଷଣ କରିଥିଲେ ଯୌବନ-କାଳରେ । ଗାଁ ପାଖରେ ଥାଇ ମଧ୍ୟ ସେ ଏକପ୍ରକାର ଅନାସକ୍ତ ଜୀବନଯାପନ କରୁଥିଲେ ।

କଣ୍ଟକ କର୍ମଅବସରରେ ଥାଇ ମଧ୍ୟ ସେ ନିଜର ବାଳୁତ ପିଲାକୁ ସ୍କୁଲ ହଷ୍ଟେଲରେ ଯାଇ ଦେଖି ଆସି ପାରୁ ନ ଥିଲେ । ଭାଗ୍ୟ ଆଦରି ସେ ଦିନର ସ୍କୁଲ ବାଳକ ବିକ୍ରମ ତାଙ୍କର ମା'ଙ୍କ ପାଖକୁ ଚିଠି ଲେଖିଛନ୍ତି ମା' ଯେପରି ମନ ଦୁଃଖ ନ କରିବେ । ରାଜନୀତିକ ପରିବାରରେ କେବଳ ନେତା ବା କର୍ମୀ ତ୍ୟାଗୀ ହୁଅନ୍ତି ନାହିଁ, ତାର ପରିବାର ମଧ୍ୟ ଏହି ଦୁଃଖର ସ୍ରୋତରେ ଉବେଇ ଟୁବେଇ ହେଉଥାଏ । ନୀଳକଣ୍ଠଙ୍କ ପୁତ୍ର ହୋଇ ମଧ୍ୟ ବିକ୍ରମ ଅତ୍ୟନ୍ତ ଅସ୍ୱଚ୍ଛଳ ଅବସ୍ଥାରେ ସ୍କୁଲଜୀବନ ଅତିବାହିତ କରୁଥିଲେ ।

ସତ୍ୟବାଦୀ ସ୍କୁଲ ଥିଲା ନୀଳକଣ୍ଠଙ୍କର ପବିତ୍ର ସାଧନାର ପୀଠ । ସେ ଏଥିପାଇଁ ସବୁକିଛି ଭୁଲି ଯାଇଥିଲେ । ସବୁ କିଛି ତ୍ୟାଗ କରିବାକୁ ପ୍ରସ୍ତୁତ ଥିଲେ । ସେ ମନେ କରୁଥିଲେ ଯେ ଶିଶୁମାନଙ୍କ ଗହଣରେ ସେ ପରିବାରଜରେ ଚଳପ୍ରେରା କରୁଛନ୍ତି । ସେଠାରେ ଛନ୍ଦକପଟ ନାହିଁ । ସାଂସାରିକ ମାୟାଚ୍ଛନ୍ନ ଭୁଲବାଜି ନାହିଁ । ଅଛି କେବଳ ସ୍ନେହ, ପ୍ରେମ ଓ ତ୍ୟାଗର ସୁରକ୍ଷିତ ପରିବେଶ ।

ସେଥିପାଇଁ ସତ୍ୟବାଦୀ ବନବିଦ୍ୟାଳୟ ଏକ ସାଧାରଣ ଶିକ୍ଷାନୁଷ୍ଠାନ ନଥିଲା । ତାହା ଥିଲା ବାସ୍ତବିକ ମଣିଷ-ତିଆରି କାରଖାନା । ସେଠାରେ ଉଭୟ ଶିକ୍ଷକ ଓ ଛାତ୍ର ମଣିଷ ହୋଇ ଉଠୁରୁ ଥିଲେ । ଦେଶ ଓ ସମାଜର କଲ୍ୟାଣ ଥିଲା ସେମାନଙ୍କର ଜୀବନର ବ୍ରତ ।

ତରୁଣ ନୀଳକଂଠ ନିଜର ସ୍କୁଲ ଓ କଲେଜ ଜୀବନର ବନ୍ଧୁମାନଙ୍କୁ ସ୍ମରଣ କରି ସୁଖ ପାଇଛନ୍ତି । ଦୁଇଜଣ ଓଡ଼ିଆ ବନ୍ଧୁ ବିଚିତ୍ରାନନ୍ଦ ଏବଂ ଭୁବନାନନ୍ଦ ଯଥାକ୍ରମେ ଓକିଲ ଏବଂ ଇଞ୍ଜିନିୟର ଭାବରେ ଯୋଗଦେଇ ଥିବାରୁ ଆନନ୍ଦିତ ହୋଇଛନ୍ତି । ଏଥିରୁ ତାଙ୍କର ବନ୍ଧୁପ୍ରୀତି ଏବଂ ପାରସ୍ପରିକ ସୁଖଦୁଃଖର ସାଥୀ ହେବାପାଇଁ ଆଗ୍ରହ ଅନୁଭୂତ ହେଉଅଛି ।

ନୀଳକଂଠ ଥିଲେ ମାନବିକତାର ଅଗ୍ରଦୂତ । ଜୀବନର ଏହି ପ୍ରଭାତ-କାଳରେ ମଧ୍ୟ ତାର ସୂଚନା ମିଳୁଥିଲା ବୋଲି ଜଣାଯାଉଛି ।

